# ଜଗନ୍ନାଥ
# ସଞ୍ଚୟନ

ପ୍ରଣେତା :

ପୁରୀ ଜିଲାସ୍କୁଲର ଅବସରପ୍ରାପ୍ତ ହେଡ଼ପଣ୍ଡିତ
ଯଜ୍ଞଭୂଷଣ

**ପଣ୍ଡିତ ଶ୍ରୀ ଜଗନ୍ନାଥ ରଥ**

କାବ୍ୟତୀର୍ଥ, ବିଦ୍ୟାଭୂଷଣ

ଗୋପବନ୍ଧୁ ସାହିତ୍ୟ ମନ୍ଦିର
ଗୋପବନ୍ଧୁ ଭବନ, କଟକ-୨

# ଜଗନ୍ନାଥ ସଞ୍ଚୟନ

ପଣ୍ଡିତ ଶ୍ରୀ ଜଗନ୍ନାଥ ରଥ

ପୁନଃମୁଦ୍ରଣ : ୨୦୧୭

*ପ୍ରକାଶକ :*
ଗୋପବନ୍ଧୁ ସାହିତ୍ୟ ମନ୍ଦିର
ଗୋପବନ୍ଧୁ ଭବନ, 'ସମାଜ' ଅଫିସ୍
ବକ୍ସିବଜାର, କଟକ-୭୫୩୦୦୧

*ପ୍ରଚ୍ଛଦ : ରାଜେଶ ନାୟକ*

*ମୁଦ୍ରାକର :*
ଶ୍ରୀ ନିରଞ୍ଜନ ରଥ
ସତ୍ୟବାଦୀ ପ୍ରେସ,
ଗୋପବନ୍ଧୁ ଭବନ,
କଟକ-୭୫୩୦୦୧

ମୂଲ୍ୟ : ୧୦୦/-

**Jagannath Sanchayan**

***Pandit Sri Jagannath Rath***

*Reprinted : 2017*

***Published by :***
**Gopabandhu Sahitya Mandira**
Gopabandhu Bhawan, 'Samaja' Office
Buxibazar, Cuttack - 753001

***Cover Design : Rajesh Nayak***

***Printer :***
**Sri Niranjan Rath**
Satyabadi Press
Gopabandhu Bhawan, Cuttack-753001

***Price : Rs. 100/-***

# ଉପକ୍ରମଣିକା

ଗୋପବନ୍ଧୁ ସାହିତ୍ୟ ମନ୍ଦିରର ଉଚ୍ଚକର୍ତ୍ତୃପକ୍ଷ କେତେକ ପୁରାତନ ଶିକ୍ଷଣୀୟ ଗ୍ରନ୍ଥର ପୁନଃମୁଦ୍ରଣ କରିବାକୁ ମନସ୍ଥ କରି କାର୍ଯ୍ୟ ଆରମ୍ଭ କରିଛନ୍ତି । ଏହି କ୍ରମରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରଣୀତ ୬ଖଣ୍ଡ ଛୋଟ କାବ୍ୟ ପୁସ୍ତକକୁ ଏକତ୍ର ଗୋପବନ୍ଧୁ କବିତାବଳୀ ନାମରେ ପ୍ରଥମେ ପ୍ରକାଶ କରାଯାଇଥିଲା । ସେହି ପୁସ୍ତକଟିର ଲୋକପ୍ରିୟତାରେ ଉଦ୍‌ବୁଦ୍ଧ ହୋଇ ୨ୟ ଗ୍ରନ୍ଥ ଭାବରେ ଜଣେ ପଣ୍ଡିତ, ପୁରୀ ଜିଲା ସ୍କୁଲର ଅବସରପ୍ରାପ୍ତ ହେଡପଣ୍ଡିତ ଅଧୁନା ସ୍ୱର୍ଗତ ପଣ୍ଡିତ ଜଗନ୍ନାଥ ରଥଙ୍କ ୩ଟି ପୁସ୍ତକକୁ ଏକତ୍ର କରି ଜଗନ୍ନାଥ ସଞ୍ଚୟନ ନାମରେ ପ୍ରକାଶ କରିଅଛନ୍ତି । ଏହି ପୁସ୍ତକଟି ୪ ଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗରେ ଶିକ୍ଷଣୀୟ ବିଷୟ ସବୁ ସ୍ଥାନୀତ ହୋଇଅଛି । ଯାହା ପାଠ କଲେ ପାଠକେ "ପଢୁଥିବେ ଏବଂ ହସି ହସି ଗଡୁଥିବେ" । ଏଥିରେ ବହୁ ଶିକ୍ଷଣୀୟ ବିଷୟ ସ୍ଥାନୀତ ହୋଇଅଛି । ପାଠକ ବିଶେଷ କରି ଯେଉଁମାନଙ୍କ ପାଇଁ ଏହି ପୁସ୍ତକଟି ପ୍ରକାଶ କରାଯାଇଛି ସେହି କୁନି କୁନି ପିଲାମାନଙ୍କ ଦ୍ୱାରା ଏହା ଆଦୃତ ହେବ ବୋଲି ଆଶା ।

ତା୧ ।୮ ।୨୦୦୪ — ପ୍ରକାଶକ

# -: ସୂଚୀ :-

| କ୍ର.ନଂ | ବିଷୟ | ପୃଷ୍ଠା |
|---|---|---|

## କଥା–କୁସୁମ



## ଶ୍ରଦ୍ଧାବୀର
(ଧ୍ରୁବ)



## ନୂଆ ଆଦର୍ଶ ଗଳ୍ପ ବହି

ପ୍ରଥମ ଭାଗ

* * *

# ଆକାଶ ମିସ୍ତ୍ରୀ

ଜଳକାପୁର ରାଜ୍ୟରେ ଗଣ୍ଡଗୋପାଳ ବୋଲି ଜଣେ ରଜା ଥିଲେ । ସେ ପିଲାଦିନୁଁ ପାଠ ସାଙ୍ଗେ ସଙ୍ଗାତ । ସଙ୍ଗାତର ତ ନାଁ ଧରନ୍ତି ନାହିଁ । ସେ ଆଉ କିମିତି ପାଠ ନାଁ ଧରନ୍ତେ କି ? ତେଣୁକରି ସେ ଗୋଟିଏ ତୁଚ୍ଛା ଗଜମୂର୍ଖ । ରଜାଙ୍କ ନାଁ' ଟି ଯିମିତି, ଗୁଣ ସବୁ ସେମିତି; ସେଥିକି ଚାହିଁ ପାତ୍ରମନ୍ତ୍ରୀଗୁଡ଼ିଏ ମଧ୍ୟ ମିଳିଥା'ନ୍ତି । ଖାଲି ପଶା, ନିଶା, ଶିକାରରେ ଦିନ ଯାଏ । ସବୁ ଗୁଣଠାରୁ ରଜାଙ୍କ ରାଗ ଗୁଣଟା ବଳକା । ଯେତେବେଳେ ଯାହାକୁ ଯାହା ହୁକୁମ ହୋଇଗଲା, ସେ ତା' ପାରୁ କି ନ ପାରୁ ଯେବେ ନ କଲା, ତେବେ ତା' ବଉଁଶଯାକ ମେରିଆକୁ ଗଲେ । ଏମିତି ଅକଡ଼ବାଗୀ ରଜା ପାଖକୁ କିଏ କିଆଁ ଯିବ ? ତାକୁ ଦେଖିଲେ ଲୋକଙ୍କ ପିଳେହି ପାଣି । ଖାଲି ସେଇ ପାଖଲୋକ କେତୁଟା ଶୁଆକୁ କୁଆ, କୁଆକୁ ଶୁଆ, ଯେତେବେଳେ ଯାହା ହୁକୁମ ହେଲା, ସେଇ କଥାକୁ ଆଜ୍ଞା ଆଜ୍ଞା କରି ମହାମଉଜରେ ଥାଆନ୍ତି । ଭଲଭଲ ଲୋକେ ମାଡ଼ନ୍ତି ନାହିଁ ।

ସେ ରାଇଜରେ ଚାଇଁଚନ୍ଦ୍ର ବୋଲି ଜଣେ ବଡ଼ ପଣ୍ଡିତ ଥିଲେ । ସେ ଛଅ ଶାସ୍ତ୍ର, ନଅ ବ୍ୟାକରଣରେ ପଣ୍ଡିତ ହେଲେ କ'ଣ ହେବ, ତାଙ୍କର ବାସି ଓଳିକି ଦାନା ନ ଥାଏ । ଦିନକୁ ଦିନ ପଣ୍ଡିତଙ୍କ ପିଲାପିଲି ଖାଇବା ବିନା କଷ୍ଟ ପାଉଥା'ନ୍ତି । ପଣ୍ଡିତେ ବା କ'ଣ କରିବେ ? ହେଇ ହେଇ ରଜା ପାଖକୁ ଯାଇ ପାଠ ଶ୍ଳୋକ କହି ଚାରି ପଇସା ଆଣି ଘର ଚଳାନ୍ତେ । ରଜା ତ ଯୁ ରଜା, ତୁଚ୍ଛା ଗଜମୂର୍ଖ, ସେଥିରେ ପୁଣି ଅଖାଡୁଆ । ଏମିତି ରଜା ପାଖକୁ ଯାଇ ଲାଭ କିଛି ନାହିଁ; ଓଲଟି ଯେବେ କିଛି ବଙ୍କା ବୁଝେ, ତେବେ ସର୍ବନାଶ – ଏହା ବିଚାରି ପଣ୍ଡିତେ ରଜା ପାଖକୁ ନ ଯାଇ ଶାଗ, ପେଜ, କାଞ୍ଜିରେ ଗୁଜୁରାଣ ମେଣ୍ଟାଉଥା'ନ୍ତି । ଏମିତି ଏବେ କେତେଦିନ ଚଳିବ ? ସେ ସିନା ପଣ୍ଡିତ ଲୋକ ବୋଲି ପାଠ ଶ୍ଳୋକରେ ଦିନ କଟାଉଥା'ନ୍ତି, ପଣ୍ଡିତିଆଣୀ ସେ ଦୁଃଖ ଆଉ ସମ୍ଭାଳି ପାରିଲେ ନାହିଁ । ଦିନେ

ପଣ୍ଡିତଙ୍କୁ କହିଲେ – ହୟେ ! ଯେଉଁଗୁଡ଼ାକ ପାଠଶାଠ ଜାଣନ୍ତି ନାହିଁ, ସେଗୁଡ଼ାକ ରଜା ପାଖକୁ ଯାଇ ଖାଇ ପିଇ ଘରଦ୍ୱାର କରି ଅଠିଲି ହୋଇ ଚଳିଲେ, ତୁମେ ଶଗଡ଼ ଶଗଡ଼ ପୋଥି ପଢ଼ି ଆମର ହେଲା କ'ଣ ? ଲୋକର ମୁଖ ଫିଟିଲେ ସିନା ଦୁଃଖ ଯାଏ । ତୁମେ ତ ସବୁବେଳେ ପୋଥିଟିଏ ଧରି ପିଣ୍ଡାରେ ବସି ରହିଲ, ଦିନେ ତ ରଜା ପାଖକୁ ନ ଗଲ, ଏଥିରେ ପିଲେ ଚଳିବେ କିମିତି ? ଏବେ ମୋ କଥା ମାନ, ରଜା ପାଖକୁ ଯାଅ ।

ପଣ୍ଡିତେ ଟିକିଏ ତଳକୁ ଉପରକୁ ଚାହିଁଲେ, ପଛକୁ କହିଲେ – ସତକଥା, ହଉ ରଜା ପାଖକୁ ଯାଏଁ । ସେ ଯେବେ ମୋ କପାଳକୁ ଭଲ ବୁଝିଲା, ତେବେ ତ ଭଲ; ନ ବୁଝିଲେ ପିଲେ ଏମିତି ମରନ୍ତେ, ନ ହେଲେ ସେମିତି ମରିବେ । ଏହା ବିଚାରି ପଣ୍ଡିତେ ରଜା ଘରକୁ ଗଲେ । ପଣ୍ଡିତେ ସିଂହଦ୍ୱାର ଆଖ ପାଖ ହୋଇ ଦେଖନ୍ତି ତ ରଜା ସିଂହଦୁଆରେ ବିଜେ ହୋଇଛନ୍ତି । ପାତ୍ର, ମନ୍ତ୍ରୀ, ପାଖଲୋକ ସବୁ ରଜାଙ୍କୁ ବେଢ଼ିଛନ୍ତି । ଏହାଛଡ଼ା ଗଡୁଆ ସବୁ ଶହ ଶହ ଜମା ହୋଇଛନ୍ତି । କ'ଣ ନା, ମେଣ୍ଢା ଲଢ଼େଇରେ ଧୂଳି ଉଡୁଛି । ପଣ୍ଡିତେ ଯା ଦେଖି ମନେ ମନେ ଖୁସିଟେ ହୋଇ ଭାବିଲେ – ଭଲ ବେଳରେ ତ ଆସିଛି, କପାଳକୁ କ'ଣ ଫଳୁଛି ଦେଖାଯାଉ ।

ମେଣ୍ଢା ଲଢ଼େଇ ଭାଙ୍ଗିଲା । ରଜାଙ୍କ ପୋଷାକୀ ମେଣ୍ଢା ପୁଣି ଜିତିଲା । ଯା ଦେଖି ରଜାଙ୍କର ଭାରି ଆନନ୍ଦ । ଏହି ଆନନ୍ଦ ବେଳକୁ ପଣ୍ଡିତଙ୍କ ଉପରେ ରଜାଙ୍କର ଆଖି ପଡ଼ିଗଲା । ରଜା କେତେକାଳୁ ପଣ୍ଡିତଙ୍କୁ ଦେଖି ନ ଥିଲେ । ଯିମିତି ଚାହିଁ ଦେଇଛନ୍ତି, ସେମିତି ସାଙ୍ଗେ ସାଙ୍ଗେ ପଣ୍ଡିତଙ୍କୁ ଡକରା ପଡ଼ିଲା । ପଣ୍ଡିତେ ଡକରା ଶୁଣି ଭାବିଲେ – କ'ଣ, ମୋ ଦଶା ଫେରିଲା କି ? ହଉ ଦେଖାଯାଉ । ପଣ୍ଡିତେ ଛାମୁରେ ଛିଡ଼ା ହବାରେ ରଜା ପଚାରିଲେ – କିଏ ପଣ୍ଡିତେ କିମିତି ଅଛ ? କିମିତି ଚଳୁଛ ?

ପଣ୍ଡିତେ କହିଲେ – ଆଜ୍ଞା । ମୁଁ ତ ସେଇକଥା ଛାମୁରେ ଜଣାଇଥା'ନ୍ତି । ମୋ ଭାଗ୍ୟକୁ ଛାମୁ ତ ନିଜେ ପଚାରି ଆଜ୍ଞା ହେଲେଣି ।

ଆଜ୍ଞା । ଆଉ ଜଣେଇବି କ'ଣ ? ବଡ଼ ଦୁଃଖରେ ଚଳୁଛି । ପିଲାପିଲି ବଡ଼ କଷ୍ଟ ପାଉଛନ୍ତି ।

ରଜା କହିଲେ – ଏଇକଥା ତ ? କିଛି ପରବାଏ ନାହିଁ । ଆମେ ଗୋଟେ କଥା କହିବୁ, ତୁମେ ତାହା କରିଦିଅ; ଆମେ ତୁମକୁ ଇମିତି ଖୁସି କରିଦେବୁ ଯେ ତୁମେ ସାତ ପୁରୁଷ, ସତାବନ ପୁରୁଷ ଧରି ସୁଖରେ ଚଳିବ । ଏହା ଶୁଣି ପଣ୍ଡିତଙ୍କ ମନ ଆନନ୍ଦରେ କୁଣ୍ଢେ ମୋଟ ହୋଇଗଲା । ସେ କହିଲେ – ଆଜ୍ଞା । ସେ କି କଥା, ଆଜ୍ଞା କହନ୍ତୁ । ରଜା କହିଲେ – କଥା ସିମିତି ବଡ଼ କଥା ନୁହେଁ । କଥା କଣକି, ଆମେ ଅନେକ ଦିନ ହେଲା ଆକାଶରେ ଖଣ୍ଡେ ଉଆସ କରିବାକୁ ଭାବିଲୁଣି, ଏପର୍ଯ୍ୟନ୍ତ ସେ ଖଣ୍ଡ ହୋଇ ପାରିଲା ନାହିଁ । ତୁମେ ପଣ୍ଡିତ ଲୋକ, କାମଦାମ ନାହିଁ, ଘରେ ବସି ରହିବ ଏଇ କାମ ଖଣ୍ଡ କରିଦିଅ, ତୁମ ଦୁଃଖ କଥା ଆମେ ବୁଝିବା । ତୁମେ ଆଉ ମିସ୍ତ୍ରୀ ଠିକଣା କରି ଆମ ଛାମୁରେ ଜଣାଇଲେ ଆମେ ଇଟା ଚୂନ ଲୋକବାକ ଯାହା ଦରକାର, ସେସବୁ ଯୋଗାଇଦେବୁ । ଆଉ ଗୋଟିଏ କଥା ମନେରଖ – ଏ କାମଟି ନେଇଆଣି ଥୋଇ ନ ଜାଣିଲେ, ତୁମ ବଉଁଶକୁ କୁକୁରିଆକୁ ଦେବୁ । ଏ ଅସମ୍ଭବ କଥା ଶୁଣି ପଣ୍ଡିତେ କାଠପରି ହୋଇଗଲେ । ସେଥିରେ ପୁଣି ନ କରି ପାରିଲେ ବଉଁଶ ମରିବା କଥା ଶୁଣି ଆହୁରି ଥକ୍କା ହୋଇଗଲେ । ଆକାଶରେ କୋଠା ତିଆରି ହେବ, ଏହା କେବେ ଦେଖା ନ ଥିଲା କି ଶୁଣା ନ ଥିଲା । ଏକଥା ବା ରଜାଙ୍କୁ କହୁଛି କିଏ ? କହିଲେ ତ ମୁଣ୍ଡ ରହିବ ନାହିଁ । ପଣ୍ଡିତେ ମନେ ମନେ ବହେ କଲବଲ ହେଲେ, ପଛକୁ ଖର ନିଃଶ୍ୱାସଟିଏ ପକାଇ କହିଲେ – ଆଜ୍ଞା, ହଉ, ମୁଁ ଯାଉଚି, ଆଗ ମିସ୍ତ୍ରୀ ବୁଝେ । ଏହା କହି ପଣ୍ଡିତେ ଘରକୁ ବିଦା ହେଲେ ।

ପଣ୍ଡିତେ ଘରକୁ ଆସିଲେ ସିନା, ଖାଇବା, ପିଇବା, ଶୋଇବା କାହିଁରେ ତାଙ୍କ ମନ ଲାଗିଲା ନାହିଁ । ସେ କାହାକୁ କିଛି ନ କହି ମସିଣା ଖଣ୍ଡିଏ ପକାଇ ମୁହଁ ମାଡ଼ି ଶୋଇଲେ । ବେଳ ତିନି ପହର ଚୌଦଘଡ଼ି ହେଲା, ପଣ୍ଡିତେ ଉଠିଲେ ନାହିଁ କି ଖାଇଲେ ନାହିଁ। ଯେ ଯେତେ ଡାକିଲେ ଶୁଣିଲେ ନାହିଁ, ଯେ ଯେତେ ପଚାରିଲେ ମନ ଦୁଃଖର କାରଣ ମଧ କହିଲେ

ନାହିଁ । କେତେବେଳେ ଉତ୍ତାରୁ ତାଙ୍କ ଝିଅ ସୁଶୀଳା ପୋଥି ଶିଳଟ ଧରି ଚାହାଳିରୁ ଆସିଲା । ପଣ୍ଡିତଙ୍କର ଆଉ ପୁଅ ଝିଅ ନ ଥିଲା – ଝିଅ ବୋଲି ସେଇ ଗୋଟିକ; ସେ ବଡ଼ ବୁଦ୍ଧିଆ ପିଲା । ତା'ର ବୟସ ଆଠ ବରଷ । ପଣ୍ଡିତେ ତାକୁ ଭାରୀ ଭଲ ପାଆନ୍ତି । ସେ ଘରେ ଆସି ଶୁଣିଲା ବାପା କାହିଁକି ଖାଉ ନାହାନ୍ତି, ମନ ଦୁଃଖରେ ମୁହଁମାଡ଼ି ଶୋଇଛନ୍ତି । ତହୁଁ ସେ ବାପାଙ୍କ ପାଖକୁ ଯାଇ ବହୁତ ରାଣ ନିୟମ ପକାଇ ଖାଇବାକୁ ଅଳି କଲା । ବାପା ଝିଅର ସ୍ନେହ ତୁଟାଇ ନ ପାରି କହିଲେ – ଆଲୋ ଝିଅ ଖାଇବି କ'ଣ ? ରଜା ତ ଯୁ ବର ଦେଲେଣି, ସେଥିରେ ବଉଁଶଯାକ ମରିବା; ଆଉ ଖାଇବି କ'ଣ ? ଯା ଶୁଣି ଝିଅ କହିଲା – ବାପା । ତୁମକୁ ମୋ ରାଣ ରଜା କ'ଣ କହିଲେ କହ । ବାପା କହିଲେ, ଆଲୋ ଝିଅ । ରଜାଙ୍କ ପାଇଁ ଆକାଶରେ ମୁଁ ଗୋଟେ ଉଆସ ତୋଳାଇଦେବି, ତା ନ କରି ପାରିଲେ ସେ ଆମ ସମସ୍ତଙ୍କୁ କୁକୁରିଆକୁ ଦେବେ ।

ଯା ଶୁଣି ଝିଅ କହିଲା – ବାପା ଏୟା ତ ! ଏଥିପାଇଁ ଏତେ ମନ ଦୁଃଖ କାହିଁକି ? ଆକାଶରେ କୋଠା କରାଇବା କଥା ମୋତେ ଲାଗିଲା, ତୁମେ ଆଗ ଭାତ ଖାଅ । ଝିଅଟା ପିଲାଟେ; ନ ହେବା କଥାରେ ସେ ଦମ୍ଭ ଦେଇ କହି ଦଉଛି; ଏଥିରେ ପଣ୍ଡିତଙ୍କର କିପରି ବିଶ୍ୱାସ ହେବ ? ଖାଲି ତା' ରାଣ ତୁଟି ନ ପାରି ଯାହିତାହି କରି ଗଣ୍ଡେ ଖାଇଲେ । ଖାଇସାରି ପଣ୍ଡିତେ ଝିଅକୁ ପଚାରିଲେ – କିଲୋ ଝିଅ । ଆକାଶରେ ପକ୍କାଟେ କିମିତି କରିବୁ ? ଆଗ ଏକଥା ମତେ କହିଲୁ, ମୁଁ ଟିକେ ଶୁଣେ । ଝିଅ କହିଲା – ବାପା ସେଥିକି ତୁମେ ଭାବନା କର ନାହିଁ, ମୁଁ ପକ୍କା କଥା ବୁଝିବି । ତୁମେ ଏଇଲେ ରଜା ପାଖକୁ ଯାଇ କହ – ଆଜ୍ଞା । ଆକାଶ ମିସ୍ତ୍ରୀ ତ ପାଖଆଖରେ ମିଳିବେ ନାହିଁ । କାହିଁ କେତେ ରାଇଜ ଖୋଜିବାକୁ ହେବ, ଏଥିକି ଟଙ୍କା ହଜାରେ ବାଟ ଖର୍ଚ୍ଚ ନ ଧଇଲେ କିମିତି ବାହାରିବି ? ପଣ୍ଡିତେ ଝିଅ କଥାମତେ ରଜାଙ୍କ ପାଖକୁ ଗଲେ । ବାଟଖର୍ଚ୍ଚ କଥା ଜଣାଇବାରେ ସାଙ୍ଗେ ସାଙ୍ଗେ ହଜାରେ ଟଙ୍କା ମିଳିଗଲା । ପଣ୍ଡିତେ ଟଙ୍କା ଥଳିଟେ ଧରି ଘରକୁ ଆସି ଝିଅ ଜିମା ଦେଇ କହିଲେ – ଟଙ୍କା ତ ଆଣିଲି, ଏବେ କ'ଣ କରୁଛୁ କର । ଝିଅ କହିଲା – ବାପା । ବୁଦ୍ଧିରେ ସବୁ କାମ ହେବ; ତୁମେ

ଥୟ ହୋଇ ଘରେ ବସ । ଆଗ ଏ ଟଙ୍କାରେ ଖାଇପିଇ ସୁଖରେ ଚଳିବା; ତା' ଦିନ ହେଲେ ଯୁ କଥା ହେବ; ମୁଁ ସେକଥା କହିବି ।

ପଣ୍ଡିତେ ଝିଅର ଏକଥା ଶୁଣି ମନେ ମନେ ବ୍ୟସ୍ତ ହେଲେ । ସେ ଭାବିଲେ – ପିଲା ବୋଲରେ ପଡ଼ି ରଜାଙ୍କଠାରୁ ହଜାରେ ଟଙ୍କା ଘେନି ଆସିଲି, ଯେ ଏବେ ଇମିତି କହିଲାଣି, କପାଳରେ ଭଲ ଥିଲାପରି ତ ଦିଶୁନାହିଁ । ଏବେ କରିବି କ'ଣ ? ଯା ଭାବି ପୁଣି ଝିଅକୁ ପଚାରିଲେ – ଆଲୋ ଝିଅ । ଏ ରଜା କଥା ଜାଣୁଚୁଟିକି ? ତୁ ପିଲାଲୋକ ତୋ କଥାରେ ଭାସିଯାଇ ମୁଁ ଏତେଗୁଡ଼ାଏ କଥା କରି ପକାଇଲି, ଏକଥା ଭାବିଲା ବେଳକୁ ମୋତେ ତିନିପୁର ଅନ୍ଧାର ଦିଶିଯାଉଛି । ତୁ ଭଲା କ'ଣ କରିବୁ କହିଲୁ ? ଝିଅ କହିଲା – ବାପା । ତୁମେ ଥୟଧର, ମୁଁ ସବୁକଥା ତୁଲାଇବି, ରଜାଙ୍କୁ ବୋଧ କରିଦେବି । ପଣ୍ଡିତେ ଆଉ କ'ଣ କରିବେ, ତୁନି ହୋଇ କପାଳକୁ ଆଦରି ରହିଲେ । ରଜାଘର ଟଙ୍କାରେ ଦିନାକେତେ ଖାଇପିଇ ସୁଖରେ ଚଳିଲେ । ଟଙ୍କା ଆସି ସରିଲା । ପଣ୍ଡିତେ ଝିଅକୁ କହିଲେ – କିଲୋ ଝିଅ । କାହିଁ କିଛି ତ କଲୁନାହିଁ, ଏବେ କ'ଣ ହବ ? ଝିଅ କହିଲା – ହଉ ହଉ ବାପା । ଆଉ ବ୍ୟସ୍ତ ହୁଅ ନାହିଁ । ତୁମେ ଆଜି ହାଟକୁ ଯାଇ ଯୋଡ଼ିଏ ଜାତିଆ ଶୁଆ ମୋତେ କିଣିଆଣି ଦିଅ; ଏଣିକି ଆକାଶ କୋଠା କଥା ମତେ ଲାଗିଲା ।

ବାପା ହାଟରୁ ଯୋଡ଼ିଏ ଶୁଆ କିଣି ଆଣିଦେଲେ । ଝିଅ ସେ ଶୁଆ ଯୋଡ଼ିକୁ ରାତିଦିନ ପଢ଼ାଇବାକୁ ଲାଗିଲା – ହୋ କୁଲି । ଇଟା ଲାଓ, ଚୂନ ଲାଓ, ପାନି ଲାଓ । ଶୁଆ ତ ଜାତିଆ ଶୁଆ । ଅଳ୍ପଦିନେ ସେସବୁ କଥା ଶିଖିଗଲେ । ପଛକୁ ଶୁଆ ତାଙ୍କ ମନକୁ ଦିନରାତି ପଢ଼ିଲେ – ହୋ କୁଲି । ଇଟା ଲାଓ, ଚୂନ ଲାଓ; ପାନି ଲାଓ । ଝିଅ ଯହୁଁ ଦେଖିଲା ଶୁଆ ସବୁ ପଦ ଧରିଗଲେ; ତହୁଁ ଦିନେ ବାପାଙ୍କୁ କହିଲା ବାପା । ଆଜି ଯାଇ ରଜାଙ୍କୁ କହ ଆକାଶ ମିସ୍ତ୍ରୀ ଆସିଗଲେ; କାଲିଠାରୁ କାମ ଲାଗିବ । ଛାମୁଙ୍କ ବେଣ୍ଟପୋଖରୀ ପାଖରେ କାଲି ବଡ଼ିସକାଳୁ ଲୋକବାକ, ଇଟା, ଚୂନ ଯୋଗାଇ ଦେଲେ କାମ ଆରମ୍ଭ ହୋଇଯିବ ।

ଝିଅ କଥା ଅନୁସାରେ ପଣ୍ଡିତେ ରଜାଙ୍କୁ ସବୁ ଜଣାଇଲେ । ଆକାଶ ମିସ୍ତ୍ରୀ ଆସିଛି, କାଲି ସକାଳେ ବେଣ୍ଟପୋଖରୀ ଆକାଶରେ କୋଠା କାମ ଆରମ୍ଭ ହେବ, ଏକଥା ଚାରିଆଡ଼େ ଚହଟି ଗଲା । ରାତି ପାହିଲାବେଳକୁ ରଜା, ପାତ୍ରମନ୍ତ୍ରୀ, ସୈନ୍ୟସାମନ୍ତ ଘେନି ପୋଖରୀ ପାଖରେ ହାଜର । ତା'ଛଡ଼ା କାହୁଁ କେତେ ଯେ ଲୋକ ମାଡ଼ିଆସିଲେ, ତା'ର ପାରାବାର ନାହିଁ । ପୋଖରୀ କୂଳକୁ ଲୋକେ ନ ଆସୁଣୁ ପଣ୍ଡିତେ ଝିଅ କଥା ଅନୁସାରେ ପହଞ୍ଚ ଶୁଆ ଯୋଡ଼ିକ ଉପରକୁ ଛାଡ଼ି ଦେଇଥା'ନ୍ତି । ସେ ଶୁଆ ଦୁଇଟି ଉଡ଼ି ଉଡ଼ିକା ସବୁବେଳେ କହୁଥା'ନ୍ତି, ହୋ କୁଲି । ଇଟା ଲାଓ, ଚୂନ ଲାଓ, ପାନି ଲାଓ । ରାଜା, ମନ୍ତ୍ରୀ, ଲୋକବାକ ଯେ ଆସିଲେ ସେ ଶୁଣିଲେ । ହୋ କୁଲି । ଇଟା ଲାଓ, ଚୂନ ଲାଓ, ପାନି ଲାଓ । ଯେ ଶୁଣିଲା ସେ କାବା ହେଲା । ରଜା ଯା ଶୁଣି କହିଲେ, କିଓ ପଣ୍ଡିତେ । କ'ଣ କରିବା କହ । ପଣ୍ଡିତେ କହିଲେ ଆଜ୍ଞା । ଆକାଶ ମିସ୍ତ୍ରୀ ପରା ଇଟା, ଚୂନ, ପାଣି ମାଗୁଚି ? ଆଉ ଚାହିଁଲେ କ'ଣ ହେବ ? ତାକୁ ବେଗେ ବେଗେ ଜିନିଷପତ୍ର ଯୋଗାଇ ନ ଦେଲେ ସେ ରାଗିକରି ଚାଲିଯିବ । ସେ ଆଉ ଜଣେ ରଜାର କାମ କରୁଥିଲା । ମୁଁ କେତେ କଷ୍ଟରେ ଆଣିଛି । ଏଥିମଧ୍ୟରେ ପୁଣି ଶୁଣାଗଲା ହୋ କୁଲି । ଇଟା ଲାଓ, ଚୂନ ଲାଓ, ପାନି ଲାଓ । ପଣ୍ଡିତେ ପୁଣି କହିଲେ, ମିସ୍ତ୍ରୀ ବହୁତବାର ମାଗିଲାଣି, ପଛକୁ ସେ ରାଗିକରି ପଳାଇବ ।

ରଜା ଯା ଶୁଣି ଲୋକଙ୍କ ଉପରେ ରାଗି କରି କହିଲେ – କିରେ ବୋକାଗୁଡ଼ା ଚାହୁଁଛ କ'ଣ । ବେଗେ ବେଗେ ଇଟା ଚୂନ ପାଣି ଯୋଗାଇ ଦଉଚଟି ? ଲୋକେ କହିଲେ – ଆଜ୍ଞା ! ଆମେ ଆକାଶକୁ ଏସବୁ କେମିତି ନେବୁ ? ରଜା ଟିକିଏ ଭାବିଲା ପରି ହୋଇ କହିଲେ, ହଯେ ପଣ୍ଡିତେ । ଯେସବୁ ଆକାଶକୁ କେମିତି ଯିବ ? ପଣ୍ଡିତେ କହିଲେ – ଆଜ୍ଞା । ସେକଥା ମୁଁ ଜାଣିଛି ? ଛାମୁ ତ କହିଲେ, ଲୋକବାକ ଜିନିଷପତ୍ର ସବୁ ଯୋଗାଇ ଦେବେ ବୋଲି; ଯା ଯେବେ ନ ହେବ, ତେବେ ବଡ଼ ଅଡୁଆ ହେବ; ଆକାଶ ମିସ୍ତ୍ରୀ ଯେବେ ରାଗିକରି ଯାଇ ଆକାଶ ରଜାକୁ ଏକଥା ଜଣାଏ, ତେବେ ପଛକୁ ଆମ ରାଜ୍ୟ ଖଣ୍ଡି ଯିବ ସିନା ।

ରଜା ଏକଥା ଶୁଣି ତର୍ଛିଯାଇ କହିଲେ – ହୟେ ପଣ୍ଡିତେ । ତେବେ କ'ଣ କରିବା ? ପଣ୍ଡିତେ କହିଲେ, ଆଜ୍ଞା ଆଉ କ'ଣ କରିବା ? ମତେ ତ ବୁଦ୍ଧିବାଟ କିଛି ଦିଶୁନାହିଁ । ରଜା କହିଲେ, ପଣ୍ଡିତେ । ଆଉ ଚାହିଁଲେ କ'ଣ ହେବ ? ଯିମିତି ସିମିତି ମିସ୍ତ୍ରୀକି ବୋଧଶୋଧ କରି ଛାଡ଼, ନଇଲେ ପଛକୁ ରାଜ୍ୟ ଖଣ୍ଡି ଯିବ ସିନା ? ପଣ୍ଡିତେ କହିଲେ – ହଉ ତେବେ ଦି'ହଜାର ଟଙ୍କା ଦିଅନ୍ତୁ । ମୁଁ ତାକୁ ସେତକ ଦେଇ କୁହାପୋଛା କରେ । ସେତିକିରେ ମଙ୍ଗିଲା ତ ଭଲ, ନଇଲେ ପଛକୁ ଆଉ କିଛି ଯାଚିବା । ରଜା ସାଙ୍ଗେ ସାଙ୍ଗେ ଦି'ହଜାର ଟଙ୍କା ପଣ୍ଡିତଙ୍କୁ ଦେଲେ । ରଜା ମନ୍ତ୍ରୀ ସୈନ୍ୟ ସାମନ୍ତ ଯେ ଯୁଆଡ୍ରୁ ଆସିଥିଲେ, ସେସବୁ ସେଆଡ଼କୁ ଗଲେ । ତା'ପରେ ପଣ୍ଡିତେ ଟଙ୍କା ଥଳି କାନ୍ଧରେ ଥୋଇ ଦି' ଶୁଆଙ୍କୁ ଚୁଚୁକାର ମାରି ଡାକି ହାତରେ ବସାଇ ଖୁସିରେ ଗୋଟିଏ ଗୋଟିଏ ଘରକୁ ଗଲେ । ପଣ୍ଡିତେ ଘରେ ପହଞ୍ଚିଲା କ୍ଷଣି ସାଙ୍ଗେ ସାଙ୍ଗେ ଝିଅକୁ ଟଙ୍କା ଥଳିଟି ଦେଇ କହିଲେ – ଝିଅ । ତୋ ବୁଦ୍ଧି ଧନ୍ୟ । ଆଜି ତୋ ଘେନି ବଉଁଶଯାକ ବଞ୍ଚିଲେ ।

ଝିଅ ଯୋଗୁଁ ସେହିଦିନଠାରୁ ପଣ୍ଡିତଙ୍କ ଘର ଆନନ୍ଦରେ ଚଳିଲା । ତେଣେ ପଣ୍ଡିତଙ୍କ ଯୋଗେ ରାଜ୍ୟ ରକ୍ଷାହେବାରେ ରଜା ମହାଖୁସି ହୋଇ ପଣ୍ଡିତଙ୍କୁ ଡକାଇ ବହୁତ ପ୍ରଶଂସା କଲେ । ସେହିଦିନଠାରୁ ମଧ ବହୁତ ଜମିବାଡ଼ି ଦେଇ ପଣ୍ଡିତଙ୍କୁ ସଭାପଣ୍ଡିତ କରି ରଖାଇଲେ । ପଣ୍ଡିତଙ୍କ ବୁଦ୍ଧିରେ ରାଜ୍ୟ ଭଲ ଚଳିଲା; ରଜା ପ୍ରଜା ସମସ୍ତେ ସୁଖରେ ରହିଲେ ।

# ନେଉଳପଶା ରୋଗ

ନିର୍ବୁଦ୍ଧିଆପାଟଣାରେ କୁନ୍ଥୁକୁନ୍ଥୁ ମହାନ୍ତି ବୋଲି ଜଣେ ଲୋକ ଥିଲା । ସବୁ କଥାକୁ ତା'ର ଡର । ସବୁ କଥାରେ ତା'ର ସନ୍ଦେହ । ତା' ଗାଁ'ମୁଣ୍ଡରେ ଗୋଟେ ପଡ଼ିଆ ଥାଏ । ସେ ପଡ଼ିଆରେ ଗଛବୁଦା, ଗାତ ଗୋହିରୀ କିଛି ନ'ଥାଏ । ଗାଁ ଲୋକେ ସମସ୍ତେ ସେଠାକୁ ଝାଡ଼ାଫେରି ଯାଆନ୍ତି । କୁନ୍ଥୁକୁନ୍ଥୁ ମଧ୍ୟ ସବୁଦିନ ସେହିଠାରେ ଝାଡ଼ା ଫେରେ ।

ଦିନେ କ'ଣ ହେଇଚି ନା ସେ ପଡ଼ିଆରେ ଆଉ କେହି ନାହାନ୍ତି, କୁନ୍ଥୁକୁନ୍ଥୁ ଏକୁଟିଆ ପୋଖରୀପାଣି ବସିଥାଏ । କାହିଁକି କ'ଣ ହେଲା, ସେ ଝାଡ଼ା ଫେରୁ ଫେରୁ ପଛକୁ ଟିକିଏ ଚାହିଁ ଦେଖିଲା, ଗୋଟେ ନେଉଳ କୁଆଡୁ ତା'ରି ଆଡ଼କୁ ଧାଇଁଛି । ଯା ଦେଖି କୁନ୍ଥୁକୁନ୍ଥୁ ଆଗ ପଟକୁ ମୁହଁ ଫେରାଇ ଆଣିଲା । ପୁଣି କ'ଣ ମନରେ ସନ୍ଦେହ ହେବାରୁ ପଛକୁ ଚାହିଁ ଦେଖେ ତ ନେଉଳ ନାହିଁ । ଏଥିରେ ତା' ମନରେ ବଡ଼ ଆଶଙ୍କା ହେଲା । ଭାବିଲା ପଡ଼ିଆଟା ଯାକରେ ତ ଗଛଟିଏ କି ବୁଦାଟିଏ, ଗାତଟିଏ କି ଗୋହିରୀଟିଏ କିଛି ଦିଶୁ ନାହିଁ; ନେଉଳଟା ତ ମୋରି ଆଡ଼କୁ ଧାଇଁଥିଲା, ତେବେ ଗଲା କୁଆଡ଼େ ? ପଛକୁ ଭାବିଭାବି ଠିକଣା କଲା, କିଛିନାହିଁ, ନେଉଳ ଆଉ ଯାଆନ୍ତା କୁଆଡ଼େ । ଆଉ ତ କେଉଁଠି ଆଶ୍ରା ଦିଶୁନାହିଁ । ଏ ନିଶ୍ଚେ ମୋ ମଳଦ୍ୱାର ବାଟେ ପେଟ ଭିତରକୁ ପଶିଯାଇଛି । କୁନ୍ଥୁକୁନ୍ଥୁ ଏକଥା ଯେମିତି ବିଚାରିଛି, ସେମିତି ସାଙ୍ଗେ ସାଙ୍ଗେ ପେଟକୁ ଦରାଣ୍ଡିଚି । ଦରାଣ୍ଡିଲା କ୍ଷଣି ତା' ହାତକୁ ପେଟରେ ହିଡ଼ପରି ନେଉଳଟା ଲମ୍ୱହୋଇ ଥିଲା ଭଳି ଲାଗିଲା । ଯା ଯିମିତି ଭାବିଲା, ସାଙ୍ଗେ ସାଙ୍ଗେ ତା ଛାତି ଭୟରେ ଧଡ଼ଧଡ଼ ହେଲା । ତା'ପରେ ସେ ସାଙ୍ଗେ ସାଙ୍ଗେ ଥରକୁ ଥର ପେଟକୁ ଦରାଣ୍ଡି ପକାଉଥାଏ, ଚିପି ପକାଉଥାଏ ।

କେତେବେଳେ ହାତକୁ ନେଉଳର ଲାଞ୍ଜଟା ଲାଗୁଥାଏ, କେତେବେଳେ ଅବା ମୁଣ୍ଡଟା ଆଉ ପଟରେ ଜଣାଯାଉଥାଏ, ପୁଣି କେତେବେଳ ନେଉଳଟା ପେଟ ଭିତରେ ବୁଲିଲା ପରି ଜଣାଯାଉଥାଏ ।

ଏଥିରେ କି କୁନ୍ଦୁକୁନ୍ଦୁ ଆଉ ଥୟ ହୋଇ ବସିପାରେ ? ତାକୁ ଚାରିଆଡ଼ ଅନ୍ଧାର ଦିଶିଲା । ହାତଗୋଡ଼ରୁ ଜୀବନ ଛାଡ଼ିଗଲା ପରି ଲାଗିଲା । ଏଡ଼େ ବଡ଼ ଜୀଅନ୍ତା ନେଉଳଟେ ପେଟରେ ବୁଲୁଚି । ସେ ଆଉ ଝାଡ଼ା ଫେରିବ କ'ଣ, ଅତର୍କରେ ଘରକୁ ଦୌଡ଼ିଆସି ଝାଉଁଳିଯାଇ ଠାଏ ପଡ଼ିଗଲା । ତୁଣ୍ଡରୁ କଥା ବାହାରୁ ନ'ଥାଏ । ଘର ଲୋକେ ଯା ଦେଖି ସମସ୍ତେ ବେଢ଼ିଗଲେ । କ'ଣ ହେଇଚି, କ'ଣ ହେଇଚି ବୋଲି ସମସ୍ତେ ପଚାରିଲେ ।

କୁନ୍ଦୁକୁନ୍ଦୁ କହିଲା – ଆଉ କ'ଣ ହେବ ? ଅଭାଗ୍ୟ ହୋଇଗଲା । ଏଥିରେ ସମସ୍ତେ ଚମକି ପଡ଼ିଲେ । ପୁଣି ପଚାରିଲେ – କ'ଣ ହେଲା, ବେଗେ ଫିଟାଇ କରି କହ । କୁନ୍ଦୁକୁନ୍ଦୁ କହିଲା – କ'ଣ କହିବି ? ଲୋକକୁ ପୁଣି ଏମିତି ଦଶା ପଡ଼େ । ମୋ କପାଳ ସେ, କାହାକୁ କହିବି ? କିଏ କେତେ ସେ ପଡ଼ିଆରେ ଝାଡ଼ା ଫେରୁନାହାନ୍ତି । କାହାରି ମଳଦ୍ୱାରରେ ନେଉଳ ପଶିଲା ନାହିଁ ମୋରି ମଳଦ୍ୱାରରେ ପଶିବାକୁ ଥିଲା । ଧନ୍ୟରେ କପାଳ; କିନ୍ତୁ ଏ କଥା କେହି ବୁଝିପାରିଲେ ନାହିଁ ।

ବାପା ପଚାରିଲେ – କିରେ କୁନ୍ଦୁ । ବାୟାଙ୍କ ପରି କ'ଣ ଗୁଡ଼େ କହୁଛୁ ? କୁନ୍ଦୁ କହିଲା – ବାପା ! ମୁଁ ବାୟା ? ନାହିଁ ହେ ବାପା ମୁଁ ବାୟା ନୁହେଁ । ନେଉଳ ମୋତେ ବାୟା କରି ଦଉଛି । ପୁଣି ବାପା ପଚାରିଲେ କିରେ । ନେଉଳ କ'ଣ । କୁନ୍ଦୁ କହିଲା – ବାପା ହେ । ଝାଡ଼ା ଫେରି ବସିଥିଲି; ନେଉଳଟେ ପଛଆଡୁ ଆସୁଥିଲା, ସେଠାରେ ତ ଗଛବୁଦା, ଗାତ ଫାତ କିଛି ନାହିଁ; ସେ ଆଉ କୁଆଡ଼େ ବାଟ ନ ପାଇ ମୋ ମଳଦ୍ୱାରରେ ପଶିଗଲା । ଏବେ ସେଇଟା ମୋ ପେଟକୁ ରାମ୍ପୁଡ଼ି ବିଦାରି ପକାଉଛି । ଆଉ ଏଥିରୁ ବଞ୍ଚିଲା ପରି ଲାଗୁନାହିଁ । ଯେବେ କାହାକୁ କ'ଣ ଜଣା ଅଛି, ତେବେ ଶୀଘ୍ର କର; ନହେଲେ ମୋ ଆଶା ଛାଡ଼ ।

ଏହା କହି କୁନ୍ଥୁ ପେଟକୁ ଦରାଣ୍ଡିଦଇ କହୁଥାଏ – ଓହୋ । କେଡ଼େ ବଡ଼ ଜନ୍ତୁ ହେଇଛି । ଯେ ପେଟରେ ରହିଲେ ମଣିଷ ଆଉ ବଞ୍ଚିବ ? ଓହୋ ହୋ, କି ରାମ୍ପି ପକଉଛି । ଯା ଦେଖି ବଉଁଶଯାକ କାବା । ବାପା କହିଲେ – କିରେ କୁନ୍ଥୁ । ଏ କି ଅସମ୍ଭବ କଥା କହୁଛୁ । ହଇରେ, ନେଉଳ କେଉଁଠି କାହା ମଳଦ୍ୱାରରେ ପଶିଲାଣି ? ଲୋକେ ଶୁଣିଲେ ହସିବେ, ଆଉ ଇମିତି କଥା କହନା । କୁନ୍ଥୁ କହିଲା – ବାଃ, ମୋ ବେଦନା ତ କି ସୁନ୍ଦର ବୁଝିଲ ? ହଁ, କିଆଁ ନ ହେବ ? ଯେଉଁ ଦଶାକୁ ନେଉଳ ମୋ ପ୍ରାଣ ନଉଛି, ସେଇ ଦଶାକୁ ଲୋକେ ନ ହସିବେ କିଆଁ ? ହଯେ ! ମୁଁ କ'ଣ ପିଲା ହେଇଛି କି ଆଳ କରିବି ? ଏତେ କଥା କିଆଁ ? ତୁମେ ସବୁ ମୋ ପେଟରେ ହାତ ବୁଲାଇ ଦେଖୁନାହଁ ? ସେଇଟା ତ ଏତ୍ତୁଟେ ହେଇଛି, ମୋ ପେଟରେ ବୁଲୁଛି, ହାତ ପକାଇଲେ ଜାଣିପାରିବ । ଆଉ ମୋତେ ପଚାରିବା ଦରକାର ନାହିଁ । ଏବେ ଯାହା କରିବାର କର, ନ ହେଲେ ବେଳୁ ବେଳ ମତେ ଅଥୟ କଲାଣି । ଓହୋ, ମୋ ପେଟ କ'ଣ ହେଇଯାଉଚିରେ, ମୋ ବାପା । ଆହେ ପ୍ରଭୁ । ମୋତେ ଏଥିରୁ କିମିତି ରକ୍ଷା କର । କୁନ୍ଥୁ ଏମିତି କେତେ ବିକଳ ହେଉଥାଏ । ବାପା ଭାଇ, ଯେ ଯେତେ ବୁଝାଇଲେ ବୁଝିଲା ନାହିଁ । ଘରଲୋକେ ଦେଖିଲେ ଯେ ଯା ମନରେ ଯେଉଁ ବିଶ୍ୱାସ ହେଇଛି, ତାହା କଥାରେ ଯିବ ନାହିଁ । ଏହା ପାଇଁ ବୈଦ୍ୟ ଗୁଣିଆ ଦରକାର ।

ପଡ଼ିଶା ଗାଁ'ରେ ଜଣେ ଭଲ ବୈଦ୍ୟ ଥିଲେ । ତାଙ୍କ ପାଖକୁ ଲୋକ ଯାଇ ଡାକିଆଣିଲା । ବୈଦ୍ୟ ଏହି ରୋଗ କଥା ଆଗରୁ କିଛି ଜାଣି ନ ଥିଲେ । ସେ ଯେମିତି ପହଞ୍ଚିଲେ, ତାଙ୍କୁ ସାଙ୍ଗେ ସାଙ୍ଗେ କୁନ୍ଥୁକୁନ୍ଥୁ ପାଖକୁ ନେଇଗଲେ । ସେତେବେଳକୁ କୁନ୍ଥୁକୁନ୍ଥୁ ପେଟକୁ ଚିପିଚିପି 'ମା ଲୋ, ବୋପା ଲୋ' ହୋଇ ଗଡୁଥାଏ; ଖାଲି କଳ କଳ ଛେପ ପକାଇ ଘରଦୁଆର ଭସାଉଥାଏ । ବାନ୍ତି କେତେ, ଥରୁଚି କେତେ, ଅକାର କେତେ କରୁଥାଏ । ବୈଦ୍ୟ ପହଞ୍ଚି ପଚାରିଲେ – କିଏ ମହାନ୍ତିଏ । କ'ଣ ହେଇଛି ? ଥୟ ହୋଇ ବସ । ବୁଝିବା କ'ଣ ହେଇଛି ।

କୁନ୍ଦୁ କହିଲା – ଆହେ ବୈଦ୍ୟେ । ଏ ମୋତେ କ'ଣ ଥୟ କରେଇ ଦଉଚି ? ନଇଲେ ମୁଁ ବସନ୍ତି ନାହିଁ ? ବୈଦ୍ୟ କହିଲେ – ହଉ ବୁଝିବା ଅଦମ୍ଯ ହୁଅ ନାହିଁ । ରୋଗ କ'ଣ ହେଇଛି କହିଲ ? କୁନ୍ଦୁ କହିଲା – ଆହେ, ରୋଗବ୍ୟାଧି କିଛି ନାହିଁ ହେ, ମୋ କପାଳକୁ ନେଉଳଟେ ମଳଦୁଆରେ ପଶିଯାଇ ମୋ ଆଡ଼ି ଭାଙ୍ଗି ଦଉଛି । ସବୁବେଳେ ତ ମୋ ପେଟକୁ କଖାରୁ କୋରିଲା ପରି କୋରି ପକଉଛି । ମୁଁ କ'ଣ କଥା କହି ପାରୁଛି ।

ବୈଦ୍ୟ ଏକଥା ଶୁଣି କାବା ହୋଇ ପଚାରିଲେ – କିଏ । ନେଉଳ କ'ଣ ପଶିଲା ହେ । ବାୟାଙ୍କ ପରି ଏପରି କ'ଣ ଗୁଡ଼େ କହୁଛ ? କ'ଣ ବିଳିବିଳୋଉଚ କିଏ ? ଆଚ୍ଛା ସେ ନେଉଳ କଥା ପଛେ ବୁଝିବା, ଆଗ ରୋଗ କ'ଣ ହେଇଚି କହିଲ ? କୁନ୍ଦୁକୁନ୍ଦୁ କହିଲା – ମୁଁ ପରା କହିଲି, ମୋର ଆଉ ରୋଗ କିଛି ନାହିଁ, ରୋଗ ସେଇ ନେଉଳ । ବୈଦ୍ୟ କହିଲେ – ଆଚ୍ଛା, ନେଉଳ କ'ଣ କହିଲ ? କୁନ୍ଦୁକୁନ୍ଦୁ ତହୁଁ ନେଉଳ କଥା ସବୁ କହିଗଲା । ବୈଦ୍ୟ ଶୁଣି ହସିଲେ, କହିଲେ – ଆହେ । ମହାନ୍ତିଏ । ଏ ବଡ଼ ଅସମ୍ଭବ କଥା, ପିଲାଏ ଶୁଣିଲେ ହସିବେ । ନେଉଳ କେଉଁଠି କାହା ମଳଦ୍ୱାରରେ ପଶିଲାଣି ? ମୁଁ ଭାବୁଚି – ତୁମର ବାୟୁଦୋଷ ଘଟିଛି, ସେଇଥିଯୋଗୁଁ ଇମିତି ଗୁଡ଼େ କହୁଛ । କୁନ୍ଦୁକୁନ୍ଦୁ ଏ କଥା ଶୁଣି ବୈଦ୍ୟ ଉପରେ ମହାରାଗ ହୋଇ କହିଲା – ତୁମ ବୈଦ୍ୟପଣିଆ ଜଣାଗଲାଣି । ତୁମେ ବୈଦ୍ୟ ନୁହଁ, ଯମ । ବୈଦ୍ୟ ହୋଇଥିଲେ ଇମିତି କଥା କହନ୍ତ ? ତୁମେ ମୋ କଥାକୁ ହସରେ ଉଡ଼ାଇ ଦଉଛ କାହିଁକି ? ନିଜେ ମୋ ପେଟରେ ହାତ ପକାଇ ଦେଖୁ ନାହଁ । ସେ ତ କୁନି ନେଉଳଟିଏ ନୁହେଁ, ମସ୍ତବଡ଼ ନେଉଳ; ହାତ ପକାଇଲେ ତ ହୁଡ଼ା ପରି ହାତକୁ ଲାଗିବ । ସେଥିରୁ ମୋ ମିଛ ସତ ବୁଝିପାରିବ ।

ବୈଦ୍ୟ ଏସବୁ ଶୁଣି ତୁନି ହେଲେ । ସେ କଥାରେ କିଛି ବାଦ କଲେ ନାହିଁ । ଦେଖିଲେ ଯେ ଏ ମନରେ ଗୋଟେ ଲୟ ଧରିଛି; ମନ ବଦଳିଲେ ସିନା ଯାର ଏ ରୋଗ ଯିବ । ତା' ଛଡ଼ା ଏଥିକି ଉପାୟ କ'ଣ ? ତା'ପରେ ବୈଦ୍ୟ କହିଲେ – ନାହିଁ ବାପା, ଏ ରୋଗକୁ

ମୋଠାରେ ଔଷଧ ନାହିଁ । ଏକଥା କହି ବୈଦ୍ୟ ବିଦା ହେଲେ । ବୈଦ୍ୟ ଆସିଲାବେଳେ କୁନ୍ଥୁକୁନ୍ଥୁ ଭାବୁଥିଲା ଯେ ତ ଭଲ ବୈଦ୍ୟ ନିଶ୍ଚେ କଟୁ ଔଷଧ ଦେବେ । ସେ ଯହୁଁ କିଛି ନ କରି ଫେରିଗଲେ, ତହୁଁ ତା'ର ବେଦନା ବଢ଼ିଗଲା । ସେ ଆହୁରି ଅଧିକ ବିକଳ ହେଲା । ବାପାଙ୍କୁ ଡାକି କହିଲା – ବାପା ! ତୁମେ କ'ଣ ସବୁ ଚାହିଁଥିବ, ମୁଁ ମରିଯିବି, ନା, ଆଉ କେଉଁ ଗୁଣିଆ ବୈଦ୍ୟ ଡାକିବ ? ବାପା ପୁଅର ବିକଳ ସହି ନ ପାରି କେତେ କେତେ ଗୁଣିଆ ବୈଦ୍ୟ ଡାକିଲେ । ଯେ ଏ ନେଉଳପଶା ରୋଗ କଥା ଶୁଣିଲା, ସେ କାନରେ ହାତ ଦେଲା । ପଛକୁ କେହି କେହି ପାନେ ପାନେ ଭେଦି ଚଢ଼େଇଲେ । ସେଥିରେ ଖାଲି ଝାଡ଼ା ଗୁଡ଼େ ହୁଏ, ପେଟ ଗରମ ହୋଇ ଅଧିକ ଅରୁଚି ବଢ଼େ । ନେଉଳପଶା କଥା ମନରୁ ଟିକିଏ ହେଲେ ଯାଏନାହିଁ । ଏଥିରେ କୁନ୍ଥୁକୁନ୍ଥୁ ନ ଖାଇ ନ ପିଇ କଳାକାଠ ପରି ଦିଶିଲାଣି, ଦିହ କୁଟାଖିଅ ପରି ସରୁ ହେଲାଣି । ଯେ ଯେତେ ବୁଝାଇଲେ କୁନ୍ଥୁକୁନ୍ଥୁ ନ ଖାଏ, ନ ପିଏ, ନ ଶୁଏ ।

ବଂଶଟାଯାକ ତା ଲାଗି ଘୋରିପହରି ହୋଇ ନାଟସାର ହେଲେଣି । କୁନ୍ଥୁକୁନ୍ଥୁର ନାକଦଣ୍ଡିରେ ଆସି ପ୍ରାଣ ରହିଲାଣି । ଆଖପାଖ ଧରି ଯେତେ ଗୁଣିଆ ବୈଦ୍ୟ ଥିଲେ, ସମସ୍ତେ ଦେଖିଗଲେଣି । କାହାରି ପଦ, ମନ୍ତ୍ର, ଔଷଧ କିଛି ଧଇଲା ନାହିଁ । ସମସ୍ତେ ଦେଖିଲେ ଯେ ଯେ ଏହିପରି ହେବ, ଭଲ ହେଲା ପରି ଦିଶୁନାହିଁ । ଖାଲି ତା' ମନ ବୁଝିବାକୁ ଏଣୁ ତେଣୁ ଜଣେ ଜଣେ ଡକାଇ ଆଣୁଥାଆନ୍ତି । ଯେ ଯାହା କରିବାକୁ କହେ, ତାହା କରୁଥା'ନ୍ତି । କିଏ ବା କ'ଣ କରିବ ? ରୋଗ ହେଲେ ସିନା ଔଷଧ କରନ୍ତେ, ଏମିତି ଅସମ୍ଭବ କଥାକୁ ଉପାୟ କ'ଣ ଅଛି ? କୁନ୍ଥୁକୁନ୍ଥୁର ଏ ରୋଗ କଥା ଚାରିଆଡ଼େ ଲୋକେ ଜାଣିଲେ । ଯେ ଶୁଣିଲା ସେ ହସିଲା; ପଛକୁ ଲୋକେ କାହାର କିଛି ରୋଗବ୍ୟାଧି ହେଲେ, ତୋର ନେଉଳପଶା ରୋଗ ହୋଇଛି କି ବୋଲି ଥଟା ଟାପରା କଲେ ।

କୁନ୍ଥୁକୁନ୍ଥୁ ଦିନୁ ଦିନ ଶୁଖି ଶୁଖି ଦୁର୍ବଳ ହେଲା । ପଛକୁ ନାକଦଣ୍ଡିରେ ପ୍ରାଣ ରହିଲା । କୁନ୍ଥୁକୁନ୍ଥୁ ଏଥିରୁ ଉଧୁରିବ ବୋଲି ଆଶା ହେଲାନାହିଁ ।

ନିର୍ବୁଦ୍ଧିଆପାଟଣାର ତିନି ଚାରି କୋଶ ଦୂରରେ ପଣ୍ଡିତପୁର ବୋଲି ଗୋଟିଏ ବ୍ରାହ୍ମଣ ଶାସନ ଥିଲା । ସେଠାରେ ତର୍କଚୂଡ଼ାମଣି ବୋଲି ଜଣେ ପଣ୍ଡିତ ଥିଲେ । ସେ ବଡ଼ ଚତୁର ଲୋକ । ସେ ଶୁଣିଲେ, ଇମିତି ରୋଗରେ କୁନ୍ଥୁକୁନ୍ଥୁ ମରିବାକୁ ବସିଲାଣି । ରୋଗ ନାହିଁ, ବ୍ୟାଧି ନାହିଁ, ଲୋକଟା ତୁଚ୍ଛାଟାରେ ମରିବାକୁ ବସିଲାଣି, ଟିକିଏ ଲାଗିବା; ଯେବେ ଆୟୁଷ ଥିବ, ତେବେ ଠାକିଗଲେ ଠାକିଯିବ । ଏହା ବିଚାରି ପଣ୍ଡିତେ ଦିନେ ସନ୍ଧ୍ୟାବେଳେ ନିର୍ବୁଦ୍ଧିଆପାଟଣା ବାହାରିଲେ । ପଣ୍ଡିତେ ନାଉଁଆ ପଣ୍ଡିତ । ସମସ୍ତେ ଜାଣନ୍ତି, ଶୁଣନ୍ତି । ସେଠାରେ ଯହୁଁ ପହଞ୍ଚିଲେ, ଲୋକେ ଭାରି ମାନ୍ୟ କଲେ । ପଣ୍ଡିତେ କୁନ୍ଥୁକୁନ୍ଥୁ ଘରକୁ ଯାଇ ତା' ସାଙ୍ଗେ ଦେଖା କଲେ । ପଣ୍ଡିତେ ଯାହା ଶୁଣିଥିଲେ, କୁନ୍ଥୁକୁନ୍ଥୁକୁ ସେହିପରି ଦେଖିଲେ । ପଣ୍ଡିତେ ପଚାରିଲେ – କିଓ ମହାନ୍ତିଏ । ତୁମର କ'ଣ ହେଇଛି ହେ ? ପଣ୍ଡିତେ ଏଇତକ ପଚାରିବାରେ କୁନ୍ଥୁକୁନ୍ଥୁ ଯେମିତି ଝାଡ଼ା ଫେରିଗଲା, ଯେମିତି ନେଉଳ ଦେଖିଲା, ତା'ପରେ ନେଉଳ ଯେମିତି ମଳଦୁଆରେ ପଶିବାର ସ୍ଥିର କଲା, ଏସବୁ କଥା ବୁଝେଇ ସୁଝେଇ କହିଲା । ପଣ୍ଡିତେ ତ ବୁଦ୍ଧିମାନ; ସେ ଦେଖିଲେ ଯେ ଏହାର କଥା ସବୁ ଉଡ଼ାଇଦେଲେ ମୋ ଫିକର କାଟୁ କରିବ ନାହିଁ । ସବୁକଥା ସତ ମାନିବାରେ ମୋ ଉପାୟ କାଟୁ କରିବ । ଏହାଭାବି ତା'ର ସବୁକଥା ମନଦେଇ ଶୁଣିଲେ । ଆଉ ଠାଏ ଠାଏ ତା' କଥାରେ ତା' ପାଇଁ ଘାଣ୍ଟିଚକଟି ହେବାର ଦେଖେଇ ହେଲେ । ସବୁକଥା ଶୁଣି ସାରି ପଣ୍ଡିତେ କହିଲେ – ଏଇଆ ତ ? ଏହା ତ ନୂଆ କଥା ନୁହେଁ ? ଏମିତି ତ କେତେ କେତେ ଥାନରେ ମଳଦୁଆରେ ନେଉଳ ପଶିବା କଥା ଶୁଣାଅଛି । ଶୁଣାଅଛି କାହିଁକି, ମୁଇଁ ତ ଏବେ ମୋ ଜୀବନରେ ଚାରି ପାଞ୍ଚ ଜାଗାରେ ଏମିତି ରୋଗୀ ଭଲ କରିଛି । ତୁମେ ଏତେ ଭୟ କରୁଛ କାହିଁକି ? ହଁ, ଦଶା କଥା, ଯେତେଦିନ ଘାଣ୍ଟିବାକୁ ଥିଲା, ସେତେଦିନ ଘାଣ୍ଟିଲା । ମୁଁ ତ ଜାଣୁଛି – ଏବେ ଦଶା ଫେରିଲା । ମୁଁ ବୈଦ୍ୟ ନୁହେଁ ସତ, ପ୍ରଭୁ ଲୋକନାଥଙ୍କ ଦୟାରୁ ମୁଁ ଗୋଟିଏ ଔଷଧ ଜାଣେ । ସେଥିରେ କେତେ କେତେ ଲୋକ ଭଲ ହୋଇଛନ୍ତି । ତୁମେ ନିଶ୍ଚେ ଭଲ ହୋଇଯିବ । ସବୁବେଳେ ସେଇ ଲୋକନାଥଙ୍କଠାରେ ଲୟ ରଖିଲେ ହେଲା ।

ପଣ୍ଡିତଙ୍କ ଏ କଥାରେ କୁନ୍ଥୁକୁନ୍ଥୁ ଜୀବନ ପାଇଲା ପରି ଲାଗିଲା । ସେ ସାଙ୍ଗେ ସାଙ୍ଗେ ଲମ୍ବ ହୋଇ ପଣ୍ଡିତଙ୍କ ଗୋଡ଼ତଳେ ପଡ଼ିଗଲା । କହିଲା – ଆପଣ ଆଜିଠାରୁ ଧର୍ମରେ ମୋର ବାପ ହେଲେ । ଆପଣ ସାକ୍ଷାତ ଲୋକନାଥ । ଆଜିପର୍ଯ୍ୟନ୍ତ ଇମିତି ପଦିଏ ଦରଜଛଡ଼ା କଥା ତ କେହି କହି ନ ଥିଲା । ଯେଉଁଗୁଡ଼ାକ ଅଇଲେ, ସେଗୁଡ଼ାକ ସବୁ ତୁଚ୍ଛା ମୂର୍ଖ । ଏବେ ଆପଣ ମତେ ଔଷଧ ଦିଅନ୍ତୁ ।

ପଣ୍ଡିତେ କହିଲେ – ବୁଝିଲ ମହାନ୍ତିଏ । ଔଷଧ ଦେବି ଯେ, ଏଇଲାଗେ ଔଷଧ କାହିଁ ? ମୁଁ ତିଆରି କଲେ ସିନା ଦେବି ? ତିଆରି କରିବାକୁ ଚାରି ପାଞ୍ଚ ଦିନ ଲାଗିବ । ତା'ପରେ ତୁମେ ହଜାର ଔଷଧ ଖାଅ, ଲୋକନାଥଙ୍କଠାରେ ଲୟ ନ ରଖି ନିୟମରେ ଔଷଧ ନ ଖାଇଲେ କିଛି ଫଳ ହେବନାହିଁ । ଅସଲ ହେଲା ପ୍ରଭୁଙ୍କଠାରେ ବିଶ୍ୱାସ । ମୁଁ ଚାରିଦିନ ପରେ ପାନେ ଔଷଧ ଦେବି, ସେତିକିରେ କ୍ଷମା ହୋଇଯିବ ।

କୁନ୍ଥୁକୁନ୍ଥୁ କହିଲା – ଆପଣ ଯେଉଁ ନିୟମ କରିବେ, ମୁଁ ସେଥିରେ ବରାବର ଚଳିବି । ଆପଣଙ୍କୁ ଚାତକ ପରି ଚାହିଁ ରହିବି । କୁନ୍ଥୁକୁନ୍ଥୁ ଦଣ୍ଡବତ କଲା । ପଣ୍ଡିତେ ବିଦା ହୋଇଗଲେ ।

ପଣ୍ଡିତେ ଘରେ ପହଞ୍ଚି ଗୋଟେ ନେଉଳ ମାରି ଆଣିବାକୁ ହଳିଆକୁ କହିଲେ । ହଳିଆ ନେଉଳଟାକୁ ମାରିଆଣି ପଣ୍ଡିତଙ୍କୁ ଦେଲା । ପଣ୍ଡିତେ କାହାକୁ କିଛି ନ କହି ଗୋଟେ ଥାନରେ ତାକୁ ଲୁଚାଇ କରି ରଖିଲେ । ଚାରିଦିନ ପରେ ସେଇଟା ସଢ଼ି ପୋଚି ଗନ୍ଧାଇବାରେ ତା' ଆରଦିନ ପଣ୍ଡିତେ ସେ ପୋଚିଆ ନେଉଳଟା ଲୁଚାଇକରି ନେଇ କୁନ୍ଥୁକୁନ୍ଥୁ ଗାଁ'କୁ ବାହାରିଲେ । ସେଇଟାକୁ ଗାଁ' ମୁଣ୍ଡରେ ଠାଏ ଲୁଚାଇ ରଖି କୁନ୍ଥୁକୁନ୍ଥୁ ସାଙ୍ଗେ ଦେଖା କଲେ । କୁନ୍ଥୁକୁନ୍ଥୁ ପଣ୍ଡିତଙ୍କୁ ଦେଖି ପ୍ରାଣ ପାଇଲା । ପଣ୍ଡିତେ ପାନେ ସୁନା ମଗେଇ ଭେଦି ସାଙ୍ଗରେ ନେଇଥିଲେ । ସେତକ ତାକୁ ଦେଇ କହିଲେ, ବୁଝିଲ ମହାନ୍ତିଏ, ଏ ଲୋକନାଥଙ୍କ ହୁକୁମ ଔଷଧ । ପୂର୍ବକୁ ମୁହଁ କରି ଲୋକନାଥଙ୍କୁ ମନେ ମନେ ସ୍ମରଣ କରି ଏହାକୁ ଖାଇବ । ରୋଗ ଭଲ ହୋଇଗଲେ ଦିଅଁଙ୍କୁ ଗୋଟିଏ ଅମୃତକୁଣ୍ଡ ଲାଗି କରିବ । ଆଉ ଗୋଟେ କଥା – ତୁମର ଏଥିରେ ଗୋଟେ ଦୁଇଟା ଝାଡ଼ା ହୋଇଯିବ ।

ତୁମେ ମନେ ରଖିବ, ଯିମିତି ଝାଡ଼ା ଫେରିଲା ପରେ ସେ ମଇଳାକୁ ନ ଚାହିଁବ । ସେଥିରେ ଆଖି ପଡ଼ିଗଲେ ଆଉ ହୁକୁମ କାଟୁ କରିବ ନାହିଁ ।

କୁନ୍ଥୁକୁନ୍ଥୁ କହିଲା – ମୋର ପ୍ରାଣ ଯାଉଛି, ଆପଣ ମୋତେ ମଜା କରୁଛନ୍ତି, ମୁଁ ମଳକୁ ଚାହିଁବି ? ଆଖିରେ ଲୁଗାଟାଏ ବାନ୍ଧିଦେବି ପଛକେ କେବେ ମଳକୁ ଚାହିଁବି ନାହିଁ ।

ପଣ୍ଡିତ କହିଲେ – ତେବେ ତ ହେଲା, ଆଉ ଚିନ୍ତା କରନାହିଁ । ଏଇତକରେ ସବୁ କ୍ଷମା ହୋଇଯିବ । ହଉ, ଏବେ ନିଅ, ଯାକୁ ବେଗେ ଖାଅ । କୁନ୍ଥୁକୁନ୍ଥୁ ସେ ପାନକ ଖାଇ ଗରମ ପାଣି ଟିକିଏ ପିଇଲା । ପଣ୍ଡିତେ ତା' ପାଖରୁ ଯାଇ ଗାଁ' ଭିତରେ ଠାଏ ଲୁଚିକରି ରହିଲେ । ରାତି ପହରକ ବେଳକୁ କୁନ୍ଥୁକୁନ୍ଥୁକୁ ଝାଡ଼ା ମଡ଼େଇଲା । ସେ ତର ତର ହୋଇ ଦୌଡ଼ିକରି ଯାଇ ଠାଏଁ ଝାଡ଼ା ଫେରିଲା । ପଣ୍ଡିତେ କାହାକୁ କିଛି ନ କହି ତା' ଝାଡ଼ା ଫେରା ଜାଗା ଦେଖିଆସିଲେ । କୁନ୍ଥୁକୁନ୍ଥୁ ମଧ ପଣ୍ଡିତଙ୍କ କଥା ଅନୁସାରେ ଜମା ଝାଡ଼ାକୁ ଚାହିଁନାହିଁ । ଭେଦି ଯୋଗୁଁ ଗୁଡ଼ାଏ ପାଣି ପାଣି ଝାଡ଼ା ହୋଇଗଲା । କୁନ୍ଥୁକୁନ୍ଥୁ ପାଣିସାରି ଘରକୁ ଫେରିଲା ପରେ ପଣ୍ଡିତେ ସେ ସଢ଼ା ନେଉଳଟାକୁ ନେଇ ସେହି ମଳରେ ଗୋଳେଇ ପୋଳେଇ ଦେଇ ଆସିଲେ । ତା'ପରେ କୁନ୍ଥୁକୁନ୍ଥୁ ପାଖକୁ ଯାଇ କହିଲେ, ମହାନ୍ତିଏ । କ'ଣ ଝାଡ଼ା ଯାଇଥିଲ ? କୁନ୍ଥୁକୁନ୍ଥୁ କହିଲା – ହଁ, ଗୁଡ଼ାଏ ଝାଡ଼ା ହୋଇଗଲା । ପୁଣି ପଣ୍ଡିତେ ପଚାରିଲେ – ଆଚ୍ଛା, ଯେଉଁଠାରେ ଝାଡ଼ା ଫେରିଛ, ସେ ଜାଗା ଦେଖାଇ ପାରିବ ? କୁନ୍ଥୁକୁନ୍ଥୁ ହଁ କରିବାରୁ ପଣ୍ଡିତେ ତା' ସାଙ୍ଗରେ ଆଲୁଅଟେ ଧରି ଗଲେ ।

ଦିହେଁଯାକ ମଳ ପାଖରେ ପହଞ୍ଚିଲେ । ପଣ୍ଡିତେ ତ ଜାଣିଲା ପରି ହୋଇ ମଳକୁ ଏପାଖ ସେପାଖ ଚାହିଁ କହିଲେ ମହାନ୍ତିଏ । ଦେଖିବଟି ମଳ ଭିତରେ ଲମ୍ବ ହୋଇ ଗୋଟେ କ'ଣ ଦିଶୁଛି ? କୁନ୍ଥୁକୁନ୍ଥୁ ସାଙ୍ଗେ ସାଙ୍ଗେ କାଠି ଖଣ୍ଡିକରେ ମଳକୁ ଓଲଟ ପାଲଟ କରିବାରେ ଲାଞ୍ଜ ମୁଣ୍ଡ ଥାଇ ଏଡ଼େ ନେଉଳଟେ ପଡ଼ିଥିବାର ଦେଖିଲା । ସେ ସଙ୍ଗେ ସଙ୍ଗେ କହିଲା, ପଣ୍ଡିତେ ଆଜ୍ଞା; ହେଇଟି ସେ ନେଉଳଟା ଝାଡ଼ାରେ ପଡ଼ିଛି । ଓହୋ । ମୋ ଜୀବନ

ରହିଗଲା । ହେ ପ୍ରଭୁ ଲୋକନାଥ, ଧନ୍ୟ ତୁମ ମହିମା । ଓହୋ । କେଡ଼େ ବଡ଼ ଜନ୍ତୁ ହେଇଚି । କେଡ଼େ ଲାଞ୍ଜ । ମୁଣ୍ଡଟା ତାକୁ ବଳି ହେଇଛି । ଇମିତି କେତେକଥା କହି ତାକୁ ଓଲଟ ପାଲଟ କରୁଥାଏ ।

ପଣ୍ଡିତେ କହିଲେ – ହଇଏ ମହାନ୍ତିଏ । ଆଉ ମଳଗୁଡ଼ାକ ଘାଣ୍ଟିକରି କ'ଣ ହେବ ? ଜାଣିଲେଇଁ ତ ଆମ ରୋଗ ଗଲା । ଏବେ ପେଟ ଚିପାଚିପି କରି ଦେଖିଲ ଆଉ ଖରାପ ଲାଗୁଛି କି ?

କୁନ୍ଟୁକୁନ୍ଟୁ କହିଲା – ହୟେ, ଆଉ ଖରାପ ଲାଗିବ କାହିଁକି ? ନେଉଳ ଗୋଟାକ ଯାକ ପରା ବାହାରିଗଲା । ଯେବେ ଖଣ୍ଡେ ଅଧେ ରହି ଯାଇଥା'ନ୍ତା, ତେବେ ସିନା ଖରାପ ଲାଗନ୍ତା, ନ ହେଲେ ଆଉ ଖରାପ ଲାଗିବ କାହିଁକି ?

ପଣ୍ଡିତେ କହିଲେ – ହଉ, ତୁମେ ଆଗ ପ୍ରାଣ ପାଇଗଲ । ଏଇଟା ଯେବେ ପେଟ ଭିତରେ ଆଉ ପନ୍ଦରଦିନ ଥା'ନ୍ତା, ତେବେ ତୁମକୁ ହଇରାଣ କରିଥା'ନ୍ତା,ଏବେ ଘରକୁ ଚାଲ ।

ତାପରେ ଦୁହେଁ ଘରକୁ ଆସିଲେ । ଘରେ ଏକଥା ସମସ୍ତେ ଶୁଣି କୁନ୍ଟୁକୁନ୍ଟୁର ଆନନ୍ଦ ଦେଖି ବଡ଼ ଖୁସି ହେଲେ । ପଣ୍ଡିତଙ୍କୁ ସମସ୍ତେ ଧନ୍ୟ ଧନ୍ୟ କହିଲେ ।

ପଣ୍ଡିତେ ବିଦାୟ ମାଗିବାରୁ କୁନ୍ଟୁକୁନ୍ଟୁ କହିଲା – ଆପଣ ମୋତେ ପ୍ରାଣ ଦେଇଛନ୍ତି, ଆପଣଙ୍କୁ କ'ଣ ଦେବି କହନ୍ତୁ । ପଣ୍ଡିତେ କହିଲେ – ଏ ହୁକୁମ ଔଷଧ, ମୁଁ ଏଥିରେ କିଛି ନେଇ ପାରିବି ନାହିଁ । ନେଲେ ଆଉ ହୁକୁମ କାଟୁ କରିବ ନାହିଁ । ତୁମେ ଯେ ପ୍ରାଣ ପାଇଲ, ଏଇ ମୋର ଲକ୍ଷେ ଟଙ୍କା ।

ତା'ପରେ କୁନ୍ଟୁକୁନ୍ଟୁ ପଣ୍ଡିତଙ୍କୁ ଦଣ୍ଡପ୍ରଣାମ କରି ମହାସୁଖରେ ଘରେ ରହିଲା । ପଣ୍ଡିତଙ୍କୁ ତାଙ୍କ ବୁଦ୍ଧି ଯୋଗେ ଚାରିଆଡ଼େ ଲୋକେ ଧନ୍ୟ ଧନ୍ୟ କହିଲେ ।

# ବିଭା ବିଧା

ଗବାପୁର ବୋଲି ଗୋଟିଏ ଗାଁ' ଥିଲା। ଗାଁ'ଟି ଯାକ ତେଲି ମହାଜନ । ସେମାନଙ୍କ ଭିତରେ କୁବେର ସାହୁ ବୋଲି ଜଣେ ବଡ଼ ମହାଜନ ଥିଲା । ତା'ର ଅଚଳାଚଳ ସମ୍ପତ୍ତି । ସୁନା, ରୁପା, ହୀରା, ନୀଳା ତା' ଘରେ ଖର୍ବଖର୍ବ । ସମ୍ପତ୍ତି ବୁଝିବାକୁ ଗୁମାସ୍ତା, ତହସିଲଦାର ଗଣ୍ଡା ଗଣ୍ଡା । କୁବେରର ପୁଅ ଝିଅ ବେଶି ନ ଥିଲେ, ପୁଅ ହୋଇ ଖଣ୍ଡିଏ । ସେ ଭାରି ଗେହ୍ଲା – ନାଁ'ଟି ତା'ର ମନୁଆ । ମନୁଆ ଯାହା ଯେତେବେଳେ କହେ, ତାହା ସେତେବେଳେ ହୁଏ । ଗେହ୍ଲା ହେବାରୁ କେହି କିଛି କହିଲେ ନାହିଁ । ପିଲାଦିନୁଁ ମୂର୍ଖ ହୋଇ ବଢ଼ିଲା । ଦେଖୁଁ ଦେଖୁଁ ବିଭା ବୟସ ହେଲା । ବାପ ପୁଅକୁ ବିଭା କରିଦେବ ବୋଲି ଘରେ କଥା ପଡ଼ିଲା । ପୁଅ ବିଭା କଥା ଶୁଣିଲା । ନାଁ ତ ମନୁଆ, କେଜାଣି କାହିଁକି କି ମନ ହେଲା; କହିଲା – ବାପା, ମୁଁ ଯାହାକୁ ବିଭା ହେବି, ତାକୁ ଆଗ ବିଧେ ମାରିବି, ତେବେ ଯାଇ ବିଭା ହେବି, ନୋହିଲେ ନାହିଁ । ଗେହ୍ଲା ପୁଅ ତ, ବାପା କହିଲେ – ଏୟା ତ, ହେଲା ଏବେ । ଆମର ତ ଅଚଳାଚଳ ସମ୍ପତ୍ତି । ଆମ ଘରେ ବନ୍ଧୁ କରିବାକୁ ଶହ ଶହ ଲୋକ ଚାହିଁ ବସିଛନ୍ତି । ଏ କଥାକୁ କେହି ଅମଙ୍ଗ ହେବେ ନାହିଁ ।

ଏହାପରେ କନ୍ୟାପାତ୍ର ଠିକ୍ କରିବାକୁ ଗାଁ'କୁ ଗାଁ' ଲୋକେ ଗଲେ । ସତକୁ ସତ କୁବେର ଘରେ ଝିଅ ଦେବାକୁ ସମସ୍ତେ ରାଜି । ହେଲେ କ'ଣ ହେବ, ବିଧାମରା କଥାଟି ଶୁଣିଲେ କେହି କନ୍ୟା ଦେବାକୁ ରାଜି ହୁଅନ୍ତି ନାହିଁ । ସବୁଠୁଁ ଖବର ଆସିଲା, ବିଧାମରା ହେଲେ କେହି

କନ୍ୟା ଦେବେ ନାହିଁ । ଏହା ଦେଖି ପୁଅକୁ ବାପା ବୁଝାଇ କହିଲେ – ବାପା, ବିଧାମରା କଥାଟି ଛାଡ଼, ନୋହିଲେ କନ୍ୟା ମିଳିବ ନାହିଁ । ମନୁଆ କାହିଁକି ଏକଥାରେ ଟିକିଏ ମଙ୍ଗନ୍ତା ? ସେ କହିଲା – ବିଧା ନ ମାଇଲେ ମୁଁ ବିଭା ହେବିନାହିଁ ।

ବାପା ଆଉ କ'ଣ କରିବେ । ପୁଣି ଦୂରଦୂର ଦେଶକୁ ମଣିଷ ପଠାଇଲେ । ଗୋଟେ ଗାଁ'ର ଜଣେ ବଡ଼ ମହାଜନ ଥିଲା । ତା'ର ଗୋଟିଏ ବୋଲି ଝିଅ । ଝିଅଟି ଯେମିତି ଗେହ୍ଲା, ସେମିତି ସିଆଣା । ସେ ମହାଜନ କୁବେରଙ୍କ ଘରେ ଝିଅ ଦେବାକୁ ଆଗ ରାଜି ହେଲା; ମାତ୍ର ବିଧା କଥା ଯହୁଁ ଶୁଣିଲା, ତହୁଁ ରାଜିହେଲା ନାହିଁ । ଝିଅ ଶୁଣିଲା ଯେ ବିଧା ଅପମାନରେ ବାପା ମଙ୍ଗୁନାହାନ୍ତି । ତହୁଁ ବାପାଙ୍କ ପାଖେ ଅଳିକରି ସେ କହିଲା – ବାପା, ମୋତେ ସେଇଠାରେ ବିଭା ଦିଅ, ବିଧା କଥା ମୁଁ ବୁଝିବି । ବାପା ଆଉ କ'ଣ କରିବେ, ଝିଅ କଥାରେ ରାଜିହୋଇ ବିବାହ ପାଇଁ ନିର୍ଭର ଜବାବ ଦେଲେ । କୁବେର ଘରେ ନିର୍ଭର ଖବର ପହଞ୍ଚିଲା । ବିଭାଘର ପାଖେଇ ଆସିଲା । କୁବେର ବିଭା ପାଇଁ ସବୁ ଯୋଗାଡ଼ କରି ବନ୍ଧୁବାନ୍ଧବ, ଜାତି କୁଟୁମ୍ବ ସାଙ୍ଗରେ ଧରି ବହୁ ଆଡ଼ମ୍ବରରେ ପୁଅ ବିଭାକରି ଗଲା । ମହାଜନ ଦୁହେଁ ଧନ ଦୌଲତରେ କିଏ କାହାକୁ କମ୍ ନୁହନ୍ତି । ବଡ଼ ଜାକଜମକରେ ବିଭାଘର ହେଉଛି । ବେଦିରେ ବରକନ୍ୟା ବସି କର୍ମ କରୁଛନ୍ତି । ଏମିତି ହେଉ ହେଉ ହାତଗଣ୍ଠି ପଡ଼ିବା ବେଳ ହେଲା । ସେତିକିବେଳେ ବର କହିଲା – ମୁଁ ଆଗ ଏଇ ବେଦିରେ କନ୍ୟାକୁ ବିଧାଏ ମାରିବି, ତେବେ ଯାଇ ହାତଗଣ୍ଠି ପଡ଼ିବ, ନ ହେଲେ ଏ କନ୍ୟାକୁ ବିଭା ହେବିନାହିଁ । କନ୍ୟା ଏହା ଶୁଣି କହିଲା – ଏହା ଗୋଟାଏ କ'ଣ ବଡ଼ କଥା ? ମୁଁ ତ ତୁମର ଭାର୍ଯ୍ୟା ହେବି, ତୁମର ମୋ ଉପରେ ପୂରା ଅଧିକାର ହେବ । ବିଧାଏ କ'ଣ, ପାଞ୍ଚବିଧା ମାରିପାରିବ । ତେବେ ଏଇଲାଗେ ତ ମୁଁ ତୁମର ହୋଇନାହିଁ – ମୁଁ ତ ଏଇଲାଗେ ମୋ ବାପଘର ଅନ୍ନରେ ଚଳୁଛି, ମୁଁ ତୁମର ହେଲେ ତୁମେ ମୋତେ ମାରିବ ? ବର କନ୍ୟାର ଏହି କଥାରେ କ'ଣ ବୁଝିଲା କେଜାଣି, ଆଉ ଜିଦ୍ ନ ଧରି ହାତଗଣ୍ଠି ପଡ଼ିବାକୁ ମଙ୍ଗିଗଲା । ବିଭାଘର ବଢ଼ିଗଲା । ବରକନ୍ୟା ବାହୁଡ଼ା ଗଲେ । ବର

ଗାଁ'ରେ ପହଞ୍ଚି ମଧୁଶଯ୍ୟା ଦିନ ପୁଣି ସେଇ ଜିଦ୍ ଧଇଲା । ସେ କହିଲା – ମୁଁ ଆଗ ବିଧାଏ ନ ମାଇଲେ ମଧୁଶଯ୍ୟା ହେବନାହିଁ ।

ଏକଥା ଶୁଣି କନ୍ୟା କହିଲା, ଏ କି କଥା ? ମୁଁ ତ ତୁମର ହେଲିଣି । ତୁମର ତ ଏ ଜୀବନରେ ଅଧିକାର ଅଛି । ବିଧାଏ କ'ଣ, ଦଶବିଧା ମାରି ପାର । ହେଲେ କ'ଣ ହେବ, ମୁଁ ଏପର୍ଯ୍ୟନ୍ତ ତୁମ ରୋଜଗାରରେ ଚଳିନାହିଁ, ଏବେ ତୁମ ବାପାଙ୍କ ଧନରେ ଚଳୁଛି । ଯେଉଁଦିନ ତୁମ ରୋଜଗାରରେ ଚଳିବି, ସେଦିନ ତୁମେ ମୋତେ ମାରିବା କଥାଟା ଭାବିବ । ମନୁଆ ଏ କଥାରେ ଫେର୍ କ'ଣ ବୁଝିଲା, କହିଲା – ହଉ ତେବେ, ଆଜି ମଧୁଶଯ୍ୟା ବନ୍ଦ ରହୁ, ମୁଁ ରୋଜଗାର କରେ, ତା'ପରେ ବିଧା ମାରିବି ତ ଯାଇ ମଧୁଶଯ୍ୟା ହେବ । ଶେଷକୁ ସେଇକଥା ହେଲା । ତହିଁ ଆରଦିନ ମନୁଆ ବାପାକୁ କହିଲା – ବାପା ! ମୋତେ କିଛି ପାଣ୍ଠି ଦିଅ, ଆଉ ଲୋକବାକ, ଡଙ୍ଗାବୋଇତ କିଛି ଦିଅ । ମୁଁ ବିଦେଶକୁ ବଣିଜ କରିବାକୁ ଯିବି । ବାପା କହିଲେ – ତୋର କ'ଣ ନାହିଁ, ତୁ କାହିଁକି ବିଦେଶ ଯିବୁ ? ସେ ଯେତେ ମନାକଲେ ସୁଦ୍ଧା ମନୁଆ ମନ ମାନିଲା ନାହିଁ । ବାପା ପଚିଶ ଖଣ୍ଡ ବୋଇତ, ତିନି କୋଟି ଟଙ୍କା ଆଉ ଲୋକବାକ ଯାହା ଦରକାର, ତା' ସବୁ ଠିକଣା କରିଦେଲେ । ପୁଅ ବିଦେଶ ଯିବା କଥା ସ୍ଥିର ହେଲା । ବୋହୂ ଏସବୁ କଥା ଦେଖି ଶୁଣି ବାପଘରକୁ ଯିବାକୁ ଖବର ଦେଲା । ସବାରି ଗୌଡ଼ ଆସି ବୋହୂକୁ ନେଇଗଲେ ।

ମହାଜନ ଝିଅ ବାପଘରେ ପହଞ୍ଚି ବିଦେଶକୁ ବଣିଜ କରି ଯିବାକୁ ବାପାକୁ ବହୁତ କହିଲା । 'ମାଇକିନିଆ ଝିଅଟେ କାହିଁକି ବଣିଜ କରିବାକୁ ଯିବୁ ?' ବାପା ବହୁତ ମନା କଲେ । ଝିଅ ସେ ମନା ନ ମାନି ବହୁତ ଅଳି କରିବାରୁ ବାପା ପଚିଶ ତିରିଶ ଖଣ୍ଡ ବୋଇତ, ଲୋକବାକ, ଟଙ୍କା କଉଡ଼ି ସବୁ ଠିକଣା କରିଦେଲେ । ମହାଜନ ଝିଅ ବୋଇତ ଚଢ଼ି ବଣିଜ କରି ବାହାରିଲା । ମନୁଆ ଯେଉଁ ଦେଶକୁ ଯିବ, ସେ ମଧ୍ୟ ସେକଥା ଜାଣିଥିଲା । ମହାଜନ ଝିଅ ସେଇ ଦେଶ ଆଡ଼କୁ ବୋଇତ ଚଳାଇଲା । ମନୁଆ ଆଗରୁ ବିଦେଶ ଯାଇଥାଏ । ମହାଜନ ଝିଅ ତା' ପଛେ ପଛେ ବାହାରିଲା ।

ମନୁଆ ସମୁଦ୍ରରେ ଯାଉ ଯାଉ ବାଟରେ ଗୋଟେ ଦ୍ୱୀପ ଦେଖିଲା । ସେ ଦ୍ୱୀପ ନାଁ ହତ୍ୟାପୁରୀ । ସେଠାରେ ବୋଇତ ଖଟାଇ ଦେଇ ଦ୍ୱୀପ ଭିତରକୁ ଗଲା । ସେଠାରେ କେତେଗୁଡ଼ିଏ ଲୋକ ଅଛନ୍ତି, ସେ ସମସ୍ତେ ଠକ । ସେମାନଙ୍କ ଭିତରେ ଜଣେ ଛୋଟା ଥିଲା, ସେ ସବୁଠାରୁ ବୁଦ୍ଧିଆ । ବାକି ସମସ୍ତେ ତାରି ହୁକୁମରେ ଚଳନ୍ତି । ମନୁଆ ପହଞ୍ଚି ଦେଖେ ତ ଛୋଟା ବସିଛି, ତାକୁ ଚାରିପାଖରେ ଗୁଡ଼ିଏ ଲୋକ ବେଢ଼ି ରହିଛନ୍ତି । ଠକସର୍ଦ୍ଦାର ଛୋଟା, ମନୁଆକୁ ଦେଖି ପାଖକୁ ଡକାଇଲା । ମନୁଆ ପାଖକୁ ଯିବାରେ ତା'ର ପରିଚୟ ବୁଝିନେଲା । ଛୋଟା ମନୁଆକୁ ଗୋଟେ ବଡ଼ ମହାଜନ ବୋଲି ଜାଣି କହିଲା – ହଇଓ ମହାଜନ ପୁଅ ! ତୁମ ବାପା ମୋର ସଙ୍ଗାତ । ସେ ବରାବର ଏଠାକୁ ବଣିଜ କରିବାକୁ ଆସୁଥିଲେ । ତାଙ୍କ ଗୋଡ଼ ଛୋଟା ହୋଇଯିବାରୁ ସେ ଆଉ ନିଜ ଦେଶକୁ ଯାଇପାରିଲେ ନାହିଁ । ସଙ୍ଗାତ ତ, ସେ ମତେ କହିଲେ – ସଙ୍ଗାତ, ତୁମେ ମୋ ଗୋଡ଼ ଯୋଡ଼ାକ ରଖି ତୁମ ଗୋଡ଼ ଯୋଡ଼ାକ ମତେ ଦେଇଥାଅ । ମୁଁ ପୁଣି ଫେରି ଆସିଲେ ତୁମ ଗୋଡ଼ ଫେରାଇ ଦେବି । ଏକଥା କହି ମୋ ଗୋଡ଼ ଯୋଡ଼ିକ ନେଲେ । ଏବେ ଏତେକାଳ ହେଲା ନ ଆସିଲେ ମୁଁ ଭଲା ଚଳେ କିପରି । ଏମିତି ଠକପଣିଆ କ'ଣ ଭଲ ? ତେବେ ତୁମେ ତାଙ୍କ ପୁଅ ଆସି ପହଞ୍ଚିଛ, ମୁଁ ଛାଡ଼େଟିକି ? ଠକ ସର୍ଦ୍ଦାର କହିଲା – କିଏ ଅଛରେ, ବେଗେ ଯାକୁ ବନ୍ଦୀ କରି, ଜିନିଷପତ୍ର ଡଙ୍ଗା ବୋଇତ ସବୁ ଛଡ଼ାଇ ରଖ । ମନୁଆ ଏହା ଶୁଣି ଭୟରେ ଥରହର ହୋଇ କହିଲା – ମୁଁ ତ ଏସବୁ କଥା ଜାଣେନାହିଁ, ମୋଠାରୁ କିଛି ବୋଇତ ବନ୍ଧା ରଖି ଛାଡ଼ିଦିଅ । ମୁଁ ପୁଣି ଗାଁ' କୁ ଗଲେ ବାପାଙ୍କୁ କହି ତୁମ ଗୋଡ଼ ଯୋଡ଼ିକ ପଠାଇଦେବି । ଠକ ସର୍ଦ୍ଦାର ମହାଜନ ପୁଅ କଥାରେ ରାଜିହୋଇ ତା'ର ପାଞ୍ଚ ଖଣ୍ଡ ଜାହାଜ ଛଡ଼ାଇ ରଖିଲା । ମହାଜନ ପୁଅ ମୁହଁ ଶୁଖାଇ କେତେ ବାଟ ଗଲା ।

ଯାଉ ଯାଉ ଖଣ୍ଟପୁର ବୋଲି ଗୋଟିଏ ଗାଁ' ପଡ଼ିଲା । ସେ ଗାଁ'ର ଲୋକେ ବାଟମାରଣୀ ବୋଲି ଡାକୁ । ସେଠାରେ ଜଣେ ବେଶ୍ୟା ଥିଲା । ସେ ରାତି ଦିନ ମାରଣାପଣିଆ କରି ଅସୁମାର ଧନ କରିଥାଏ । ତା' ପାଖରେ ବଛା ବଛା ବହୁତ ଡକେଇତ ଚାକିରି କରନ୍ତି । ମହାଜନ ପୁଅ

ସେ ଗାଁ' ପାଖ ହେଲାବେଳକୁ ସେ ବେଶ୍ୟା ତା' ଆସୁଥିବା ଖବର ପାଇ ଜଗି ବସିଥାଏ । ମହାଜନ ପୁଅ ସେଠାରେ ଯେମିତି ପହଞ୍ଚିଛି, ବେଶ୍ୟା ତାକୁ ଲୋକ ପଠାଇ ଧରାଇଆଣି, ତା' ପରିଚୟ ପଚାରିଲା । ଚିହ୍ନଟ ପାଇଲା ଉତ୍ତାରୁ ବେଶ୍ୟା କହିଲା – ମୁଁ କେତେକାଳୁ ଏପରି ଜଗି ବସିଛି, ଆଜି ସରିକି ଫଳ ଫଳିଲା । ତୁମ ବାପା ମୋତେ ବିଭା ହେଲେ, କିଛି କାଳ ମୋ ସାଙ୍ଗେ ଚଳିଲେ । ତା'ପରେ ଗାଁ'କୁ ଯାଉଛି, ଅଳ୍ପଦିନେ ଫେରିଆସିବି ବୋଲି କହି କେତେକାଳ ହେଲା ଗଲେ ଯେ ଗଲେ, ଆଉ ଫେରିଲେ ନାହିଁ । ଚଳିବା ପାଇଁ ମୋତେ ଯାହା ଦେଇ ଯାଇଥିଲେ, ସେ କେଉଁକାଳୁ ସରିଲାଣି; ମୁଁ ଚଳେ କେମିତି ? ସେ ଟିକିଏ ଭାବିଲେ ନାହିଁ । ଏବେ ମୋ ଭାଗ୍ୟକୁ ତୁମେ ଆସିଛ, ମତେ ସାଙ୍ଗରେ ନେଇ ତୁମ ବାପାଙ୍କ ପାଖରେ ଛାଡ଼ିଦେଇ ଆସ, ନୋହିଲେ ତୁମକୁ ଛାଡ଼ିବି ନାହିଁ ।

ମହାଜନ ପୁଅ ଦେଖିଲା – ଏ ତ ବଡ଼ ଅଡୁଆ କଥା । ବାପା ଏହାକୁ ବିଭା ହୋଇଥିଲେ କି ନା, ମୁଁ ଜାଣେ ନାହିଁ । ବିଭା ହୋଇଥିଲେ ଅବା ମୁଁ ନେଇ କୁଆଡ଼େ ଯିବି ? ମୁଁ ତ ଦେଶ ଦେଶାନ୍ତର ଯିବି, ଏଥିରୁ ଗୋଟେ ନେଇ କୁଆଡ଼େ ବୁଲିବି ? ଏ ତ ପୁଣି ମତେ ଛାଡ଼ିବ ନାହିଁ ବୋଲି ରଟି ବସିଲାଣି । କ'ଣ କରିବି ? ପଛକୁ ତାକୁ ଦି'ଖଣ୍ଡ ଜାହାଜ ଦେଇ କହିଲା – ତୁମେ ଏ ଜାହାଜ ଦି'ଖଣ୍ଡ ରଖ, ମୁଁ ଫେରିଲା ବେଳକୁ ତୁମକୁ ସାଙ୍ଗରେ ନେଇଯିବି ।

ବେଶ୍ୟା ସତେ କ'ଣ ମହାଜନ ପୁଅ ସାଙ୍ଗରେ ଯା'ନ୍ତା କି, କିଛି ଧନ ମାରି ନେବାକୁ ଏପରି ଫିକର କରୁଥିଲା ସିନା ? ଏବେ ତ ଧନ ମିଳିଗଲା, ଆଉ କାହିଁକି ଓଜର କରିବ ? ମହାଜନ ପୁଅ ସେଥିରୁ ବର୍ତ୍ତିଯାଇ ପୁଣି କେତେ ବାଟ ଗଲା ।

ଯାଉ ଯାଉ ଚୋପାଛଡ଼ାପୁର ବୋଲି ଗୋଟେ ଗାଁ'ରେ ପହଞ୍ଚିଲା । ସେ ଗାଁ'ର ଧୋବାଗୁଡ଼େ ନଈକୂଳରେ ସେ ଦେଶ ରଜାଙ୍କର ଲୁଗା କାଚୁଥା'ନ୍ତି । ସେ ରାଜ୍ୟ ତ ଠକ ରାଜ୍ୟ – ରଜା ଯିମିତି ଠକ, ପ୍ରଜା ସେମିତି ଠକ । ଏ ଧୋବାଗୁଡ଼ିକ ମଧ ମହାଠକ । ସେହି ଧୋବା ତୁଠରେ

ଗୁଡ଼ିଏ ବଗ ବସିଥିଲେ । ମହାଜନ ପୁଅର ଜାହାଜଗୁଡ଼ାକ ସେଠାରେ ଲାଗିବାରେ ବଗ ଯାକ ଫର୍‌ର କରି ଉଡ଼ିଗଲେ । ଧୋବାମାନେ ଏଇ ମେଳ ହୋଇ ମହାଜନ ପୁଅକୁ ଧରିଆଣି ପଚାରିଲେ – କିଓ । ଯେ କ'ଣ ? ତମେ ଜାଣ ନାହିଁ ଆମେ ରଜାଘର ଧୋବା ବୋଲି ? ଏବେ ତୁମରି ଯୋଗୁଁ ଯେ ବଗଯାକ ଉଡ଼ିଗଲେ । ତା' ଆମେ ଆଉ କେଉଁଠୁ ପାଇବୁ ? ଯେବେ ବଗଯାକ ଧରିଆଣି ଦେବ, ତେବେ ତୁମକୁ ଛାଡ଼ିଦେବୁ; ନୋହିଲେ ରଜାଙ୍କୁ ଜଣାଇ ତୁମକୁ ବନ୍ଦୀଶାଳାରେ ପକାଇବୁ ।

ମହାଜନ ପୁଅ କହିଲା – ରଜାଙ୍କ ଲୁଗା ଧୋବରେ ବଗ କ'ଣ କରନ୍ତେ ?

ଧୋବାମାନେ କହିଲେ – ତାଙ୍କୁ ଦେଖି ତାଙ୍କ ପକ୍ଷୀ ପରି ଲୁଗା ଧୋବ କରୁଥିଲୁ । ଏବେ ଆମେ କାହାକୁ ଆଉ ଧୋବ କରିବୁ ।

ଏକଥାରେ ମହାଜନ ପୁଅ ଡରିଯାଇ କହିଲା – ଯାହା ହବାର ତାହା ହେଲାଣି, ମୋ ଠାରୁ ଦି'ଖଣ୍ଡ ଜାହାଜ ରଖ ପଛକେ, ଆଉ ରଜାଙ୍କୁ ଜଣାଅ ନାହିଁ । ଧୋବା ସବୁ ଯହୁଁ ଦି'ଖଣ୍ଡ ଜାହାଜ ପାଇଲେ ତହୁଁ ମହାଜନ ପୁଅକୁ ଛାଡ଼ିଦେଲେ ।

ମହାଜନ ପୁଅ ପୁଣି କେତେବାଟ ଗଲା । ଯାଉ ଯାଉ ସେ ଦେଶର ରଜାଙ୍କ ଗଡ଼ରେ ପହଞ୍ଚିଲା । ସେ ତ ଠକ ରଜା, କାହାକୁ କିମିତି ଠକି ଧନଦଉଲତ ନବ, ଏଇ କଥା ରାତିଦିନ ରଜାର ଚିନ୍ତା। ଏଥିପାଇଁ ଶହ ଶହ ଲୋକ ଲାଗିଥା'ନ୍ତି। ମହାଜନ ପୁଅ ଯେମିତି ସେ ରାଜ୍ୟରେ ଗୋଡ଼ ଦେଇଛି, ରଜାଙ୍କୁ ସାଙ୍ଗେ ସାଙ୍ଗେ ଖବର ମିଳିଗଲା । ରଜା ଶୁଣିଲେ ଯେ ମହାଜନ ସାଥିରେ ପନ୍ଦର କୋଡ଼ିଏ ଜାହାଜ ଅଛି । ଏଥିରେ ରଜା ସମ୍ଭାଳି ହୋଇ ରହିପାରେଟିକି ? ମହାଜନ ପୁଅ ପାଖକୁ ଚାର ଗଲା । ରଜାଙ୍କ ଡକରାରେ ମହାଜନ ପୁଅ ତାଙ୍କ ଛାମୁରେ ହାଜର ହେଲା । ରଜା ତା'ର ପରିଚୟ ପଚାରିଲେ । ତା'ପରେ ଜୁଆ ଖେଳିବାକୁ ରଜା ତାକୁ କହିଲେ । ମହାଜନ ପୁଅ ଏକେ ପିଲାଦିନୁ ଗେହ୍ଲାରେ ବଢ଼ିଛି, ସେଥିରେ ପୁଣି ନିର୍ବୁଦ୍ଧିଆ । ବୁଦ୍ଧିଆ ହେଲେ ଅବା କ'ଣ କରନ୍ତା । ରଜାର ରାଜ୍ୟରେ

ଅଛି, ତେଣୁ ନାହିଁ କରିବାକୁ ସାହସ ହେଲାନାହିଁ । କଥା ହେଲା – ଖେଳ ରାତିଯାକ ହେବ । ରଜାଘର ବିଲେଇ ମୁଣ୍ଡରେ ଦୀପ ଥୁଆ ହବ । ଯେବେ ବିଲେଇ ମୁଣ୍ଡରୁ ଦୀପ ପଡ଼ିଯାଏ, ତେବେ ମହାଜନ ପୁଅ ସେ ରାଜ୍ୟଟା ପାଇବ; ନୋହିଲେ ଯେତେ ଜାହାଜ, ଧନସମ୍ପତ୍ତି ଅଛି, ତା' ସବୁ ରଜା ନେବେ । ପଛକୁ ମହାଜନ ପୁଅ ରଜାଘର ଘୋଡ଼ାଘାସିଆ ହେବ । ଏଥିରେ ମହାଜନ ପୁଅ ରାଜି ହୋଇଗଲା । ସେହିପରି ବିଲେଇ ମୁଣ୍ଡରେ ଦୀପ ଥୁଆହୋଇ ଖେଳ ହେଲା । ଖେଳରେ ରାତି ପାହିଲା ପଛକେ ବିଲେଇ ମୁଣ୍ଡରୁ ଦୀପ ପଡ଼ିଲା ନାହିଁ । ରଜା ତ ବିଲେଇକି ପିଲାଦିନରୁ ଏହା ଶିଖାଇଛନ୍ତି, ଆଉ ଦୀପ ପଡ଼ନ୍ତା କାହିଁକି ? ରାତି ପାହିବାରେ ରଜା ପଣ ଅନୁସାରେ ମହାଜନ ପୁଅର ଯେତେକ ଜାହାଜ, ଧନସମ୍ପତ୍ତି ଆଉ ଲୋକବାକ ଥିଲେ ସବୁ ନେଇ ତାକୁ ଘୋଡ଼ାଘାସିଆ କରି ରଖିଦେଲା । ମହାଜନ ପୁଅ ଆଉ କ'ଣ କରିବ, ଘୋଡ଼ା ପାଇଁ ଘାସ ଆଣି ଘୋଡ଼ା ଲେଣ୍ଡି ପୋଛି ମୁଠେ ମୁଠେ ପଡ଼ି ପାଇ ସେହି ଘୋଡ଼ାଶାଳରେ ପଡ଼ିଥାଏ ।

ତେଣେ ମହାଜନ ଝିଅ ଅଣ୍ଡିରା ବେଶରେ ଜାହାଜମାନ ଚଳାଇ ମହାଜନ ପୁଅ ପଛେ ପଛେ ଆସୁଥାଏ । ସେ ଯେମିତି ଯେତେବେଳେ ହତ୍ୟାପୁରୀ ଦ୍ୱୀପରେ ପହଞ୍ଚିଲା, ସେତେବେଳେ ଛୋଟା ଠକ ସାଙ୍ଗେ ଦେଖା ହେଲା । ଛୋଟା ଯେମିତି ମହାଜନ ପୁଅକୁ କହିଥିଲା, ସେହିପରି ମହାଜନ ଝିଅକୁ କହିଲା – ତୁମ ବାପା ମୋର ସଙ୍ଗାତ, ସେ ବରାବର ଏଠାରେ ବଣିଜ କରୁଥିଲେ । ତାଙ୍କ ଗୋଡ଼ ଛୋଟା ହେବାରୁ ଆଉ ଗାଁ'କୁ ଯାଇ ପାରୁ ନ ଥା'ନ୍ତି । ଦିନେ ମୋତେ କହିଲେ ସଙ୍ଗାତ । ମୋ ଗୋଡ଼ଯୋଡ଼ାକ ରଖି ତୁମ ଗୋଡ଼ ଦେଇଥା'ନ୍ତ । ମୁଁ ପୁଣି ଗାଁ'ରୁ ଫେରିଲେ ତୁମ ଗୋଡ଼ ତୁମକୁ ଦେଇ ଦିଅନ୍ତି । ସଙ୍ଗାତ ତ, ମୋ ଗୋଡ଼ ଯୋଡ଼ିକ ଦେଲି । ଏବେ ଏତେ କାଳ ହେଲା ସେ ଫେରିଲେ ନାହିଁ । ମୁଁ ଏବେ ସେଇକାଲୁ କଷ୍ଟ ପାଉଛି । ଦୈବେ ତୁମେ ତାଙ୍କ ପୁଅ ପହଞ୍ଚିଛ । ଏବେ ମୋ ଗୋଡ଼ ଯୋଡ଼ିକ ଦିଅ, ନୋହିଲେ ତୁମକୁ ଛାଡ଼ିବି ନାହିଁ ।

ମହାଜନ ଝିଅ ଭାରି ଚାଲାକ । ସେ ବୁଝିନେଲା – ଏ ଲୋକଟା ଠକ । ପୁଣି ବୁଝିଲା, ମହାଜନ ପୁଅକୁ ଏହିପରି ହଇରାଣ କରି ତା'ର

କେତେ ଖଣ୍ଡ ଜାହାଜ ଛଡ଼ାଇ ରଖିଛି – ତେଣୁ ଗୋଟେ ବୁଦ୍ଧିରେ କହିଲା – ଆଚ୍ଛା, ଯେବେ ଏମିତି କଥା, ତୁମେ ବ୍ୟସ୍ତ କିଆଁ ହଉଚ ? ମୁଁ ତୁମକୁ ତୁମ ଗୋଡ଼ ଅଣାଇ ଦେଉଛି । ତୁମ ଗୋଡ଼ ଆସିଲେ ମୁଁ ଯିବି । ତୁମେ ଆଉ ବ୍ୟସ୍ତ ହୁଅ ନାହିଁ । ଏହା କହି ନିଜ ଚାକରବାକରଙ୍କୁ ଡାକି କହିଲା – କିଏ ଅଛରେ । ଆମର ସବୁ କାମ ବନ୍ଦ କରି ଆଗ ୟାଙ୍କର ଛୋଟା ଗୋଡ଼ ଯୋଡ଼ାକ ହାଣି ନେଇ ବାପାଙ୍କୁ ଦେଇ ବାପାଙ୍କଠାରୁ ୟାଙ୍କ ଗୋଡ଼ ଆଣି ଦିଅ । ଏତକ ନ ହେଲେ ମୁଁ ଏଠାରୁ ଯିବିନାହିଁ । ମହାଜନ ଝିଅ ହୁକୁମରେ ତହୁଁ ଲୋକବାକ କଟୁରି ଧରି ଛୋଟା ଗୋଡ଼ ହାଣିବାକୁ ଆସିଲେ । ଛୋଟା ସେଥିରେ ଡରିଯାଇ କହିଲା – ନାହିଁ, ନାହିଁ, ତୁମ ବାପା ମୋ ଗୋଡ଼ ନେଇନାହାନ୍ତି । ଆମେ ସବୁ ଠକ, ଏହିପରି ଠକିକରି ଚଳୁ । ତୁମେ ଆଉ ଆମକୁ ହଟହଟା ନ କରି ଦି'ଖଣ୍ଡ ଜାହାଜ ନେଇ ଏଠାରୁ ଯାଅ । ଛୋଟା ଯେଉଁ ଜାହାଜ ମହାଜନ ପୁଅଠାରୁ ରଖିଥିଲା, ତାହା ମହାଜନ ଝିଅକୁ ଦେଇ ବିଦା କଲା ।

ତା'ପରେ ମହାଜନ ଝିଅ ଯାଉ ଯାଉ ଖଣ୍ଡପୁର ବେଶ୍ୟା ହାବୁଡ଼େ ପଡ଼ିଲା । ସେ ବେଶ୍ୟା ସେହିପରି ତାକୁ କହିଲା – ତୁମ ବାପା ମୋତେ ବିଭାହୋଇ ଏଠାରେ ମୋତେ ରଖିଦେଇ ଗଲେ । ଅନେକ ଦିନ ହେଲା ଗଲେ, ମୁଁ କିମିତି ଚଳେ, ତହିଁର କିଛି ଯୋଗାଡ଼ କରି ଗଲେ ନାହିଁ । ତୁମେ ମୋତେ ତୁମ ବାପାଙ୍କ ପାଖକୁ ନେଇ ଚାଲ, ନ ହେଲେ ତୁମକୁ ଛାଡ଼ିବି ନାହିଁ ।

ମହାଜନ ଝିଅ ଦେଖିଲା ଯେ – ଏ ଆହୁରି ଏକ ଠକ । ଏହାକୁ ତ ନ ଠକିଲେ ହେବ ନାହିଁ । ତହୁଁ କହିଲା – ମୁଁ ତ ତୁମରି ପାଖକୁ ଆସିଛି । କ'ଣ କହିବି, ଆଜିକି ଚାରିମାସ ହେଲା ବାପା ମରିଗଲେ । ମରିଗଲା ବେଳେ ମତେ ତୁମରି କଥା କହିଯାଇଛନ୍ତି – ସେ କହିଛନ୍ତି – ସେ ମଲା ପରେ ତାଙ୍କର ଖଣ୍ଡିଏ ହାଡ଼ ଆଣି ତା' ସାଙ୍ଗେ ତୁମକୁ ସତୀଦାହ କରିବାକୁ । ମୁଁ ତାଙ୍କ ପାଖରେ ସତ୍ୟ କରିଥିଲି । ଏବେ ତାଙ୍କର ଖଣ୍ଡିଏ ହାଡ଼ ଆଣିଛି । ତୁମେ ଆସ, ତୁମର ସତୀଦାହ କରିଦେବି । କିଏ

ଅଛରେ । ଯାଙ୍କୁ ଧର ମଶାଣିକି ନେଇଚାଲ । ଯହୁଁ ମହାଜନ ଝିଅର ଲୋକବାକ ତାକୁ ଦାହ କରିବାକୁ ବାହାରି ପଡ଼ିଲେ, ତହୁଁ ବେଶ୍ୟାର ପିଳେହିପାଣି ହୋଇଗଲା । ସେ କହିଲା, ନାହିଁ, ନାହିଁ, ଏସବୁ ମିଛ କଥା । ମତେ ପୋଡ଼ି ପକାଅ ନାହିଁ । ମୋଠାରୁ ଦି'ଖଣ୍ଡ ଜାହାଜ ଲାଞ୍ଚ ନେଇ ତୁମେ ଏଠାରୁ ଯାଅ । ମହାଜନ ଝିଅ ପୁଣି ଦି'ଖଣ୍ଡ ଜାହାଜ ରୋଜଗାର କରି ଚାଲିଲା ।

ପୁଣି ଯାଉ ଯାଉ ଚୋପାଛଡ଼ାପୁର ଧୋବାଙ୍କ ସଙ୍ଗେ ଦେଖା ହେଲା । ଧୋବା ଯାକ ଯେମିତି ବଗ ଉଡ଼ିଯିବାରୁ ମହାଜନ ପୁଅକୁ ଧମକାଇଥିଲେ, ଯାକୁ ମଧ୍ୟ ସେମିତି ଧମକାଇଲେ । ମହାଜନ ଝିଅ କହିଲା – ଆରେ । ତୁମର ସବୁ ତ ଚାକିରି ଆଉ ରହିବ ନାହିଁ । ଆଉ ବଗ କ'ଣ ହେବ ? ଧୋବା ଯା ଶୁଣି ପଚାରିଲେ, ଆମ ଚାକିରି କାହିଁକି ଯିବ ? ମହାଜନ ଝିଅ କହିଲା, ଆରେ ତୁମେ ସିନା ବଗ ପକ୍ଷୀ ପରି ଧୋବ କରୁଥିଲ, ତୁମ ରାଜ୍ୟରେ କୁଆ ନାହାନ୍ତି, ତା' ପକ୍ଷୀ ତ ଦେଖି ନାହଁ, ତା'ପରି ଧୋବ କାହୁଁ କରିବ ? ମୁଁ କୁଆପକ୍ଷୀ ପରି ଧୋବ କରି ଜାଣେ ବୋଲି ତୁମ ରଜା ମୋତେ ଡକାଇ ଆଣିଛନ୍ତି । ମୁଁ କୁଆପକ୍ଷୀ ପରି ଧୋବ କଲେ ରଜା ତୁମକୁ କାହିଁକି ରଖିବେ ?

ଧୋବା ସବୁ ଏକଥା ଶୁଣିବା ପରେ ତାଙ୍କ ମୁହଁ ସବୁ ଶୁଖିଗଲା । ଏବେ ତାଙ୍କର ଦାନା ପାଣି ଉଠିଯିବ । ସେ ଆଉ ମହାଜନ ଝିଅକୁ ଠକିବେ କ'ଣ ? ଏବେ ତାକୁ କିଛି ଦେଇ ବୋଧଶୋଧ କରି ନ ଛାଡ଼ିଲେ ସାତପୁରୁଷୀ ରଜା ଘର ସେବା ଯିବ । ତହୁଁ ଧୋବାମାନେ କହିଲେ – ଯାହା ହେଲା ହେଲା, ଆମେ ତୁମକୁ ଦି'ଖଣ୍ଡ ଜାହାଜ ଦେଉଛୁ, ତୁମେ ସେତକ ନେଇ ତୁମ ଗାଁ'କୁ ଫେରିଯାଅ । ଆଉ ଆମ ଦାନାପାଣିରେ ଧୂଳି ଦିଅ ନାହିଁ ।

ମହାଜନ ଝିଅ କହିଲା – ରଜା ଯେତେବେଳେ ଡକାଇଛନ୍ତି, ନ ଯିବି କିମିତି ? ତୁମେ ସବୁ ଆଉ ଭୟ କର ନାହିଁ । ମୁଁ ଖାଲି ରଜାଙ୍କୁ ଦେଖାକରି ଏଠାରେ ରହିପାରିବି ନାହିଁ ବୋଲି କହି ମୋ ଗାଁ'କୁ ଫେରିଯିବି ।

ଏଥିରେ ଧୋବାମାନେ ଖୁସି ହୋଇ ମହାଜନ ପୁଅଠାରୁ ଯେଉଁ ଦି'ଖଣ୍ଡି ଜାହାଜ ରଖିଥିଲେ, ତାହା ଦେଇ ବିଦା କଲେ ।

ମହାଜନ ଝିଅ ସେଠାରୁ ଯାଇ ଠକ ରଜା ଗଡ଼ରେ ପହଞ୍ଚିଲା । ସେଠାରେ ଶୁଣିଲା, ତା'ର ସ୍ୱାମୀ ଜୁଆଖେଳରେ ହାରି ସବୁ ଧନଦରବ ରଜାକୁ ଦେଇ ରଜାର ଘୋଡ଼ାଘାସିଆ ହୋଇଛି । ମହାଜନ ଝିଅର ରଜା ସଙ୍ଗେ ଦେଖା ହେବାରେ ରଜା ସେହିପରି ବିରାଡ଼ି ମୁଣ୍ଡରେ ଦୀପ ରଖି ଖେଳିବା କଥା କହିଲା । ମହାଜନ ଝିଅ ଲୋକଙ୍କଠାରୁ ଖେଳର ଢଙ୍ଗ ଶୁଣିଥିଲା । ସେ କଥା ଶୁଣିଲାବେଳୁ ତା'ର ଉପାୟ ପାଞ୍ଚି ରଖିଥିଲା । ରଜା ଖେଳ କଥା କହିବାରେ ମହଜନ ଝିଅ ଖେଳିବାକୁ ମଙ୍ଗିଲା ।

ମହାଜନ ଝିଅ ଖେଳିବାକୁ ଆସିଲାବେଳେ ଗୋଟିଏ ଫରୁଆରେ ତିନି ଚାରୋଟି ମୂଷାଛୁଆ ପୂରାଇ ଲୁଚାଇ ଆଣିଥାଏ । ରଜାଙ୍କ ସାଙ୍ଗେ ଖେଳ ଲାଗିଲା । ରଜା ବିଚାରିଥିଲେ – ଏ ତ ନିଶ୍ଚେ ହାରିବ, ଆଜି ରାତିରେ ପୁଣି ଗୁଡ଼ାଏ ଧନଦରବ ମିଳିଯିବ । ମହାଜନ ଝିଅ କ'ଣ କଲା ନା, ଖେଳୁ ଖେଳୁ ଚୁପ୍ କରି ଫରୁଆଟି ଫିଟାଇଦେଲା । ମୂଷାଛୁଆଗୁଡ଼ାକ କିଲକାଲି ହୋଇ ଘରଯାକ ବୁଲିଲେ । ବିରାଡ଼ି ତାହା ଦେଖି ଥୟ ହୋଇ ରହି ନ ପାରି ମୂଷା ଖାଇବାକୁ ଦୌଡ଼ିଲା । ତା' ମୁଣ୍ଡରୁ ଦୀପ ପଡ଼ିଗଲା । ରଜା ହାରିଯିବାରୁ ମହାଜନ ଝିଅକୁ କହିଲେ – ଏବେ ଏ ରାଜ୍ୟ ତୁମର ହେଲା । ମହାଜନ ଝିଅ କହିଲା – ମୋର ରାଜ୍ୟ ଦରକାର ନାହିଁ । ତୁମେ ଯେଉଁ ମହାଜନ ପୁଅକୁ ଘୋଡ଼ାଘାସିଆ କରି ରଖିଛ, ତାକୁ ଖଲାସ କରିଦେଲେ ମୁଁ ସବୁ ପାଇଲି । ରଜା ଖୁସିରେ ସଙ୍ଗେ ସଙ୍ଗେ ମହାଜନ ପୁଅକୁ ଆଣି ଖିଅରବାର କରାଇ ଖଲାସ କରିଦେଲା । ମହାଜନ ଝିଅ ଚୁପ୍‌ଚାପ୍ ମହାଜନ ପୁଅର ନଖ, ରୁଢ଼, ବାଳ, ଆଉ ଘୋଡ଼ା ଖୁରୁପି ଲୁଚାଇ ରଖିଲା । ମହାଜନ ପୁଅ ଖଲାସ ହୋଇ ନିଜ ରାଜ୍ୟକୁ ବାହାରିଲା ।

ମହାଜନ ଝିଅ ତାକୁ ଦଶ ପନ୍ଦର ଖଣ୍ଡ ଜାହାଜ, ଆଉ କେତେ ଧନରତ୍ନ ଦେଲା । ମହାଜନ ପୁଅ କହିଲା – ତୁମେ କାହିଁକି ମତେ ଏତେ ଧନ ଦଉଛ । ସେ କହିଲା – ତୁମେ ଆଜିଠାରୁ ମୋର ସଙ୍ଗାତ ହେଲ ।

ତୁମେ କେତେ ସମ୍ପତ୍ତି ଆଣିଥିଲ, ଖାଲିଟାରେ କିମିତି ଯିବ, ଏତକ ନେଇ ଯାଇଥାଅ । ତୁମେ ଆଗେ ଯାଅ, ମୁଁ ଆଉ ଦିନେ ଦୁଇଦିନ ପରେ ଯିବି ।

ମହାଜନ ପୁଅ ଗଲା । ତା' ପଛେ ମହାଜନ ଝିଅ ବାପ ଘରକୁ ଯାଇ ପୁଣି ଶାଶୁଘର ଗଲା । ସେଇକାଳୁ ତ ମଧୁଶଯ୍ୟା ବାକି ଅଛି, ପୁଅ ବୋହୂ ଏକାଠି ହେବାରୁ ମଧୁଶଯ୍ୟା ଦିନ ସ୍ଥିର ହେଲା । ହେଲେ କ'ଣ ହେବ, ଆଗ ବିଧା ନ ମାଇଲେ ତ ମଧୁଶଯ୍ୟା ହୋଇପାରିବ ନାହିଁ । ତହୁଁ ମହାଜନ ପୁଅ ମହାଜନ ଝିଅକୁ କହିଲା – ମୁଁ ଆଗ ବିଧା ନ ମାରିଲେ ମଧୁଶଯ୍ୟା ହୋଇପାରିବ ନାହିଁ । ମହାଜନ ଝିଅ କହିଲା – ହଁ ମାରିବ ଯେ ଆଗ ସେ ପେଡ଼ିଟି ଆଣ । ମହାଜନ ପୁଅ ପେଡ଼ି ଫିଟାଇ ଦେଖେ ତ ସେଥିରେ ତାରି ନଖ, ରୁମ, ବାଳ, ଆଉ ଘୋଡ଼ାଖୁରୁପି ଅଛି । ଏହା ଦେଖି ସେ କାବା ହୋଇ ପଚାରିଲା – ଏସବୁ ତୁମେ କାହୁଁ ପାଇଲ । ଏକଥା ଶୁଣି ମହାଜନ ଝିଅ ବିଦେଶରେ ଯାହା ଯାହା ଘଟିଥିଲା, ସେସବୁ ତା' ଆଗେ କହିଲା । ମହାଜନ ପୁଅ କହିଲା – ତୁମ ଯୋଗେ ତ ମୁଁ ଧନ ପ୍ରାଣ ପାଇଲି, ଆଉ ତୁମକୁ ମାରିବି କ'ଣ ? ତା' ବଦଳରେ ତୁମେ ମୋତେ ମାରିବା କଥା ।

ମହାଜନ ଝିଅ କହିଲା – ତୁମେ ମୋର ସ୍ୱାମୀ, ମୁଁ ତୁମର ସ୍ତ୍ରୀ, କିଏ କାହାକୁ ମାରିବ । ଏତେକେ ବିଧା ଅଡୁଆ ତୁଟିଗଲା । ବିଧିମତେ ମଧୁଶଯ୍ୟା ହେଲା । ଦିହେଁ ଧନଦୌଲତ ଭୋଗ କରି ମହାସୁଖରେ ରହିଲେ ।

# ସଉକି ଧୋବା

ଅଚିନ୍ତାପୁର ଗାଁ'ରେ ସଉକି ବୋଲି ଗୋଟିଏ ଧୋବା ଥିଲା । ଉଣାଅଧିକେ ସେ ମଧ୍ୟ ସଉକିଟେ । ସଉକି ଫୁଲଟେ କାନରେ ନ ଖୋସିଲେ ପଦାକୁ ବାହାରେ ନାହିଁ, ପାନ ଖିଲେ କଳରେ ନ ଜାକିଲେ ବାୟା ପରି ହୋଇଯାଏ । ଧୋବଧାଉଳିଆ ଧଡ଼ିଲୁଗା ଦି'ଖଣ୍ଡ ନ ହେଲେ ମନ ଶୁଖାଇଦିଏ । ଖାଇବା, ପିଇବା, ଶୋଇବା ସବୁ କଥାରେ ସଉକିର ସଉକିନି ଥାଏ । ତା'ର ମନ – କାମ ଦାମ କିଛି ନ କରି ରାଣ୍ଡୀପୁଅ ଅନନ୍ତା ପରି ବସି ବସି ବେଳସଅଳେ ସୁଆଦ ଚିକ୍କଣ ଦିଓଟି ଖାଇ ଖାଲି ଶୁଅନ୍ତା, ବସନ୍ତା, ଖେଳନ୍ତା । ଏଥିକି ସଉକିର ଘରର ଅବସ୍ଥା – ସବୁଦିନେ ବାସିଓଳିକି ଦାନ ନ ଥାଏ । ପାଦ ନ ଚଳିଲେ ପେଟ ନ ଚଳେ । ଏଥିଯୋଗୁଁ ସଉକି ଝକ୍‌ମାରି କେତେଜଣ ଗାଁ' ସାଆନ୍ତଙ୍କର ଲୁଗା କେତେଖଣ୍ଡ ଧୋବ କରେ । ସେଇ କେତେଖଣ୍ଡ ଲୁଗା ପୁଣି ବାବୁ ବୋହି ପାରିବେ ନାହିଁ ବୋଲି ଗୋଟେ ଗଧ ପୋଷିଥା'ନ୍ତି । ସଉକି ଲୁଗା ଦବାନବା ପାଇଁ ବାହାରିଲେ ସେଇ ଗଧରେ ଚଢ଼ି ବାହାରେ । କେବଳ ତା'ର ଭାର୍ଯ୍ୟାଟି ଉତ୍ତମ ଲୋକ ବୋଲି ତା'ର ଘର କୌଣସି ପ୍ରକାରେ ଚଳିଯାଏ, ନ ହେଲେ କେତେଦିନୁଁ ବାବୁଙ୍କ ହାଡ଼ ଗୋହିରିରେ ପଡ଼ନ୍ତାଣି ।

ଏଇପରି କେତେଦିନ ଯିବା ପରେ ଥରେ ଗୋଟେ ବଡ଼ ଝଡ଼ି ହେଲା । କେହି କୁଆଡ଼େ ବାହାରି ପାରିଲେ ନାହିଁ । ଇମିତି ତେରଦିନ କାଳ ବତାସ ବଡ଼ ଦୁର୍ନୟ କଲା । ସଉକିକୁ ଆଉ ପଇସାପତ୍ର ନ ମିଳେ । ଏତିକିବେଳେ ସଉକିର ପିଲାକବିଲା ଦିନଦିନ ଖାଡ଼ା ଉପାସରେ ପାଟୁ ପାଟୁ ହୋଇଗଲେ । ମେଘ ଟିକିଏ ଥମିବାରୁ ଧୋବଣୀ କହିଲା – ହୟେ,

ପିଲାଗୁଡ଼ାକ ତ ତିନି ତିନି ଦିନ ଉପାସ ରହିଲେଣି, ଆଉ ଚାହିଁଲେ କ'ଣ ହେବ ? ଘରେ ଯେଉଁ ଛେଳିଟି ଅଛି, ତାକୁ ନେଇ ହାଟରେ ବିକ, ତେବେ ପିଲେ ପାଞ୍ଚ ସାତ ଦିନ ହେଲେ ଢ଼ୋକ ପାଣି କରିବେ ।

ସଉକି ଏହା ଶୁଣି କହିଲା – ଖାଲି କ'ଣ କହିଦେବା କଥା ହେଇଛି କି ? ହାଟ କ'ଣ ପାଖର ବାଟ ହେଇଚି ଯେ ଧାଇଁ ଯାଇ ଛେଳିଟା ବିକିଦେଇ ଆସିବି । ଟିକିଏ ନୁହେଁ କି ନିଖିଏ ନୁହେଁ, ତିନିକୋଶ ବାଟ । ଏତେବାଟ ଯିବା କ'ଣ ସହଜ କଥା ? ଧୋବଣୀ କହିଲା – ତେବେ କ'ଣ ପିଲାଏ ମରିବେ ? ସଉକି ତଳକୁ ଉପରକୁ ଚାହିଁଲା, ଭାବିଲା – ସତେ, ଏକାମ ନ କଲେ ପିଲେ ନିଶ୍ଚେ ମରିବେ । ପଛକୁ ବାଧ ହୋଇ କହିଲା – ହଉ ଯିବି । ଯିବି ଯେ ସକାଳୁ ଗଣ୍ଡେ କ'ଣ ଖାଇଲେ ତ ଯିବି ? ଗଣ୍ଡେ କ'ଣ ଖାଇବାକୁ କରିଦବୁ, ବାଟକୁ ପାନଗୁଆ ଟିକିଏ ଆଣିଦବୁ ତେବେ ଯାଇ ଯିବି । ଧୋବଣୀ କହିଲା – ହଉ, ମୁଁ ଯା ଯିମିତି ସିମିତି କରିଦେବି । ସଉକି ଦେଖିଲା ନିଶ୍ଚେ ହାଟକୁ ଯିବାକୁ ପଡ଼ିଲାଣି, ତେବେ କିମିତି ଯିବି ? ରାତିଯାକ ତାକୁ ଏଇ ଚିନ୍ତା ଘାଣ୍ଟିଲା । ରାତି ପାହିଲା, ସଉକି ହାଟକୁ ଯିବ ବୋଲି ସହଳ ସହଳ ଉଠି ଆଗ ଗାଧୁଆ ପାଧୁଆଟେ କରି ପକାଇଲା । ତା'ପରେ ଜଳଖିଆ ଗଣ୍ଡେ ଖାଇ ପାନତକ ସଜାଡ଼ିଲା । ଭାବିଲା, ଏ ସବୁ ହେଲା ଏବେ ଯିବି କିମିତି ? ଗଧରେ ନ ଗଲେ ତ ଚାଲି ଚାଲି ଯାଇପାରିବି ନାହିଁ । ପୁଣି ମୁଁ ଗଧରେ ଗଲେ ଛେଳିଟା ବା କିମିତି ଯିବ ? ଏଇପରି ଅନେକ ଭାବି ଭାବି ପଛକୁ ଗୋଟେ ବୁଦ୍ଧି ପାଇଲା । ଭାବି ଠିକ୍ କଲା – ଛେଳିକି ଗଧ ଲାଞ୍ଜରେ ବାନ୍ଧିଦେଇ ଛେଳି ବେକରେ ଗୋଟେ ଘଣ୍ଟି ବାନ୍ଧିଦେଲେ ଗଧ ଚାଲିଲେ ତ ଛେଳି ନିଶ୍ଚେ ଚାଲିବ, ଛେଳି ଚାଲିଲେ ତ ଘଣ୍ଟି ନିଶ୍ଚେ ବାଜିବ । ସେହି ଘଣ୍ଟି ବାଜୁଥିବାଯାଏ ସାଙ୍ଗରେ ଛେଳି ଆସୁଥିବା କଥା ମୁଁ ଜାଣି ପାରୁଥିବି । ଏଇ ବୁଦ୍ଧି ପାଞ୍ଚି ଛେଳି ବେକରେ ଘଣ୍ଟି ବାନ୍ଧି ଛେଳିକି ଗଧ ଲାଞ୍ଜରେ ବାନ୍ଧିଦେଲା । ତା' ପରେ ଖିଲପାନ ଚଢ଼ାଇ ବାକି ପାନତକ ପାଛୁଡ଼ା କାନିରେ ବାନ୍ଧିଦେଇ ପାଛୁଡ଼ାକୁ କୁଞ୍ଚି କାଞ୍ଚି, ମୁଣ୍ଡରେ ଠେକାଟେ ଭିଡ଼ିଦେଇ ସଉକି ଗଧରେ ଚଢ଼ି ଛେଳି ବିକି ବାହାରିଲା । ଗଧ ଯିମିତି ଚାଲେ, ତାହା ତ ସମସ୍ତଙ୍କୁ ଜଣା । ଗଧ

ପାଦ ଗଣି ଗଣି ଚାଲିଥାଏ, ଛେଳିର ଘଣ୍ଟି ଟଣ୍ ଟଣ୍ ବାଜୁଥାଏ, ସଉକି ପାନ ଚୋବାଇ ଚୋବାଇ ଗଧ ଚଲାଉଥାଏ ।

ଏଥିମଧ୍ୟରେ ବାଟରେ ଚାରିଜଣ ଠକ ସଙ୍ଗାତ ଇମିତି ବେଶରେ ସଉକିକି ଆସିବାର ଦେଖି ପାଞ୍ଚିଲେ – ଭାଇ ! ଏ ଛେଳିଟାକୁ କିମିତି ମାରି ନିଅନ୍ତେଇଁ ? ଜଣେ ଠକ କହିଲା – ଆଚ୍ଛା, ଛେଳି କଥା ମତେ ଲାଗିଲା । ଆଉ ଜଣେ ଠକ କହିଲା – ମୁଁ ଗଧଟାକୁ ମାରିନେବି । ଆଉ ଜଣେ କହିଲା, ମୁଁ ଏହା ଦେହରୁ ସବୁ ଲୁଗାପଟାତକ ମାରିନେବି । ଚତୁର୍ଥ ଜଣକ କହିଲା – ସମସ୍ତେ ତ ସବୁ ନେଲ; ମୋ ପାଇଁ ତ କିଛି ନାହିଁ, ମୁଁ ତେବେ ୟା ଘରୁ କିଛି ଲୁଗାପଟା ମାରିଆଣିବି । ଚାରି ଠକ ଏହିପରି ପଣ କରି ଯେଝାମତେ ଯେଝା ବାଟ ଧଇଲେ ।

ପ୍ରଥମ ଠକ ଖଣ୍ଡେ ବାଟ ଆଗକୁ ଯାଇ ଗୋଟେ ଲଟିରେ ଲୁଚି ରହିଲା । ସଉକି ଯିମିତି ତାକୁ ପାରି ହୋଇଗଲା, ସେ ସିମିତି ପଛେ ପଛେ ଯାଇ ଆଗ ଛେଳି ବେକରୁ ଘଣ୍ଟି ଫିଟାଇ ଗଧ ଲାଞ୍ଜରେ ବାନ୍ଧିଦେଲା, ତା'ପରେ ଛେଳିଟି ଫିଟାଇ ଘେନି ଚମ୍ପଟ । ସଉକି ତ ଗଧକୁ ପାହାରେ ପାହାରେ ଲଗାଉଚି, ଗଧ ଲାଙ୍ଗୁଡ଼ରେ ଠକ ବାନ୍ଧି ଦେଉଥିବା ଘଣ୍ଟି ତ ବାଜୁଛି, ଆଉ ସଉକିର କାହିଁକି ସନ୍ଦେହ ହେବ ? ଘଣ୍ଟି ନ ବାଜୁଥିଲେ ସିନା ସଉକି ପଛକୁ ଚାହାନ୍ତା; ଘଣ୍ଟି ତ ବାଜୁଛି, ଆଉ ପଛକୁ ଚାହିଁବ କାହିଁକି ? ଏହିପରି କେତେବାଟ ଯିବାପରେ ସଉକିକି ପରିସ୍ରା ତଲବ ଦେଲା । ସେ ଗଧରୁ ଓହ୍ଲାଇ ଦେଖେ ତ ଛେଳି ନାହିଁ । ସେ ଆଉ ପରିସ୍ରା କରିବ କ'ଣ, ସେହିଠାରେ ବସି କାନ୍ଦିଲା ।

ସଉକି ବସି କାନ୍ଦୁଥାଏ, ଏଥିମଧ୍ୟରେ ଦ୍ୱିତୀୟ ଠକ ଭଦ୍ରଲୋକ ଭଳି ପଛରୁ ଆସି ପହଞ୍ଚିଗଲା । କିଛି ନ ଜାଣିବା ପରି ପଚାରିଲା, କିରେ ବାୟା କାହିଁକି କାନ୍ଦୁଛୁ ? ସଉକି କାନ୍ଦି କାନ୍ଦି ଛେଳିକି ଯିମିତି ଆଣିଥିଲା, ଯହିଁପାଇଁ ଆଣିଥିଲା, ସେସବୁ କଥା କହିଲା । ଠକ ମିଛରେ ବଡ଼ ବ୍ୟସ୍ତ ହେଲା । ତା'ପରେ କହିଲା – ମୁଁ ଆସୁ ଆସୁ ବାଟରେ ଦେଖିଲି ଗୋଟେ ଲୋକ ଗୋଟେ କାଇଁଚିଆ ଛେଳି ଭିଡ଼ି ନେଉଛି । ସେ ଛେଳି ତୋର ନୁହେଁ ତ ?

ସଉକି କହିଲା – ହଁ ହଁ, ମୋର ତ ସେଇ କାଇଁଚିଆ ଛେଳିଟା । ତୁମେ ତାକୁ କେଉଁଠି ଦେଖିଲ ?

ଠକ କହିଲା – ସେ ବାଟ ଦି କୋଶ ଚାଲିଯିବଣି । ଓଃ, ସେ ଚାଣ୍ଡାଳ କ'ଣ କଲା ? ତାକୁ ଚୋରି କରିବାକୁ ଆଉ ପାତ୍ର ମିଳିଲା ନାହିଁ ଯେ ଏଇ ଗରିବର ଛେଳିଟା ଘେନିଗଲା । ଆଚ୍ଛା, ତୁ ଆଉ ବ୍ୟସ୍ତ ହୋନା, ତାକୁ ଯିମିତି ସିମିତି ଧରିବା । ଏହା ଶୁଣି ସଉକିର ଟିକିଏ ଦମ୍ଭ ଆସିଲା । ସଉକି କହିଲା – ଭଲା ମୋ ପାଇଁ ଟିକିଏ ପରିଶ୍ରମ କର । ଠକ କହିଲା – ଆରେ ପର ଲାଗି ତ ଏ ଦେହ ଗଢ଼ା, ତୁ ଆଉ କହିବୁ କ'ଣ ମୁଁ ତ ମନକୁ ଯାଇଥା'ନ୍ତି । ଆଚ୍ଛା, ହଉ ହଉ ତୁ ଏହିଠାରେ ବସିଥା; ମୁଁ ତାକୁ ଆଖି ପିଛୁଳାକେ ଧରି ଆଣୁଚି । ଏହା କହି ଦ୍ୱିତୀୟ ଠକ ଗଧରେ ଚଢ଼ି ଛେଳି ଖୋଜି ବାହାରିଲା । ଗଲା ଯେ ଗଲା ଆଉ ଫେରିଲା ନାହିଁ । ସଉକି ବସି ବସି ଚାହିଁ ଚାହିଁ ପଛକୁ ଗଧ ଖୋଜିବାକୁ ବାହାରିଲା ।

ସଉକି ଠକକୁ ଖୋଜୁ ଖୋଜୁ ଆଉ ଗୋଟେ ଠକକୁ ଦେଖିଲା । ସେ ଠକ ଗୋଟେ କୂଅ ଉପରେ ବସି କାନ୍ଦୁଛି । ସଉକି କୂଅ ପାଖେ ପହଞ୍ଚି ତାକୁ ପଚାରିଲା କିରେ ଭାଇ । ତୁ କିଆଁ କାନ୍ଦୁଛୁ ? ଠକ କହିଲା – ଭାଇ କ'ଣ କହିବି ? ମୋ କପାଳ ଫାଟିଛି । ଜମିଦାର ସା'ନ୍ତଙ୍କର ହଜାରେ ଟଙ୍କାର ଥଳିଟିଏ ଧରି ଆସୁଥିଲି, ଏ କୂଅଟା ଦେଖି ଏଥିରେ କେତେ ପାଣି ଅଛି ବୋଲି ଚାହିଁଦେଲା ବେଳକୁ ଥଳିଟି କାନ୍ଧରୁ କୂଅ ଭିତରେ ପଡ଼ିଗଲା । ଆଜି ଖଜଣା ଦାଖଲ ତାରିଖ । କଚେରିରେ ସେ ଟଙ୍କା ଦାଖଲ ହୋଇଥା'ନ୍ତା । ଏତେ ଟଙ୍କା କୂଅ ଭିତରେ ପଡ଼ିଲା । ମୁଁ କ'ଣ କରିବି ? ଟଙ୍କା ଦାଖଲ ନ ହେଲେ ଜମିଦାର ମୋ ବଂଶବର୍ଗ ମାରିଦେବ । ମୁଁ ହେଲେ କୂଅରେ ବୁଡ଼ି ଜାଣିଥା'ନ୍ତି, ତେବେ ଅବା ବୁଡ଼ି ଖୋଜିଥା'ନ୍ତି । କିଏ ଯେବେ ଥଳିଟି କାଢ଼ି ଦିଅନ୍ତା; ତେବେ ତାକୁ ଶହେ ଟଙ୍କା ଦିଅନ୍ତି । ଭାଇ ! ତତେ କୂଅରେ ବୁଡ଼ିଆସେ କି ?

ସଉକି ଶହେ ଟଙ୍କା ଲୋଭରେ ଖୁସି ହୋଇ କହିଲା – ଭାଇ, ମୋ ପାଖରେ ତ ଗାମୁଛା ନାହିଁ, କ'ଣ ପିନ୍ଧି ବୁଡ଼ିବି ? ନ ହେଲେ ଏକା

ବୁଢ଼ାକେ କାଢ଼ିଦିଅନ୍ତି । ଠକ କହିଲା – ମୋର ତ ଏ ଗାମୁଛା ଖଣ୍ଡେ ଅଛି, ତାକୁ ପିନ୍ଧିଲେ ହବ ନାହିଁ ? ସଉକି କହିଲା – ହଁ, ହବନାହିଁ କାହିଁକି ? ତା'ପରେ ଠକ ତା ଚିରା ଗାମୁଛା ଖଣ୍ଡ ତାକୁ ବଢ଼ାଇଦବାରେ ସେ ସେଖଣ୍ଡ ପିନ୍ଧି ଲୁଗା ଦି'ଖଣ୍ଡି ଗୁଡ଼େଇ ତୁଡ଼େଇ ପୋଟଳାଟିଏ କରି କୂଅଚାନ୍ଦେନୀରେ ରଖି ଦେଇ କୂଅରେ ପଶି ବୁଡ଼ିଲା । ଏଣେ ଠକ ତା' ଲୁଗା ଦି'ଖଣ୍ଡି କାଖରେ ଜାକି ଚମ୍ପଟ । ସଉକି ଥରକୁ ଥର ଟଙ୍କା ଲୋଭରେ ବୁଡୁଥାଏ । ଟଙ୍କା ଫଙ୍କା କିଛି ପାଇଲା ନାହିଁ । ପଛକୁ ନାକରୁ ସିଂଘାଣି ବାହାରିଲା, ବରଡ଼ାପତ୍ର ପରି ଶୀତରେ ଦିହ ଥରିଲା । ଆଉ କୂଅ ଭିତରେ ସମ୍ଭାଳି ହେଲାନାହିଁ । ଜୀବନ କଲବଲରେ କୂଅ ଭିତରୁ ଉପରକୁ ପଳାଇ ଆସିଲା । ଉପରେ ଆସି ଦେଖେ ତ ସେ ଲୋକ ନାହିଁ କି ଲୁଗା ଦି'ଖଣ୍ଡି ନାହିଁ । ଆଉ ଉପାୟ ନାହିଁ । ଦେଖୁ ଦେଖୁ ତାକୁ ଭୀଷଣ ଜ୍ୱର ହୋଇଗଲା । ବିଚରା ଜ୍ୱରରେ ଶୀତ କମ୍ପ ଯୋଗୁଁ ଥରି ଯାଉଥାଏ । ସେହିଠାରେ ବସି ଇଲୋ ମାଆଲୋ ହେଉଥାଏ, ଆଉ ଉପାୟ ନାହିଁ ।

କିଛି ସମୟପରେ ଚତୁର୍ଥ ଠକ ସେଠାରେ ଆସି ପହଞ୍ଚିଲା । ସେ ସଉକିକି ପଚାରିଲା – କିରେ ବାପା । ତୁ କିଏ ? ଏଠାରେ ଇମିତି ଅବସ୍ଥାରେ କାହିଁକି ପଡ଼ିଛୁ ? ସଉକି ଅତି କଷ୍ଟରେ ସବୁକଥା ତା' ଆଗେ କହିଲା । ଠକ ସବୁ ଶୁଣିଯାଇ ମିଛରେ ବଡ଼ ଦୁଃଖ କରି କହିଲା – ହଉ; ସେ ଯାହା ତ ହେଲା ହେଲା । ତୁ ଥିଲେ ପୁଣି କେତେ ଜିନିଷ ମିଳିବ । ଏବେ ଜୀବନ କିମିତି ରହିବ ଆଗ ତା'ର ବିଚାର କର । ତେବେ ମୋ ସଙ୍ଗେ ଗୋଟିଏ ଗୋଟିଏ ଚାଲ, ମୁଁ ତୋ ଘରେ ତୋତେ ଛାଡ଼ିଦେଇ ଆସିବି । ସଉକି କହିଲା – ମୁଁ କିମିତି ଯିବି ? ଶୀତରେ ତ ମୋ ଦେହ ଥରୁଛି, ମତେ ଶୁଖିଲା ଲୁଗା ଖଣ୍ଡେ ଦିଅନ୍ତ କି, ମୁଁ ଘୋଡ଼େଇ ହୋଇ ଟିକିଏ ଦମ୍ଭ ପାଇଲେ ତୁମ୍ଭ ସାଙ୍ଗେ ଅବା ଗୋଟିଏ ଗୋଟିଏ ଯା'ନ୍ତି । ଠକ କହିଲା – ଆରେ ଭାଇ । ମୋ ପାଖରେ ଲୁଗା ଥିଲେ ତୁ କହିବାଯାଏ ଯାଆନ୍ତା ? ମୋ ପାଖରେ ତ ଲୁଗା ନାହିଁ, କ'ଣ କରିବା ? ମୋ ଘର ହେଲେ ପାଖ ହୋଇଥା'ନ୍ତା, ତେବେ ଅବା ଘରକୁ ଯାଇ ଘରୁ ଦି'ଖଣ୍ଡି ଖଣ୍ଡେ ଲୁଗା ଆଣି ଦିଅନ୍ତି । ତା' ମଧ୍ୟ ନୁହେଁ । ସଉକି କହିଲା – ନାହିଁ,

ନାହିଁ; ତୁମ ଘର ବହୁତ ବାଟ ସେକଥା ହୋଇପାରିବ ନାହିଁ । ମୋ ଘର ଅଳ୍ପବାଟ, ଯେବେ ଦୟାକରି ମୋ ଭାର୍ଯ୍ୟା ପାଖରୁ ଲୁଗା ଦି'ଖଣ୍ଡ ଖଣ୍ଡେ ଆଣିପାରନ୍ତ, ତେବେ ଜୀବନଟା ରହିଯାଆନ୍ତା । ଠକ ତ ସେଇକଥା ଖୋଜୁଥିଲା; ସଉକି ତ ତାହା କହିଦେଲା । ତେଣୁ ସେ କହିଲା – ଏପରି କ'ଣ ହୁଏନାହିଁ ? କାହାର ସମୟ ଅସମୟ ନାହିଁ ? ମଣିଷକୁ ମଣିଷ ଆଶ୍ରା, ଯିବିନାହିଁ କିଆଁ ? ତେବେ ତୁମ ଭାର୍ଯ୍ୟା ମୋତେ ବିଶ୍ୱାସ କଲେ ତ ?

ସଉକି କହିଲା – ତୁମେ ମୋର ଏ ଡେଉଁରିଆ ମାଳାଟା ମୋ ହାତରୁ ଫିଟାଇ ନେଇ ତାକୁ ଦେଖାଇଲେ ତା'ର ବିଶ୍ୱାସ ହେବ । ଠକ କହିଲା – ତେବେ ଦେ, ମୁଁ ଯାଏ । ସଉକି ଡେଉଁରିଆ ମାଳାଟି ଠକକୁ ଦେବାରେ ଠକ ସେତକ ହାତରେ ପକାଇ ସଉକି ଘରକୁ ଗଲା । ସେଠାରେ ପହଞ୍ଚି ଡେଉଁରିଆ ଦେଖାଇ ଲୁଗାପଟା କରି ପାଞ୍ଚ ସାତଖଣ୍ଡ ଧରି ଚମ୍ପଟ କଲା । ତେଣେ ସଉକି ଶୀତରେ ଥରି ଥରି ଚାହିଁ ଚାହିଁ ବସି ବସି ପଛକୁ ନିରାଶ ହୋଇ ଘୁଷୁରି ଘୁଷୁରି ରାତି ପହରକୁ ଘରେ ପହଞ୍ଚିଲା । ତା' ଭାର୍ଯ୍ୟା ସଉକିର ସବୁ ଦୁର୍ଦ୍ଦଶା ଶୁଣି ବୁହେ କୋଡ଼ିକଚାଡ଼ି ହୋଇ କାନ୍ଦି ବୋବାଇ କପାଳ ଆଦରି ରହିଲା । ସେହିଦିନଠାରୁ ସଉକିର ସବୁ ସଉକି ଭାଙ୍ଗିଗଲା । ତେଣେ ଚାରି ଠକ ଏକାଠି ହୋଇ ନିଜ ବଡ଼ପଣିଆ କହିହେଲେ । ତା'ପରେ ଛେଳିଟି ମାରି ଘମାଘୋଟ ମଉଜ କରି ସେ ଦିନକର କାମ ତୁଟାଇଦେଲେ । ସଂସାରର ହାଲ ଏହିପରି ।

# ସୁନା ଗଛ

କଡ଼ାକଡ଼ ରାଜ୍ୟରେ ଧଡ଼ାଧଡ଼ ସିଂହ ବୋଲି ଜଣେ ରଜା ଥିଲେ । ରଜାଙ୍କୁ ଚାହିଁ ମଧ୍ୟ ପାତ୍ର ମନ୍ତ୍ରୀ ସବୁ ଜୁଟିଥା'ନ୍ତି । ପ୍ରକୃତରେ ଧଡ଼ାଧଡ଼ ସିଂହ ରାଜକାର୍ଯ୍ୟ ସବୁ ଧଡ଼ାଧଡ଼ ଛିଣ୍ଡାଇ ଦିଅନ୍ତି । ଏଇଥିଯୋଗୁଁ କଡ଼ାକଡ଼ ରାଜ୍ୟରେ ଚୋରି, ଡକାୟତି କିଛି ଲୁଚି ରହେନାହିଁ । ସେ ରାଜ୍ୟରେ ଚାଇଁଙ୍କୁଳି ବୋଲି ଗୋଟେ ଭଣ୍ଡାରି ଥିଲା । ସେ ଲୋକଟା ଯିମିତି ବୁଦ୍ଧିଆ, ସିମିତି ବାହାପିଆ । ସେ ଆଗ ରଜାଘରେ ଖଟଣିସେବକ ଚାକିରି କରୁଥିଲା । ହେଲେ କ'ଣ ହେବ, ଧଡ଼ାଧଡ଼ ସିଂହ ଭଳିଆ ରଜା ପାଖରେ ଏଭଳି ଫିସାଦିଆ କେତେ ଦିନ ରହିପାରିବ ? ତା'ରି ଫିସାଦ ଯୋଗୁଁ ରଜା ତାକୁ ଚାକିରିରୁ ବାହାର କରିଦେଲେ । ଚାଇଁ ଏଥିରେ ନିଜ ଦୋଷ ନ ବୁଝି ରଜାଙ୍କ ଉପରେ ରାଗ ରଖିଲା । ସାମାନ୍ୟ ଭଣ୍ଡାରିଟେ ଅବା ରଜାଙ୍କର କ'ଣ କରିପାରିବ ? ସେ ଆଉ କିଛି ବାଟ ନ ପାଇ ଖାଲି ଚୋରି ଡକାୟତି କରିବାରେ ଲାଗିଲା । କେତେ ଥର ମଧ୍ୟ ଚୋରି କଲା; କିନ୍ତୁ ଚାଇଁ ବଡ଼ ଚାଯାଁ । ତାକୁ କେହି ଧରିପାରନ୍ତି ନାହିଁ । ସେ ନିଜ ପେଟ ପୋଷିବାକୁ ଚୋରି କରେ, ତା' ମଧ୍ୟ ନୁହେଁ, ସେ ଯାହା ଚୋରାଇଥାଏ ତାହା ସବୁ ଦୁଃଖୀରଙ୍କୀମାନଙ୍କୁ ବାଣ୍ଟିଦିଏ । ତା'ର ତ ମନ ଖାଲି ରଜାଙ୍କୁ ହଇରାଣ କରିବା, ସେ କାହିଁକି ଅନ୍ୟ କଥା କରନ୍ତା ? ରାଜ୍ୟରେ ଏହିପରି ଅନେକ ଚୋରି ହେଲା । କେହି ଚାଇଁକି ଧରି ନ ପାରିବାରୁ ରଜା ବଡ଼ ବ୍ୟସ୍ତ ହେଲେ । ତାଙ୍କ ପୁଲିସ ପହରାବାଲାଙ୍କ ଉପରେ ଭାରି ରାଗି କଡ଼ା ହୁକୁମ ଦେଲେ ।

ଜଗୁଆଳମାନେ ଜାଣିଲେ – ଏଣିକି ଚୋରକୁ ଧରି ନ ପାରିଲେ ଚାକିରି ଖଣ୍ଡିମାନ ତ ଯିବ, ତା'ଛଡ଼ା ଆଉରି କିଛି ଅଧିକ ଦଣ୍ଡ ହେବ । ଏହି ଭୟରେ ପୁଲିସ ପହରାବାଲାମାନେ ନ ଖାଇ ନ ପିଇ ରାତି ଅନିଦ୍ରା ହୋଇ ଯେଝା ଖଞ୍ଜରେ ଚୋରକୁ ଜଗିଲେ, ଖାସ୍ ଏତେ ଲୋକ ଯହୁଁ ଜଗିଲେ, ଚାଇଁ ଆଉ ଯାଏ କୁଆଡ଼େ ? ଧରାହୋଇ ରାଜାଙ୍କ ଛାମୁକୁ ଅଇଲା । ଅସାଧ ଚୋର ଧରାପଡ଼ିବାର ଖବର ପାଇ ରଜା ସବୁ କାମ ଛାଡ଼ିଦେଇ ଆଗ ତା'ରି ମୋକଦ୍ଦମା ବିଚାର କରିବସିଲେ । ବିଚାର ବେଳକୁ ଖର୍ବ ପ୍ରମାଣ ଲୋକ ଜମା ହୋଇଥା'ନ୍ତି । ଚାଇଁକି ହାତକଡ଼ି ପକାଇ ରଜାଙ୍କ ଆଗରେ ଠିଆ କରିବାରୁ ରଜା ପଚାରିଲେ – କିରେ ! ଏ ମାଲ ତୁଇ ଚୋରି କରିଚୁ ତ ? ଚାଇଁ କହିଲା – ଧର୍ମାବତାର ! ଧରା ପଡ଼ିଲିଣି ଯେତେବେଳେ ଆଉ ନ ମାନିବି କାହିଁକି ? ଆଚ୍ଛା, ତୋ'ର ଚୋରି କରିବାର କାରଣ କ'ଣ ? ଚାଇଁ କହିଲା – ମୁଁ ଯେ ଚୋରି କରି ପେଟ ପୋଷେ, ତା' ନୁହେଁ । ମୁଁ ଯାହା ଚୋରି କରେ, ସେସବୁ ଦୁଃଖୀରଙ୍କୀଙ୍କୁ ବାଣ୍ଟି ଦିଏ । ରଜା ପୁଣି ପଚାରିଲେ – ଆଚ୍ଛା, ତୁ ଏଇଥରକ ଚୋରି କରିଚୁ ନା, ଆଉ କେତେଥର କରିଛୁ । ଚାଇଁ କହିଲା – ଆଜ୍ଞା ! ଛାମୁଙ୍କ ଚାକିରି ଛାଡ଼ିଲା ଦିନୁଁ ବହୁତ ଚୋରି କରିଛି ।

ରଜା କହିଲେ – ତେବେ ତୁ ଗୁରୁତର ଦୋଷ କରିଛୁ, ଏଥିକି ଶୂଳୀ ଦଣ୍ଡ ଦିଆଯିବ । ଚାଇଁ କହିଲା – ଏଥିକି ଯେବେ ଶୂଳୀ ଦଣ୍ଡ ହେଲା; ତେବେ ହଉ, ମୁଁ ତ ଛାମୁଙ୍କ ହାବୁଡ଼େ ପଡ଼ିଛି, ମୋର ଚାରା କ'ଣ ଅଛି । ତେବେ ମୋର ତ ମରିବା କଥା ଠିକ୍ ହେଲା । ମୁଁ ଛାମୁଙ୍କର ପ୍ରଜା, ଛାମୁଙ୍କ ଅନ୍ନଜଳରେ ବଢ଼ିଛି, ସେଥିପାଇଁ ମରିବା ଆଗରୁ ମୋର ଗୋଟିଏ କଥା ଜଣାଇବାର ଅଛି । ହୁକୁମ ହେଲେ ଜଣାଇବି । ରଜା କହିଲେ – ପରବାୟ ନାହିଁ, ଯାହା ଜଣାଇବୁ ଜଣା । ଚାଇଁ କହିଲା – ସେ ଆଉ କିଛି ନୁହେଁ, ମୁଁ ଗୋଟିଏ ବିଦ୍ୟା ଜାଣିଥିଲି, ମୁଁ ମରିବାରେ ସେ ବିଦ୍ୟା ବୁଡ଼ିଯିବ । କାହାକୁ ହେଲେ ଶିଖାଇ ଦେଇ ଯାଇଥା'ନ୍ତି । ରଜା କହିଲେ – ସେ କି ବିଦ୍ୟା । ଚାଇଁ କହିଲା – ମୁଁ ସୁନାଗଛ କରି ଜାଣେ । ସେ ସୁନାଗଛରେ ସୁନା ଫଳେ । ଜଣେ ସିଦ୍ଧ ପୁରୁଷକୁ ବହୁତ ସେବା କରି

ମୁଁ ସେ ବିଦ୍ୟା ଶିଖିଛି । ରଜା ମନ୍ତ୍ରୀ ସମସ୍ତେ ଏ ଆଶ୍ଚର୍ଯ୍ୟ କଥା ଶୁଣି କାବା ହେଲେ ।

ରଜା କହିଲେ – କେତେ ଦିନରେ ସେ ଗଛ ହେବ । ସେ କହିଲା – ଆଜ୍ଞା । ଗୋଟିଏ ଦିନରେ । ରଜା କହିଲେ – ତେବେ କାଲି ଦିନକ ତୋର ଶୂଳୀ ବନ୍ଦ ରହିଲା; ସୁନାଗଛ କରି ସାରିଲେ ଶୂଳୀ ଦିଆଯିବ । ଚାଇଁ କହିଲା – ଆଜି ତ ହେବନାହିଁ, କାଲି ଭଲ ବାର ଅଛି ହେବ । ତେବେ ସେଥିପାଇଁ କେତେଗୁଡ଼ିଏ ବିଧିବିଧାନ ଦରକାର – ବେଶି କିଛି ନୁହେଁ, ଟିକିଏ ଜୟପୁରୀ ସୁନା, ପୂଜା ପାଇଁ ସାମାନ୍ୟ ଫୁଲଚନ୍ଦନ ଆଉ ଭୋଗ କିଛି । ରଜା କହିଲେ – ଏଇ କଥା ତ । ହଉ ସବୁ ଦିଆଯିବ । ତୁ ଆମରି ଆଗରେ କାଲି ସୁନାଗଛ କରି ଦେଖାଇବୁ ।

ଚାଇଁ ହୁଁ ଭରିଲା । ସେଦିନ ରାତିଟି ସେ ହାଜତରେ ରହିଲା । ତା' ଆରଦିନ ସକାଳୁ ଚାଇଁକି ଅଣାଗଲା । ସୁନାଗଛ ଦେଖିବାକୁ ବହୁତ ଲୋକ ଜମା ହେଲେ । ଚାଇଁ ଫୁଲଚନ୍ଦନ ଭୋଗ ଦେଇ ନାକ କାନ ଛୁଇଁ ତାଳିମାରି ଆଗ ଘଣ୍ଟେ ଖଣ୍ଡେ ସେ ସୁନାକୁ ପୂଜା କଲା । ତା'ପରେ କିଛି ମାଟି ଆଣି ଜମା କଲା । ସେ ମାଟି ଚାରିପାଖେ ଅଢ଼େଇ ଘେରା ପ୍ରଦକ୍ଷିଣ କଲା । ତା'ପରେ ରଜାଙ୍କୁ କହିଲା – ଆଜ୍ଞା; ମୋ କାମ ସରିଲା; ଏବେ ସୁନା ପୋତିବାର କଥା । ମୁଁ ବହୁତ ଚୋରି କରିଛି, ମୁଁ ପୋତିଲେ ମୋଟେ ଗଛ ହେବନାହିଁ । ଏଣୁକରି ଯେଉଁ ଜଣକ ଜମା ଚୋରି କରିନାହିଁ; ସେହି ଲୋକ ପୋତିଲେ ସୁନାଗଛ ହେବ । ଏମିତି ଜଣେ କାହାକୁ ବାଛି ଦିଅନ୍ତୁ । ରଜା ଏହା ଶୁଣି ଜଣେ ପାଇକକୁ କହିଲେ – ଆରେ ହେ ! ତୁ ଯେ ସୁନାଟିକ ପୋତି ଦେଲୁ । ପାଇକ କହିଲା – ଚୋର ତ ସୁନା ପୋତିଲେ ଗଛ ହେବନାହିଁ, ତେବେ ମୁଁ କାହିଁକି ଏ ସାହସ କରିବି । ତହୁଁ ସେ ରଜାଙ୍କୁ କହିଲା – ଆଜ୍ଞା । ମୁଁ ପେଟ ବିକଳରେ ବହୁତ ଥର କଦଳୀ, ନଡ଼ିଆ ଚୋରି କରିଛି । ରଜା ତହୁଁ ପାଇକ ସର୍ଦ୍ଦାରକୁ କହିବାରୁ ସେ କହିଲା ଆଜ୍ଞା ମୋ ହାତରେ ହବ ନାହିଁ । ମୁଁ ଲୋଭରେ ପଡ଼ି ଦୁଇ ଚାରି ଥର ରାତିରେ ଛାମୁଙ୍କ ବେଣ୍ଟପୋଖରୀରୁ ମାଛ ମାରିନେଇଛି । ସେ ମନା କରିବାରୁ ରଜା ପାତ୍ରଙ୍କୁ କହିଲେ ।

ପାତ୍ରେ କହିଲେ – ଏହା ମୋ ଦେହିତି ହୋଇପାରିବ ନାହିଁ । ମୋ ହାତରେ ଛାମୁଙ୍କର ସମସ୍ତ ବେଭାରପତ୍ର । ମଣିଷ ଏବେ କେତେ ନିର୍ମାୟା ହୋଇ ରହିପାରେ ? ମୁଁ ସେହି ମାୟାରେ ପଡ଼ି ଛାମୁଙ୍କ ଗନ୍ତାଘରୁ ଥରେ ଯୋଡ଼ିଏ ପାଟଖଦି ଚୋରି କରିଛି । ତା'ପରେ ମନ୍ତ୍ରୀଙ୍କି କୁହାଯିବାରେ ମନ୍ତ୍ରୀ କହିଲେ – ମୋ କଥା ସମସ୍ତଙ୍କୁ ବଳକା । କିଏ ସିନା ବଳ ପାଇଲେ ଚୋରି କରନ୍ତି, ମୁଁ ପିଲାଦିନରୁ ଚୋର । ଖର୍ଚ୍ଚ କରିବାକୁ ବାପା ପଇସା ନ ଦେଲେ ମୁଁ ବେଳକାଳ ଉଣ୍ଡି ତାଙ୍କ ବାକ୍ସ ଫିଟାଇ ବହୁତ ବାର ଟଙ୍କା ଚୋରି କରିଛି । ରଜା ଏବେ କାହାକୁ କହିବେ ? ମନ୍ତ୍ରୀ କହିଲେ – ଆଉ କାହାକୁ କହିବା ଦରକାର ନାହିଁ, ସମସ୍ତଙ୍କ କଥା ଏହିପରି । ଛାମୁଙ୍କ ଛଡ଼ା ଆଉ କାହାରି ହାତରେ ସୁନାଗଛ ହୋଇପାରିବ ନାହିଁ । ଛାମୁ ନିଜେ ସେ ସୁନାଟିକ ପୋତି ଦିଅନ୍ତୁ ।

ଲୋକେ ଭର୍ତ୍ତିହୋଇ ଏସବୁ ଦେଖୁଥା'ନ୍ତି । ରଜା ଦେଖିଲେ ଯେ ଶେଷକୁ ତାଙ୍କରି ଉପରେ ପଡ଼ିଲା । ଏଠାରେ ସତକଥା ନ କହିଲେ ତ ନ ଚଳେ । ତହୁଁ ରଜା କହିଲେ – ମନ୍ତ୍ରୀ ! ମୋ କଥା ହୋଇପାରିବ ନାହିଁ । ମୁଁ ପିଲାଦିନେ ମାମାଙ୍କ ବାକ୍ସରୁ ବହୁ ବାର ବହୁତ ଟଙ୍କା ନେଇଛି ? ମନ୍ତ୍ରୀ କହିଲେ – ତେବେ କ'ଣ ହେବ ? ରଜା କହିଲେ – ତେବେ ଏଠାରେ ଯେତେ ଲୋକ ଠିଆ ହୋଇଛନ୍ତି, ସେମାନଙ୍କ ମଧ୍ୟରୁ ଯେ ଚୋରି କରି ନ ଥିବ, ସେ ପୋତୁ, ଆମେ ତାକୁ ପୁରସ୍କାର ଦବୁ । ପଛକୁ ଗୋଟି ଗୋଟି ହୋଇ ପଚରାଗଲା, କେହି ମଙ୍ଗିଲେ ନାହିଁ । ରଜା କହିଲେ – ହଇରେ ଚାଇଁ । ସୁନାଗଛ ତ ହୋଇପାରିବ ନାହିଁ । ଚାଇଁ କହିଲା – ମୁଁ ସେୟା ଦେଖି କାବା ହେଉଛି ପରା । ରାଇଜଟାଯାକ ଲୋକଙ୍କୁ ପଚରା ହେଲା, ଜଣେ କେହି ସଚ୍ଚା ବାହାରିଲେ ନାହିଁ, ସମସ୍ତେ ଚୋର – ପାତ୍ର ମନ୍ତ୍ରୀ ସୁଦ୍ଧା ଚୋର । ପଛକୁ ଛାମୁ ମଧ୍ୟ ଭଲଲୋକ ନୁହନ୍ତି, ଚୋର । ଆଉ ମୋର କେଉଁ ଦୋଷଟା ହେଲା ଯେ ମୁଇଁ ପାଇବି ଶୂଳୀ ? ଯେ କ'ଣ ନ୍ୟାୟ ବୁଝାମଣା ? ଯେବେ ଏ ଦୋଷରେ ଶୂଳୀ ପାଇବାର କଥା, ତେବେ ସମସ୍ତେ ପାଆନ୍ତୁ, ଖାଲି ମୁଁ କିଆଁ ଶୂଳୀ ପାଇବି ?

ରଜା ଚାଇଁର ଏକଥା ଶୁଣି ଭାବିଲେ – ସତକଥା; ନା, ଏହା କଲେ ଅନ୍ୟାୟ ହେବ । ତା'ପରେ କହିଲେ – ଚାଇଁ । ତୁ ବଡ଼ ବୁଦ୍ଧିଆ, ତୋ ବୁଦ୍ଧିରେ ଆମେ ସନ୍ତୁଷ୍ଟ ହୋଇ ଛାଡ଼ି ଦେଲୁ । ଆଉ ଆଜିଠାରୁ ତୋତେ ଆମ ଏ ଗଡ଼ର କାର୍ଜୀ ପଦରେ ନିଯୁକ୍ତ କଲୁ ।

ଚାଇଁର ଏ ବୁଦ୍ଧି କି ସମସ୍ତେ ଧନ୍ୟ ଧନ୍ୟ କହି ଘରକୁ ଗଲେ । ଚାଇଁ ମଧ ରଜାଙ୍କୁ ଦଣ୍ଡପ୍ରଣାମ କରି ଘରକୁ ଗଲା । ସେଇଦିନଠାରୁ ଚାଇଁ ବୁଦ୍ଧିରେ କାର୍ଜୀ କାମ ପାଇ ମହାସୁଖରେ ରହିଲା ।

ବୁଦ୍ଧିରେ କ'ଣ ହୋଇ ନ ପାରେ ?

# ସବ୍ କଉପୁନିକା ବାସ୍ତେ

ତରତରା ନଈକୂଳରେ ହରିବୋଲପୁର ବୋଲି ଗୋଟିଏ ଗାଁ' ଥିଲା । ସେ ଗାଁ'ର ଲୋକେ ଜମିବାଡ଼ି, ଟଙ୍କା କଉଡ଼ି କରି ମହାସୁଖରେ ଥା'ନ୍ତି । ସେ ଗାଁ'ରେ ଅବୋଧ ପାଣି ବୋଲି ଜଣେ ବ୍ରାହ୍ମଣ ଥିଲା । ଅବୋଧର ବିଷୟ ବାଡ଼ି ବହୁତ । ଘରେ ପୁଅ ଝିଅ, ନାତି ନାତୁଣୀ ହୋଇ ଗାଣ୍ଡେ । ଅବୋଧ ପାଠ ଶାସ୍ତ୍ର କିଛି ପଢ଼ି ନ ଥିଲା । ହେଲେ କ'ଣ ହେବ, ଲୋକ ଭଲ । ଅବୋଧର ତରତରା ନଈକୂଳରେ ଖଣ୍ଡିଏ ଭଲ ବଗିଚା ଥାଏ । ସେ ରାତି ପାହିଲା କ୍ଷଣି ଆଗ ବଗିଚାକୁ ଯାଏ ।

ସେ ଦିନେ ବଗିଚାକୁ ଯାଇଛି, ଦେଖିଲା ଆର ପାରିରେ ଜଣେ ବାବାଜି ନଈ ପାର ହେବାକୁ ଏଣେ ତେଣେ ଚାହୁଁଛନ୍ତି । ଘାଟରେ ଡଙ୍ଗା ନାହିଁ, କି ନାଉରୀ ନାହିଁ । ସେତେବେଳକୁ ନଈ ଭରାଭର ଚାରିପା । ସେଥିରେ ପୁଣି ଏମିତି ସୁଅ ହେଉଛି ଯେ ସାପମୁଣ୍ଡ କଟିଯିବ । ଅବୋଧ ଚାହିଁଥାଏ; ବାବାଜି କିମିତି ପାରିହେବ । ଦେଖୁ ଦେଖୁ ବାବାଜି କଠଉ ମାଡ଼ି ସେହି ବଢ଼ିଲା ନଈରେ ଚାଲି ଆସିଲେ, ସେଥିରେ ଗୋଡ଼ ସୁଦ୍ଧା ଓଦା ହେଲାନାହିଁ । ଅବୋଧ ଏହା ଦେଖି କାବା ହୋଇଗଲା । ବାବାଜି ନଈ ଏ ପାଖରେ ପହଞ୍ଚିବାରୁ ଅବୋଧ ତାଙ୍କ ପାଖକୁ ଯାଇ ଲମ୍ବ ହୋଇ ଗୋଡ଼ତଳେ ପଡ଼ି କହିଲା – ବାବା । ମତେ ଆପଣ ଦୀକ୍ଷା ଦିଅନ୍ତୁ । ଆପଣ ଯାହା କହିବେ; ମୁଁ ତାହା ନିଶ୍ଚୟ ପାଳିବି । ବାବାଜି କହିଲେ – ହେ ଭକ୍ତ । ଯେବେ ତୋ'ର ଦୀକ୍ଷା ନବାର କଥା, ତେବେ ସାଙ୍ଗେ ସାଙ୍ଗେ ଦୀକ୍ଷା ମିଳିବ ନାହିଁ । ଆଉ ଆମେ ଯାହା କହୁଚୁ ତାହା କର, ତା'ପରେ ଦୀକ୍ଷା ଦିଆଯିବ ।

ଅବୋଧ କହିଲା – କ'ଣ କରିବାକୁ ହେବ, କହନ୍ତୁ, ମୁଁ ଅବଶ୍ୟ ତାହା କରିବି । ବାବାଜି ପୁଣି କହିଲେ – ତୁ ତୋ'ର ପିନ୍ଧିବା ଲୁଗା ଚିରି ଦୁଇଖଣ୍ଡି କୌପୁନି କର, ବାକୀ ଲୁଗାପଟା ଫିଙ୍ଗିଦେ । ଆଉ ଘରକୁ ନ ଯାଇ ଏଇଠାରୁ ପୂର୍ବମୁହାଁ ହୋଇ ଯା' । ତିନିଦିନ ତିନିରାତି ପରେ ଯେଉଁଠି ପହଞ୍ଚିବୁ ସେଠାରେ ଆମେ ଫେରିବା ପର୍ଯ୍ୟନ୍ତ ରହିବୁ । ସେତକ ଦିନ ଭିକ

ମାଗି ଏଇ ଦୁଇଖଣ୍ଡ କୌପୁନିରେ ଚଳୁଥିବୁ, ଆମେ ଆସିଲେ ଦୀକ୍ଷା ଦେବୁ । ବାବାଜିଙ୍କ କଥା ଶୁଣି ଅବୋଧ ଦ୍ୱିଧାରେ ପଡ଼ିଲା । ଏଣେ ଘରଲୋକ ଛାଡ଼ିପାରୁ ନ ଥାଏ, ତେଣେ ବାବାଜିଙ୍କ କଥା ଭାଙ୍ଗିପାରୁ ନ ଥାଏ । କିଛି ସମୟ ଏପାଖ ସେପାଖ ହୋଇ ପଛକୁ ବାବାଜିଙ୍କ କଥା କଲା । ଲୁଗା ଚିରି କୌପୁନି ମାରି ପୂର୍ବମୁଖା ହୋଇ ବାହାରିଲା । ବାବାଜି ଅନ୍ୟଆଡ଼େ ଗଲେ । ଅବୋଧ ତିନିଦିନ ତିନିରାତି ଚାଲି ଚାଲି ଲେଉଟପୁର ମୁଣ୍ଡରେ ପହଞ୍ଚିଲା ।

ବାବାଜିଙ୍କ କଥା ଅନୁସାରେ ସେ ସେହିଠାରେ ଗୋଟିଏ ବରଗଛ ମୂଳେ ରହିଲା । ଦିନବେଳା ଏ ଗାଁ' ସେ ଗାଁ' ବୁଲି ଭିକ ପୁଞ୍ଜିଏ ଆଣି ଖିଆପିଆ କରି ସେ ବରଗଛ ମୂଳେ ଥାଏ । ଏମିତି କେତେଦିନ ଯିବାରେ ଲେଉଟପୁର ଗାଁ' ଲୋକେ ଅବୋଧର ନିର୍ମାୟା ଚାଲିଚଳଣି ଦେଖି ଅନେକ ତାକୁ ବଡ଼ ଭକ୍ତି କଲେ । ଲୋକ ତା' ପାଖରେ ଅନେକ ସମୟ ବସନ୍ତି । ହେଲେ କ'ଣ ହେବ; ଅବୋଧ ଯେତିକି ଦରକାର, ସେତିକି ଭିକ ଛଡ଼ା ଆଉ କାହାକୁ କିଛି ମାଗେ ନାହିଁ । ଏମିତି କେତେ ଦିନ ଚାଲିଗଲା । ଲେଉଟପୁର ଗାଁ' ଲୋକେ ତାକୁ ଭାରି ଭଲ ପାଉଥା'ନ୍ତି । ଅବୋଧର କେହି ଶତ୍ରୁ ନ ଥା'ନ୍ତି । ହେଲେ କ'ଣ ହେବ, ଗୋଟେ ମୂଷା ନିତି ତା' ସାଙ୍ଗେ ଲାଗିଲା । ଅବୋଧର ପାଟ, ନା ଶାଲ, ନା ଧାନ, ନା ଚାଉଳ, ନା ଦୁଧ, ନା ଘିଅ, କ'ଣ ଅଛି ଯେ ଖାଇବ ? ହେଇ ହେଇ ସେ ଅଧିକା କୌପୁନି ଖଣ୍ଡ । ଲାଗି ଲାଗି ମୂଷା ସେଇ ଖଣ୍ଡ ରୋଜ କାଟେ । ଦିନେ ଦିନେ ବରଗଛର କେଉଁ ଡାହିକି ବୋଇଲେ କେଉଁ ଡାହିକି ନେଇଯାଏ ।

ମୂଷା ଅବୋଧ ସାଙ୍ଗେ ଏମିତି ଲାଗିବାରୁ ଅବୋଧ ତା'ରି ଦାଉରେ ସେଠାରୁ ପଳାଇବାକୁ ବସିଲା । ଗାଁ' ଲୋକେ ଏକଥା ଜାଣିଲେ, ଅବୋଧକୁ କହିଲେ – ଛାର୍ ଗୋଟେ ମୂଷା ଯୋଗୁଁ ପଳାଇବ ? ବିଲେଇଟେ ବାନ୍ଧି ଦେଲେ ତ ମୂଷା କୁଆଡ଼େ ପଳାଇବ । ଏଇଥିପାଇଁ ଏତେ ବ୍ୟସ୍ତ କିଆଁ ? ଅବୋଧ କଥାରେ ବୋଧ ହୋଇ କହିଲା – ହଉ ତେବେ । ତା'ପରେ ଜଣେ ଲୋକ ଗୋଟେ ବିଲେଇ ଆଣି ସେଠାରେ ବାନ୍ଧି ଦେଲା । ବିରାଡ଼ିଟି ବନ୍ଧା ହେବାରୁ ସତକୁ ସତ ଆଉ ମୂଷା ଆସିଲା ନାହିଁ । ମୂଷା ଜଞ୍ଜାଳ

ସିନା ଗଲା, ଏବେ ବିଲେଇ ଜଞ୍ଜାଳ ତାକୁ ବଳିଲା । ବିଲେଇ ଖାଇବାକୁ ତ ପୁଣି ମାଛ ଶୁଖୁଆ, କି ଦୁଧ ଘିଅ ଟିକିଏ ଦରକାର । ଅବୋଧ ତ ବାବାଜିଟେ, ଏହାସବୁ କାହୁଁ ପାଇବ ? ବାବାଜିଟେ ହୋଇ ମାଛ ଶୁଖୁଆ ବା କାହାକୁ ମାଗିବ ? ମାଛ ଶୁଖୁଆ ମାଗିଲେ ପଛକୁ ଲୋକେ ବାଡ଼େଇବେ ସିନା ? ଗାଁ' ଲୋକେ ଦୁଇ ଚାରି ଦିନ ବିଲେଇ କଥା ବୁଝିଲେ, ତେଣିକି ଆଉ ବୁଝିଲେ ନାହିଁ । ତା'ପରେ ବିଲେଇ ଚିନ୍ତା ଅବୋଧ ଉପରେ ପଡ଼ିଲା । ସେଥିରେ ସେ ବଡ଼ ହଇରାଣ ହେଲା । ସେ ଦେଖିଲା ଯେ ବିଲେଇ ନ ରଖିଲେ ମୂଷା ମତେ ରଖାଇ ଦବ ନାହିଁ, ମୁଁ ପୁଣି ବିଲେଇକି ସମ୍ଭାଳି ପାରିବି ନାହିଁ । ଏଣୁ ଏଠାରୁ ପଳାଇବା ଭଲ । ଏ କଥା ଯହୁଁ ଗାଁ' ଲୋକେ ଜାଣିଲେ; ତହୁଁ ସେମାନେ କହିଲେ – ବିଲେଇଟେ ପୋଷା ଯାଇପାରିବ ନାହିଁ ଯେ ଏଥିପାଇଁ ପଳାଇବ ? ଦୁଧିଆଳି ଗାଈଟେ ବାନ୍ଧିଦେଲେ ତ ବିଲେଇର ଦୁଧ ଟୋପେ ଟୋପେ ହେଲେ କାମ ଶେଷ, ଏଥିକି ଏବେ ବ୍ୟସ୍ତ କିଆଁ ?

ସେଇ କଥା ଅନୁସାରେ ଗୋଟେ ଦୁଧିଆଳି ଗାଈ ବନ୍ଧା ହେଲା । ସତକୁ ସତ ବିଲେଇ କାମ ବେଶ୍ ଚଳିଲା; କିନ୍ତୁ ଗାଈ ଜଞ୍ଜାଳ ବିଲେଇ ଜଞ୍ଜାଳକୁ ବଳକା ହେଲା । ସେଥିଯୋଗୁଁ ଅବୋଧ ପୁଣି ପଳାଇବାକୁ ବାହାରିଲା । ଗାଁ' ଲୋକେ ଏହା ଜାଣିପାରି ଗାଈର କୁଟା ପାଳ କୁଣ୍ଡା କୁଳୁଚି ଲାଗି ଖଣ୍ଡେ ଜମି ଖଞ୍ଜିଦେଲେ । ଜମିରେ ତ ପୁଣି ମନକୁ ଫସଲ ହବନାହିଁ, ସେଥିପାଇଁ ଗୋଟେ ହଳିଆ, ହଳେ ବଳଦ ଦରକାର । ତା' ମଧ ହେଲା । ହଳିଆ ସିନା ବିଲ ବାଡ଼ି କାମ କରି ଫସଲ କରିବ, ପୁଣି କୁଣ୍ଡା କୁଳୁଚି, ପେଜ ତୋଡ଼ାଣି ଜୁଟାଇବା, ଆଉ ଗୁହାଳ ପୋଛିବା ପାଇଁ ତ ମାଇପି ଲୋକ ଦରକାର । ଗାଁ' ଲୋକେ ତାହା ମଧ ଖଞ୍ଜିଦେଲେ । ଏଣିକି ଅବୋଧର ଆଉ ଅଡୁଆ କିଛି ନାହିଁ । ମୂଷା ଦାଉ, ବିଲେଇ ଜଞ୍ଜାଳ, ଗାଈ ଅଡୁଆ ତୁଟିଗଲା । ବିଲ ଖଣ୍ଡିଏ ହେବାରୁ ଭଲ ଚାଉଳ ଦିଓଟି ମଧ ଅବୋଧକୁ ଖାଇବାକୁ ମିଳିଲା, ଆଉ ଭିକ ମାଗିବାକୁ ପଡ଼ିଲା ନାହିଁ । ଗାଈଠାରୁ ଯେଉଁ ଦୁଧ ମିଳେ, ସେଥିରୁ ବିଲେଇ ଅବା କେତେ ଖାଇବ ? ସେଥିରୁ ପୋଷେ ପୋଷେ ମଧ ଅବୋଧକୁ ଖାଇବାକୁ ମିଳିଲା । ସେଥିରେ ପୁଣି ଗୋଟେ ଚାକର, ଗୋଟେ ଚାକରାଣୀ ନିଜର ହୋଇ ରହିଲେ । ଦିହ

ମୁଣ୍ଡ, ହାତ ଗୋଡ଼ ବଥେଇଲେ ଚାକରାଣୀ ସଙ୍ଗେ ସଙ୍ଗେ ସେବା କରୁଥାଏ । ଅବୋଧ ଏଣିକି ଖାଇପିଇ ମହା ମଉଜରେ ରହିଲା । ଏମିତି ମଉଜରେ ଚଳିଲେ କି ଲୋକ ବୈରାଗୀ ହୋଇ ରହିପାରେ ? ଇମିତି କେତେକାଳ ଗଲା ପରେ ଚାକରାଣୀ ଆଉ ପୁଅ ଝିଅ ହୋଇ ଦୁଇଟି ହେଲେ । ଏଥିମଧ୍ୟରେ ଅବୋଧର ଆୟ ଆମଦାନୀ ମଧ୍ୟ ବଢ଼ିଯାଇଛି । ବର୍ତ୍ତମାନ ଆଉ ସେ ଅବୋଧ ନାହିଁ – ଅବୋଧ ପ୍ରକୃତରେ ଅବୋଧ । ନ ହେଲେ ସେ ବାବାଜି ହୋଇ ପୁଣି କାହିଁକି ସଂସାରୀ ହୁଅନ୍ତା ? ଅବୋଧ ଏହିପରି ମହାସୁଖରେ ଥାଏ ।

ସମୟ ହୋଇ ଆସିବାରୁ ସେହି ଗୁରୁ ବାବାଜି ଅବୋଧକୁ ଦୀକ୍ଷା ଦେବା ପାଇଁ ସେଠାରେ ଆସି ପହଞ୍ଚିଲେ । ଗୁରୁ ଆସି ଦେଖନ୍ତି ତ ଅବୋଧ ଆଉ ବୈରାଗୀ ନୁହେଁ, ସେ ପୁଣି ସଂସାରୀ ହୋଇ ମହାଭୋଗରେ ରହିଲାଣି । ବାବାଜି ଏହା ଦେଖି ଆଉ ଦୀକ୍ଷା ଦେବେ କ'ଣ ? ପଚାରିଲେ – କିଓ । ୟେ କ'ଣ ? ଅବୋଧ କହିଲା – "ସବ୍ କୌପୁନିକା ବାସ୍ତେ ।" ବାବାଜି କିଛି ବୁଝି ପାରିଲେ ନାହିଁ । ତା'ପରେ ଅବୋଧ କହିଲା – "ଆପଣ ଯେଉଁ କୌପୁନି ଦେଇଥିଲେ, ତାକୁ ମୂଷା ନେବାରୁ ମୂଷା ପାଇଁ ବିଲେଇ, ପୁଣି ବିଲେଇ ପାଇଁ ଗାଈ ରଖୁ ରଖୁ ମୁଁ ଏ ଅବସ୍ଥାରେ ପହଞ୍ଚିଛି । କୌପୁନି ମୂଷା ନେଇ ନ ଥିଲେ ମୋର ଏ ଅବସ୍ଥା କାହିଁକି ହୋଇଥା'ନ୍ତା ? ସେଥିପାଇଁ କହିଲି, 'ସବ୍ କୌପୁନିକା ବାସ୍ତେ' ।"

ଗୁରୁ ବାବାଜି ଏହା ଶୁଣି କହିଲେ – ବାବା ! ତମର ଦୀକ୍ଷା ତୁମ ହାତରେ । ଆଉ ଦୀକ୍ଷା ନେବା ଦରକାର ନାହିଁ । ଆମେ ବିଦାୟ ହେଲୁ । ବାବାଜି ତ ଗଲେ, ଅବୋଧ ଏଣିକି ପୂରା ସଂସାରୀ ହୋଇ ରହିଲା । ଏଣିକି ବେଳେ ବେଳେ ଯେଉଁ ଗାଁ' ଲୋକ ସାହାଯ୍ୟ କରିଥିଲେ, ସେମାନଙ୍କ ସଙ୍ଗେ କଳିଗୋଳ କରି ସେମାନଙ୍କ ନାମରେ ଅବୋଧ ବହୁତ ମାଲିମକଦ୍ଦମା କଲା । ଏଥିରେ କି ଶାନ୍ତି ମିଳେ ।

ଏଥିପାଇଁ କଥା ଅଛି – ଜ୍ଞାନ ନ ହେଲେ କାହାର ଆଡ଼ମ୍ବରରେ କେହି ବୈରାଗୀ ହୋଇ ନ ପାରେ ।

# କୁଣିଆକୁ ବାନ୍ଧ, ଠେଙ୍ଗାକୁ ଆଣ

ଛାନିଆପୁରର ଚମକ ସିଂ ଦିନେ ତା' ଶ୍ୱଶୁର ଘରକୁ ବାହାରିଲା । ଶ୍ୱଶୁର ଘର ଛାନିଆପୁରକୁ ଟିକିଏ ଦୂର । ଯାଉ ଯାଉ ବାଟରେ ଟାଣ ଖରା ହୋଇଗଲା । ଶ୍ୱଶୁର ଘର ବାଟ ତିନି କୋଶ ଥାଏ, ବାଟରେ ଚମକର ସଡୁ ସାଙ୍ଗେ ଦେଖାହେଲା । ସଡୁ କାମ ପଡ଼ିଥାଏ ବୋଲି ଆଉ ଗୋଟେ ଗାଁ'କୁ ଯାଉଥାଏ । ଅବେଳାରେ ବାଟରେ ସଡୁ ସଙ୍ଗେ ଦେଖା ହେବାରୁ ପଚାରିଲା – କିଓ ସଡୁ । ଏ ଖରାରେ କୁଆଡ଼େ ଭିଡ଼ିଚ ? ଚମକ କହିଲା – ଟିକିଏ ଶ୍ୱଶୁର ଘରକୁ ଯାଉଛି । ଚମକର କଥା ଶୁଣିଲା ପରେ ସଡୁ ଦେଖିଲା, ବନ୍ଧୁ ଲୋକ, ଦିନ ବହୁତ ହେଲାଣି, ଟିକିଏ ଆଦର ନ କରି ଛାଡ଼ି ଦବାଟା ତ ଭଲ ହେବନାହିଁ । ତହୁଁ କହିଲା – "ସଡୁ ! ଦିନ ବହୁତ ହେଲାଣି, ଖରାଟା ଟାଣ ହେଉଛି, ଶ୍ୱଶୁର ଘରେ ପହଞ୍ଚୁ ପହଞ୍ଚୁ ବେଳବୁଡ଼ ହୋଇଯିବ, ମୁଁ ତ ଗୋଟେ କାମରେ ଯାଉଛି; ତୁମେ ଆମ ଘରକୁ ଯାଅ, ଘରେ କାଞ୍ଜି ଅଛି ଆମ ଘରେ ଗଣ୍ଡେ ଭାତ ଖାଇଯିବ ।" ଚମକ ଦେଖିଲା ସଡୁ ତ ବହୁତ ଆଦର କରୁଛି, ହେଲା ଏବେ, କାଞ୍ଜି ହଉ ଶାଗ ହଉ, ଗଣ୍ଡେ ଖାଇକରି ଗଲେ ମନ୍ଦ କ'ଣ ? ତହୁଁ ସେ କହିଲା – ହଉ ତେବେ ତୁମେ ଯାଅ; ମୁଁ ଭାତ ଖାଇକରି ଯିବି । ୟା କହି ସଡୁ ଘରେ ପହଞ୍ଚିଲା । ସଡୁର ଭାର୍ଯ୍ୟା ଚମକକୁ ଦେଖି କହିଲା – ଭଲ ହେଲା, କେତେ ଦିନରେ ତ ଆସିଚ, ଦିନ ତ ବହୁତ ହେଲାଣି, ଘିଅ ଆସୁ, ଗଣ୍ଡେ ଭାତ ଖାଇକରି ଯିବ । ଚମକ ବୁଝିଲା – ସଡୁ ସିନା କହିଥିଲା, କାଞ୍ଜି ଅଛି, ଖାଇକରି ଯିବ, ତା' ଭାର୍ଯ୍ୟାକୁ ବୋଧହୁଏ କାଞ୍ଜି ଭାତ ଦବାକୁ ଲାଜ ମାଡୁଛି, ସେଥିପାଇଁ ଘିଅର ବରାଦ କଲାଣି । ହଉ ହେଲା ଏବେ,

ଟିକିଏ ଉଛୁର ସିନା ହବ, ଘିଅ ଆସିବା ଯାଏ ଯାଉ । ଭଲକରି ମୁଠେ ନ ଖାଇ ବନ୍ଧୁ ଘରେ କାଞ୍ଜି ଘେନି କ'ଣ ଖାଇବି ? ଇମିତି ବିଚାରି ଚମକ ସତ୍ତୁ ପିଣ୍ଡାରେ ବସୁ ବସୁ ଆସି ସନ୍ଧ୍ୟା ହେଲା, କାଞ୍ଜି ନାହିଁ କି ଘିଅ ନାହିଁ, ଭୋକରେ ଆଉଟୁ ପାଉଟୁ ହେଲା । କେତେବେଳେ ଉତ୍ତାରୁ ତା'ର ସତ୍ତୁ ଆସି ପହଞ୍ଚିଲା । ସତ୍ତୁ ଆସିଲା ସିନା, ସେ ଆସି ପହଞ୍ଚିଲା ବେଳକୁ ଗଉଡ଼ ଗୋଠ ଘେନି ଆସି ପହଞ୍ଚିଲା । ସେତେବେଳେ ଯେବେ ବଳଦ ଦି'ଟା କଥା ନ ବୁଝୁଛି, ତେବେ ସେ ଯୋଡ଼ାକଯାକ କୁଆଡ଼େ ଚାଲିଯିବେ; ଯା ବୋଲି ଗୁହାଳ ଆଡ଼କୁ ଗଲା, ଆଉ ସତ୍ତୁ କଥା ବୁଝିବ କ'ଣ ? ସତକୁ ସତ ଗୁହାଳ ପାଖେ ପହଞ୍ଚିଲାବେଳକୁ ଗୋଟେ ବଳଦ ଅଛି, ଆଉ ଗୋଟେ ପଳଉଚି; ଅନ୍ଧାର ହୋଇଗଲେ ପଛକୁ ସେ ବଳଦଟା ଆଉ ପାଇବ ନାହିଁ । ଏଣେ ଯୁ'ଟା ଅଛି, ତାକୁ ଛାଡ଼ିଦେଲେ ସେ ମଧ ପଳାଇବ; ଏଥିଯୋଗୁଁ ଭାର୍ଯ୍ୟାକୁ ତରବରରେ ଡାକ ପକାଇଲା – ଆଲୋ ହେ ! କୁଣିଆକୁ ବାନ୍ଧ, ଠେଙ୍ଗାକୁ ଆଣେ । ଚମକ ଏପର୍ଯ୍ୟନ୍ତ ଭୋକ ଉପାସରେ ପିଣ୍ଡାରେ ବସିଥିଲା । ସତ୍ତୁ ଆସିଲା ଯେ ସେ ପଦେ କଥା ନ କହି ଏକାବେଳକେ ବାଡ଼ିଆଡ଼କୁ ସଳଖିଲା । ଏହା ଦେଖି ସେ କିମିତି କିମିତି ହେଉଥିଲା । ଯହୁଁ ଶୁଣିଲା – 'କୁଣିଆକୁ ବାନ୍ଧ, ଠେଙ୍ଗାକୁ ଆଣ' ତହୁଁ ତା'ର ପିଳେହି ପାଣି ହେଲା, ଭାବିଲା – କିରେ, ଯେ କ'ଣ ? ଆରେ, ଆରେ ଏ ଗୃହସ୍ଥ ଭାର୍ଯ୍ୟା ଦିହେଁ କ'ଣ ଠକାର କରିଥିଲେ, ମୋଠାରେ ଯାଙ୍କର କ'ଣ ଅହନ୍ତା ଥିଲା; ସେଥିପାଇଁ ଏତେବେଳଯାଏ ଓପାସରେ ବସାଇ ବସାଇ ଅନ୍ଧାର ହୋଇ ଆସିବାରୁ ପଛକୁ ମତେ ବାନ୍ଧି ଠେଙ୍ଗା ଖୋଜିବା ପର୍ଯ୍ୟନ୍ତ ଗଲାଣି । ଆଉ ଏଠାରେ ରହିଲେ ରକ୍ଷା ଅଛି ? ଏବେ ଯାହା ହେଲା ହେଲା, ପ୍ରାଣ ଘେନି ପଳାଇଲେ ରକ୍ଷା । ଏହା ଭାବି ଚମକ ଝପଟ ମାଇଲା । ଝପଟ ମାଇଲା ସିନା, ସକାଳୁ ଆସି ସନ୍ଧ୍ୟା ହେଲା, ପେଟରେ ଅନ୍ନ ପଶି ନାହିଁ, ଦେହରେ ବଳ କାହୁଁ ଆସିବ ? ଖଣ୍ଡେ ବାଟ ଦୌଡ଼ିଯାଇ ଗୋଟେ ଲଟି ପାଖରେ ଲୁଚିକରି ବସି ଟିକିଏ ଦମ୍ ମାଇଲା । ଚମକ ଯେତେବେଳେ ଶୁଣିଲା – ସତ୍ତୁ 'ଦେଖିଲି', ଦେଖିଲି' ବୋଲି କହୁଚି, ବିଚାରିଲା – ମୁଁ ଏବେ ଆଛା ଲୁଚିକରି ବସିଲି । ସେ ତ ଦେଖି ସାରିଲାଣି, ପଛକୁ ପାଖକୁ ନ ଯାଇ

ପଳାଇଲେ ସତ୍ତୁର ରାଗ ଚଢ଼ିବ ସିନା । ଯାଏ ଧରାପଡ଼ିଲିଣି ତ ଗୋଡ଼ତଳେ ପଡ଼ି କ୍ଷମା ମାଗେ । ଯା ବୋଲି ଧଇଁ ସଇଁ ହୋଇ ଆସିଲା ବେଳକୁ ସତ୍ତୁ କୁକୁରକୁ ବାନ୍ଧି ଦେଇ ପିଣ୍ଡାରେ ଆସି ଠିଆ ହୋଇଛି । ଚମକ ଯିମିତି ପହଞ୍ଚିଲା, ସେମିତି ସାଙ୍ଗେ ସାଙ୍ଗେ ତା' ଗୋଡ଼ ତଳେ ପଡ଼ି କହିଲା – ମୋର ସବୁ ଦୋଷ, ମୋତେ କ୍ଷମା ଦିଅ । ସତ୍ତୁ ଏକଥା ଶୁଣି କାବା ହୋଇ ପଚାରିଲା – କିଏ ! ଏ କ'ଣ ? ତୁମେ ଗୋଡ଼ତଳେ କିଆଁ ପଡୁଚ ? ଏପରି କ'ଣ କହୁଚ ? ଇମିତି ତ କିଛି କଥା ନାହିଁ, ତୁମେ ଇମିତି କିଆଁ ହଉଚ ? ଚମକ କହିଲା – "ସତ୍ତୁ ! ତୁମେ ଯାହା କଲଣି ସେଥିରେ ମୁଇଁ କେବଳ ହେଲି ନା ଯେକେହି ଲୋକ ହେବ ? ସତ୍ତୁ କହିଲା – ମୁଁ କ'ଣ କଲି ? ଚମକ କହିଲା – ହୟେ ! ମୋ ଦୁଃଖରେ ତ ମୁଁ ଯାଉଥିଲି, ତୁମେ ତୁଚ୍ଛାଟାରେ ବନ୍ଧୁ ସ୍ନେହ ଦେଖାଇ କହିଲ – ଯାଅ, ଘରେ କାଞ୍ଜି ଅଛି, ଭାତ ଗଣ୍ଡେ ଖାଇକରି ଯିବ । ତୁମରି କଥା ଅନୁସାରେ ତୁମ ଘରେ ପହଞ୍ଚିଲି । ତୁମ ଭାର୍ଯ୍ୟା କହିଲା – ଟିକିଏ ବସ, ଘିଅ ଆସୁ, ଭାତ ଗଣ୍ଡେ ଖାଇକରି ଯିବ । ମୁଁ ବିଚାରିଲି, ବନ୍ଧୁଲୋକ ତ କାଞ୍ଜିଭାତ ଖାଇବାକୁ ଦେବାକୁ ଲାଜ ମାଡୁଛି, ସେଥିପାଇଁ ବୋଧହୁଏ ଘିଅ ପାଇଁ କିଏ ଯାଇଛି । ଦେଖୁ ଦେଖୁ କାଞ୍ଜି ନାହିଁ କି ଘିଅ ନାହିଁ । ପଛକୁ ତୁମେ ଆସିଲ ଯେ କଥା ନାହିଁ କି ବାର୍ତ୍ତା ନାହିଁ, ସାଙ୍ଗେ ସାଙ୍ଗେ କୁଣିଆକୁ ବାନ୍ଧ ଠେଙ୍ଗାକୁ ଆଣ – ଏକଥା ଶୁଣି କେଉଁ କୁଣିଆ ନିଜ ପ୍ରାଣ ଘେନି ନ ପଳାଇବ ? ହଉ ଭଲା ମୁଁ ଗଲି ଯେ ପ୍ରାଣ ଭୟରେ ଲୁଚିଲି । ଲୁଚିଲେ ମଧ୍ୟ କାହୁଁ ନିଖାରି ନିଖାରି ଚାହିଁଲ ଯେ ସେଥିରେ ଧରାଟିଏ ପଡ଼ିଲି । ପଛକୁ କହିଲ 'ଦେଖିଲି' । ଏବେ ଦେଖା ତ ପଡ଼ିଲି, ପଛକୁ ରାଗ ବଢ଼ିବ ସିନା ବୋଲି ଶରଣ ପଶୁଚି । ମତେ ରକ୍ଷା କର, ମୋର ଉପାୟ କ'ଣ ଅଛି ?"

ସତ୍ତୁ ଏସବୁ କଥା ଶୁଣି ହସିଲା, କହିଲା – ହୟେ ସତ୍ତୁ ! ଏସବୁ କଥା ମିଛ, ତୁମର ବୁଝିବା ଭୁଲ । ତୁମ ଉପରେ ମୋର କିଛି ରାଗ ନାହିଁ, ତୁମେ ମୋର କିଛି ଦୋଷ କରିନାହଁ । ମୁଁ କାହିଁକି ତୁମକୁ ମାରନ୍ତି ? ଏବେ ମୋ କଥା ଶୁଣିଲେ ସବୁ ବୁଝିପାରିବ । ଶୁଣିବ, ମୋ ଭାର୍ଯ୍ୟା ନାଁ କାଞ୍ଜି, ମୋ ନାଁ ଘିଅ, ବଳଦ ଦୁଇଟାଙ୍କ ନାଁ ଠେଙ୍ଗା, କୁଣିଆ, କୁକୁର ନାଁ

ଦେଖିଲି । ମୁଁ ଆସିଲା ବେଳକୁ ତ ଅସମୟ ହୋଇଥିଲା, ତୁମ କଥା କିଛି ନ ପଚାରି ଏ ପଶୁ ଜୀବଙ୍କ କଥା ଆଗ ବୁଝିବସିଲି । ତୁମେ ସେସବୁ ଶୁଣି ତରଛି ଯାଇଛ । ନ ହେଲେ ଏପର୍ଯ୍ୟନ୍ତ କଥା ଯାଇ ନ ଥା'ନ୍ତା । ଆଉ ଏକକଥା, କାଞ୍ଜି ଯେବେ ତୁମକୁ ମୁଠିଏ ଖାଇବାକୁ ଦେଇ ବିଦା କରି ଦେଇଥା'ନ୍ତା; ତେବେ କଥା ଏତେଦୂର ଯାଇ ନ ଥା'ନ୍ତା । ସେ ମୋ ଆସିବାକୁ ଅପେକ୍ଷା କଲା; ସେଥିରେ ତୁମର ଖାଇବାର ବିଳମ୍ବ ହୋଇଛି । ପଛକୁ ଏସବୁ ନାଁ'ରେ ଡାକିବାରେ ତୁମର ଭୟ ହୋଇଛି । ନ ହେଲେ କିଛି କଥା ନାହିଁ । ଏବେ ମୋର ସବୁ ଦୋଷ, ତୁମେ ମତେ କ୍ଷମା ଦିଅ । ଆସ, ଦି' ସଡ଼ୁ ଏକାଠି ଖାଇବା । ଚମକ ଏସବୁ ବୁଝି ଦମ୍ଭ ପାଇଲା । ତା'ପରେ ଦିହେଁ ଏକାଠି ଖାଇସାରିଲେ । ତା' ଉତ୍ତାରୁ ଚମକ ଶ୍ୱଶୁର ଘରକୁ ବିଦାୟ ହେଲେ ।

ଯେଉଁ ଲୋକ ଏସବୁ ଘଟଣା ଦେଖିଥିଲେ, ସେସବୁ ଯା କାନକୁ ତା' କାନ କରିବାରେ ଏକଥା ଏବେ ଚାରିଆଡ଼େ ବ୍ୟାପିଗଲା – ଯେ ଶୁଣୁଚି ସେ ହସୁଛି ।

# ସାଧୁସଙ୍ଗ

କୌଣସି ରାଜ୍ୟରେ ଜଣେ ରଜା ଥିଲେ । ସେ ରଜା ଗଣ୍ଡ ମୂର୍ଖ, ଦାନ ଧର୍ମ ବୋଲି କ'ଣ ସେ ଜାଣି ନ ଥିଲେ । ତଣ୍ଡି ବାନ୍ଧି କୌଣସି ପ୍ରକାରେ ଧନ ଆଣିବା ତାଙ୍କର ନିତ୍ୟକର୍ମ । ଏଥିପାଇଁ ସେ ରଜା ଘରକୁ କେତେ ସାଧୁ, ସନ୍ନ୍ୟାସୀ, ପଣ୍ଡିତ, ଭଦ୍ରଲୋକ ଯାଆନ୍ତି ନାହିଁ । ରଜା ସବୁବେଳେ ତଣ୍ଡି ନେବାରେ ସେ ରାଜ୍ୟର ପ୍ରଜାମାନେ କାଙ୍ଗାଳ । ବର୍ଷକ ମୁଠେ ଖାଇବାକୁ, ଖଣ୍ଡେ ପିନ୍ଧିବାକୁ କେହି ହେଲେ ପାଆନ୍ତି ନାହିଁ । ଲୋକେ କେତେ ସମ୍ଭାଳିବେ । ଏମିତି ବହୁତ ପୀଡ଼ା ପାଇବାରୁ ସମସ୍ତେ ରଜାଙ୍କର ଅମଙ୍ଗଳ ପାଞ୍ଚୁଥା'ନ୍ତି । ଖାଲି ଭୟରେ ପାଟି ଫିଟାଇ ପାରନ୍ତି ନାହିଁ । ସେ ରାଜ୍ୟ ଏହିପରି ଅଶାନ୍ତିରେ ଉଚ୍ଛୁଳି ଥାଏ । ଦିନେ ଜଣେ ବାବାଜି ସେ ଗଡ଼ ଭିତର ଦେଇ ରଜାଘର ଆଡ଼କୁ ଯାଉଥା'ନ୍ତି । ସେ ରଜା ଘର ଦେଖି ନ ଥା'ନ୍ତି । ସେଥିଯୋଗୁଁ ବାଟଯାକ ପଚାରି ପଚାରି ଯାଉଥା'ନ୍ତି । ଏମିତି ପଚାରି ପଚାରି ଯାଉଯାଉ ଜଣେ ଭଦ୍ରଲୋକକୁ ପଚାରିବାରେ ସେ ଭଦ୍ରଲୋକ କହିଲେ – ବାବାଜି, ରଜାଘରକୁ ତୁମେ କାହିଁକି ଯିବ ? ବାବାଜି କହିଲେ – ବାପା ! ଆମେ ଭିକାରି ଲୋକ, ଭିକ ମୁଠେ ମାଗିଲେ ପେଟ ପାଳିବା, ନ ହେଲେ ରଜାଘରେ ଆମର କାମ କ'ଣ ? ସେ ଭଦ୍ରଲୋକ ଏହା ଶୁଣି ହସିହସି କହିଲେ – ବାବାଜି ! ତୁମେ ଏଇ ରଜାଘରୁ ଭିକ ପାଇବ ? ତୁମର ଯେବେ ଦଶା ମନ୍ଦ ପଡ଼ିଥିବ, ତେବେ ଏ ରଜା ଘରକୁ ଯିବ ? ବାବାଜି ଏହା ଶୁଣି କହିଲେ – ବାବା ! ଏପରି କାହିଁକି କହୁଛ ? ରଜାଙ୍କ ଘରୁ ଆମେ ତ ଟଙ୍କା ସୁନା ମାଗିବୁ ନାହିଁ, ସାମାନ୍ୟ ଚାଉଳ ଗଣ୍ଡେ ମିଳିବ ନାହିଁ ? ଭଦ୍ରଲୋକ କହିଲେ – ବାବାଜି ! ରଜା ଭାରି ଲୋଭୀ, ନେଇ ଜାଣେ, ଦେଇ ଜାଣେ ନାହିଁ । କାହାରିକୁ ଚାଉଳ ମୁଠେ ଦବା ତା' ଜାତକରେ ନାହିଁ । ନ ଦେଲା ତ ନାହିଁ, ଯେ

ମାଗିବାକୁ ଗଲା, ତା ଠାରେ ଯେବେ କିଛି ଥାଏ, ତେବେ ଓଲଟି ତା' ଠାରୁ ସେତକ ଛଡ଼ାଇ ନିଏ, ଯା ଛଡ଼ା ତାକୁ ନିସ୍ତୁକ ମାଡ଼ ଦିଏ । ଏଥିପାଇଁ କହୁଛି – ଯେବେ ତୁମର ଭଲ ଯୋଗ ଥାଏ, ତେବେ ସେ ରଜା ପାଖକୁ ଯିବା କଥା ବନ୍ଦ କର ।

ବାବାଜି ଏହା ଶୁଣି ମନେ ମନେ ଭାବିଲେ – ମୁଁ ତ ଏ ରାଜ୍ୟରେ ନୂଆ, ମୁଁ ବା କିପରି ଏ ରଜା କଥା ଜାଣିବି ? ଏ ଲୋକ ତ ଏଠାକାର ଲୋକ, ଯା କଥା ନିଶ୍ଚେ ସତ ହୋଇଥିବ । ତେବେ କ'ଣ ରଜା ପାଖକୁ ଯିବି ନାହିଁ ? ଆଚ୍ଛା, ମୁଁ ନ ଯିବି ସିନା, ମୋ ପରି ତ କେତେ ଲୋକ ହଇରାଣ ହେଉଥିବେ । ବିଶେଷରେ ପ୍ରଜାଗୁଡ଼ାକ ଅତ୍ୟାଚାରରେ ମରିବାକୁ ବସିଲେଣି । ଏପରିସ୍ଥଳେ ମତେ ମାଡ଼ ହେଲେ ପଛକେ ହେବ, ଏ ରଜାକୁ ଶିକ୍ଷା ଦେବାକୁ ଚେଷ୍ଟା କରିବି, ଛାଡ଼ିବି ନାହିଁ । ଏହି ପ୍ରତିଜ୍ଞା କରି ବାବାଜି ଗୋଟେ ଉପାୟ ପାଞ୍ଚିଲେ । ସେ ଦେଖିଲେ ଯେ ଏ ରଜାଟା ଲୋଭୀ । ଲୋଭୀକି ଧନ ଦେଖାଇଲେ ସେ ବଶ ହୁଅନ୍ତି । ତେବେ ଏ ରଜାକୁ ଧନ ଲୋଭ ଦେଖାଇଲେ ଅବଶ୍ୟ ହାତ ହବ, ନ ହେଲେ ମୋତେ ଦେଖା ପର୍ଯ୍ୟନ୍ତ ଦବ ନାହିଁ, ଅଥବା ମୋ ଉପରେ ଟାଙ୍କେ ହୋଇଗଲେ ହୋଇଯିବ । ଯାହା ହବାର ହଉ; ମୁଁ ଅବଶ୍ୟ ଯିବି । ଏହା ବିଚାରି ଗୋଟେ ଟିଣ ଡବା ସଂଗ୍ରହ କରି ସେଥିରେ ଗୁଡ଼ିଏ ଗୋଡ଼ି ଖପରା ପୂରାଇ ତାକୁ ଝୁଲା ଭିତରେ ରଖି ରଜା ଦୁଆରକୁ ଗଲେ । ରଜା ଦୁଆରେ ପହଞ୍ଚିଲାକ୍ଷଣି ଦୁଆରୀ ବାବାଜିଙ୍କି ଦୂର୍ ଦୂର୍ ମାର୍ ମାର୍ କଲା । ବାବାଜି ପଚାରିଲେ – କିଓ । ଆମେ ଭିକାରି ଲୋକ, ତୁମେ ଆମକୁ ଇମିତି ମାର ନ ମାର କାହିଁକି ହଉଚ ? ଦ୍ୱାରୀ କହିଲା – ଏଠାରେ ଭିକ ଫିଖ କିଛି ମିଳିବ ନାହିଁ । ରଜା ଦେଖିଲେ ତୁମର ବେଶି ଖରାପ ହେବ; ତୁମେ ବେଗେ ପଳାଅ, ଯାହା ରଜାଙ୍କର ହୁକୁମ ଅଛି, ମୁଁ ତାହା କରିବି, ମୋର କ'ଣ ଦୋଷ ?

ବାବାଜି ଦେଖିଲେ ଯେ ସେ ଭଦ୍ରଲୋକ ଯାହା କହିଥିଲେ, ତାହା ସତ । ତହୁଁ ଦୁଆରୀକି କହିଲେ – ତୁମେ ଆଉ ରାଗ ନାହିଁ । ଆମେ କିଛି ମାଗିବାକୁ ଆସି ନାହୁଁ, ଖାଲି ରଜାଙ୍କ ସଙ୍ଗେ ଟିକିଏ ମୁଲାକାତ କରିବାକୁ

ଆସିବୁ । ଦୁଆରୀ କହିଲା – କାହିଁକି ମୁଲାକାତ କରିବ ? ସେତକ ନ ହେଲେ ମୁଁ ଜଣାଇ ପାରିବି ନାହିଁ । ବାବାଜି କହିଲେ – ଆମ ହାତରେ କିଛି ଧନ ଅଛି, ସେତକ ରଜାଙ୍କ ପାଖରେ ରଖାଇ ଦେବାକୁ ଆସିଚୁ । ଦୁଆରୀ କହିଲା – ତୁମେ ସତ କହୁଚ କି ମିଛ କହୁଚ, ଯା ମୁଁ ଜାଣିବି କେମିତି ? ତୁମ ଧନ ଦେଖିଲେ ଯାଇ ରଜାଙ୍କୁ ଜଣାଇବି, ନୋହିଲେ ତୁମେ ଫେରି ଯାଅ । ବାବାଜି ଦୁଆରୀର ବିଶ୍ୱାସ ପାଇଁ ଝୁଲାରୁ ଟିଣ ଡବାଟି କାଢ଼ି ଝଣ ଝଣ କଲାରୁ ଦୁଆରୀ ବିଶ୍ୱାସ କରି ରଜାଙ୍କ ପାଖକୁ ଯାଇ ଜଣାଇଲା । ରଜା ଯହୁଁ ଶୁଣିଲେ ବାବାଜି ଟଙ୍କାଗୁଡ଼ିଏ ଦେବ, ସଙ୍ଗେ ସଙ୍ଗେ ତାଙ୍କୁ ଡକାଇ ପଠାଇଲେ । ବାବାଜି ପହଞ୍ଚିବାରୁ ରାଜା ପଚାରିଲେ, ବାବାଜି ତୁମେ କ'ଣ ଚାହୁଁଛ ? ବାବାଜି କହିଲେ – ମହାରାଜ, ଭିକମାଗି ଗୁଡ଼ିଏ ଧନ ହାତରେ ରଖିଚି । ମୋର ତ ଘରଦ୍ୱାର, ସିନ୍ଦୁକ, ବାକ୍ସ କିଛି ନାହିଁ, ପଛକୁ କିଏ ଚୋରାଇ ନେଇଯିବ । ଏହି ଭୟରେ ସେ ଧନତକ ଆଣିଚି ଆପଣଙ୍କ ଜିମା କରି ଦେବାକୁ । ରଜା ଏହା ଶୁଣି ବଡ଼ ଖୁସି ହୋଇ କହିଲେ – ଭଲ କଥା, ତୁମ ଧନ ଦିଅ, ଆମ ଭଣ୍ଡାରରେ ରଖାଇ ଦବୁ । ଏହା ଶୁଣି ବାବାଜି କହିଲେ ଆଜ୍ଞା, ସେ କଥା ସତ ଯେ; ମୋର ଗୋଟାଏ କଥା ବୁଝିବାର ଅଛି । ସେତକ ବୁଝିଲେ ଟଙ୍କାତକ ଆପଣଙ୍କ ଜିମା କରିଦେବି । ରଜା କହିଲେ – କି କଥା, ତେବେ କହ । ବାବାଜି କହିଲେ – ଆଜ୍ଞା । ଆପଣ ରଜା, ବହୁତ ଟଙ୍କା ରଖୁଛନ୍ତି, ଆପଣଙ୍କୁ ଅବଶ୍ୟ ଜଣାଥିବ । ମୁଁ ଭିକାରି ଲୋକ, ମୋର ବା ଟଙ୍କା କେତେ ? ମୁଁ କିଛି ଠିକଣା କରିପାରୁ ନାହିଁ, ସେଥିପାଇଁ ପଚାରୁଛି କ'ଣ କଲେ ମୋ ଧନତକ ମୁଁ ମରିଗଲେ ମୋ ସାଙ୍ଗେ ସାଙ୍ଗେ ଯିବ ? ଏତକ ବୁଝିଲେ ଧନତକ ଆପଣଙ୍କ ଜିମା କରିଦିଅନ୍ତି । ଏହା ଶୁଣି ରଜା ତଳକୁ ଉପରକୁ ଟିକିଏ ଚାହିଁ କହିଲେ – ବାବାଜି ! ଆମେ ତ ଏ କଥା କହି ପାରିବୁ ନାହିଁ । ଆଚ୍ଛା, ମନ୍ତ୍ରୀଙ୍କି ପଚାରିବା । ମନ୍ତ୍ରୀଙ୍କି ପଚାରିବାରେ ସେ ମଧ କିଛି ଉତ୍ତର କରି ପାରିଲେ ନାହିଁ । ତା'ପରେ ଗୋଟେ ବଡ଼ ପଣ୍ଡିତ ସଭା ହେଲା, ସେଥିରେ ଏ କଥା ପଡ଼ିଲା ପଣ୍ଡିତମାନେ ନାନା ବିଚାର ଆଲୋଚନା କଲେ; ମାତ୍ର କିଛି ସ୍ଥିର କରିପାରିଲେ ନାହିଁ । ଯହୁଁ କେହି କିଛି ନ

ପାରିଲେ, ବାବାଜି କହିଲେ – ଆଜ୍ଞା ! ମୁଁ ଗୋଟେ କଥା ଭାବୁଚି ତାହା ଆପଣମାନଙ୍କ ମନକୁ ପାଇବ କି ନା କହିପାରୁ ନାହିଁ । ମୁଁ ଦେଖୁଛି – ଏ ଜମି ବାଡ଼ି, ଟଙ୍କା କଉଡ଼ି କେହି ସାଙ୍ଗରେ ଯିବେ ନାହିଁ । ସାଙ୍ଗରେ ଯିବ କେବଳ ଧର୍ମ । ଯେବେ ଏ ଟଙ୍କା କଉଡ଼ି ଧର୍ମ ସାଙ୍ଗେ ବଦଳାଇ ଦିଆଯାଏ, ତେବେ ଟଙ୍କା କଉଡ଼ି ସେହି ଧର୍ମ ରୂପରେ ସାଙ୍ଗରେ ଯିବ । ତା'ଛଡ଼ା ଯାହା ଯେତେ କଲେ କେହି ସାଙ୍ଗରେ ଯିବେ ନାହିଁ । ସବୁ ଏହିଠାରେ ପଡ଼ି ରହିବ ।

ଏହା ଶୁଣି ସମସ୍ତେ କହିଲେ – ଏ କଥା ସତ, ଏ କଥା ପ୍ରକୃତ । ଏଥିରେ ରଜାଙ୍କର ମନ ମଧ ମାନିଗଲା । ସେ ଦେଖିଲେ ଯେ ପ୍ରକୃତରେ ଆମେ ସବୁ ଅନ୍ଧାରରେ ପଡ଼ିଥାଇଁ, କିଛି ନ ବୁଝି ନ ଶୁଣି ଖାଲି ଟଙ୍କା ଜମାଇବାରେ ଲାଗିଥାଇଁ । ନା, ଏଣିକି ଆଉ ଏକଥା ହେବ ନାହିଁ । ପ୍ରକୃତରେ ଏ ଟଙ୍କାରେ ଧର୍ମ ନ କଲେ ଏହା ଆମର ନୁହେଁ । ଏଣିକି ଏ ଟଙ୍କାରେ କେବଳ ଧର୍ମ କରିବା ଉଚିତ । ଏହା ଭାବି ରାଜା ମନ୍ତ୍ରୀଙ୍କି କହିଲେ – ମନ୍ତ୍ରୀ ! ଏ ବାବାଜି ଆଜିଠାରୁ ଆମ୍ଭର ଗୁରୁ ହେଲେ । ଏହାଙ୍କୁ ମଠବାଡ଼ି ଦେଇ ସୁଖରେ ରଖାଅ । ଆଜିଠାରୁ ବାବାଜି ଯାହା କହିବେ, ସେହି ଅନୁସାରେ କାମ ହେବ ।

ସତକୁ ସତ ସେହି ଦିନଠାରୁ ବାବାଜି ସେହିଠାରେ ମଠବାଡ଼ି ପାଇ ଆନନ୍ଦରେ ରହିଲେ । ବାବାଜିଙ୍କ କଥା ଅନୁସାରେ ରଜାଘରେ ପ୍ରତିଦିନ ଦାନ ଖଇରାତ ବହୁତ ହେଲା । ରାଜ୍ୟରୁ ଲାଞ୍ଚ ମିଛ ଉଠିଗଲା । ପ୍ରଜାମାନେ ମହା ସୁଖରେ ରହିଲେ । ରଜା ଧର୍ମ କରିବାରୁ ଲୋକେ ତାଙ୍କୁ ସବୁବେଳେ ଧନ୍ୟ ଧନ୍ୟ କହିଲେ ।

ସାଧୁ ସଙ୍ଗରେ ଏହିପରି କ୍ଷଣକ ମଧରେ ଖରାପ ଲୋକ ମଧ ଦେବତା ପାଲଟିଯାଏ ।

# ବୁଦ୍ଧି ପରୀକ୍ଷା

ପୂର୍ବେ ଆଠଗଡ଼ ରାଜ୍ୟରେ ନୀଳାଦ୍ରିଦେବ ବୋଲି ଜଣେ ରାଜା ଥିଲେ । ସେ ଯିମିତି ପାଠୁଆ, ସେମିତି ଚତୁର । ତାଙ୍କ ନ୍ୟାୟ ବୁଝାମଣାରେ ପ୍ରଜାମାନେ ମହାସୁଖରେ ଚଳୁଥିଲେ । ତାଙ୍କ ରାଜସଭାରେ ବହୁତ କବି, ବହୁତ ପଣ୍ଡିତ ଥିଲେ । ପାଠଶାସ୍ତ୍ର ବିଚାରରେ ତାଙ୍କର ଦିନ କଟୁଥିଲା । ତାଙ୍କର ଜଣେ ଦିଆନ ଥିଲେ, ସେ ବଡ଼ ବୁଦ୍ଧିଆ । ରାଜା ରାଜ୍ୟର କେତେଗୁଡ଼ିଏ କାମ ତାଙ୍କୁ ବୁଝିବାକୁ ଦେଇଥା'ନ୍ତି । ସବୁଠାରେ ଅଛି – ରଜା ତଳକୁ ଦିଆନ । ଦିଆନ ମଧ ମାସକୁ ମାସ ଗୁଡ଼ିଏ ଦରମା ପା'ନ୍ତି, ରହିବାକୁ ମଧ୍ୟ ସୁନ୍ଦର କୋଠାଘର ଖଣ୍ଡିଏ ପାଉଥା'ନ୍ତି, ତା'ଛଡ଼ା ଯିବା ଆସିବାକୁ ରଜାଘର ସବାରି, ହାତୀ ପା'ନ୍ତି । ଯେତେ ଯାହାହେଲେ ସେ ରଜାଙ୍କର ଜଣେ ଚାକର । ତାଙ୍କ ଛଡ଼ା ଅନେକ ଛୋଟବଡ଼ ଚାକର ଥା'ନ୍ତି । ତେବେ ତାଙ୍କୁ ବଳି କେହି ବେଶି ଦରମା ପାଉ ନ ଥିଲେ । ରଜାଙ୍କ ପାଖରେ କେତେଗୁଡ଼ିଏ ଛୋଟ ଚାକର ଥା'ନ୍ତି, ତାଙ୍କୁ ଖଟଣି ସେବକ କହନ୍ତି । ଏମାନେ ଅଳ୍ପ ଦରମା ପା'ନ୍ତି, ରାତିଦିନ ଖଟନ୍ତି । ସବୁଠାରେ ଅଛି – ତଳିଆ ଛୋଟ ଚାକର ଛୋଟ ଦରମା ପାନ୍ତି, ଛୋଟ କାମ କରନ୍ତି । ବଡ଼ ଚାକର ବଡ଼ ଦରମା ପାଆନ୍ତି, ଅଳ୍ପ କାମ କରନ୍ତି । ଦିଆନ ମାସକୁ ଦୁଇଶହ ଟଙ୍କା ପାନ୍ତି; ଦିନକ ଯାକରେ ମୋଟେ ତିନି ଘଣ୍ଟା କଚିରି କରନ୍ତି । ହାତୀ, ଘୋଡ଼ାରେ ଯିବା ଆସିବା କରନ୍ତି । ଏହା ଦେଖି ଖଟଣିସେବକ ଭିତରୁ ହରିଆ ଦିନେ ରଜାଙ୍କୁ ଜଣାଇଲା – ମହାରାଜ ! ମୋର ଗୋଟିଏ ଗୁହାରି କରିବାକୁ ଅଛି । ରଜା କହିଲେ – କି ଗୁହାରି କହ । ହଳିଆ ହାତଯୋଡ଼ି କହିଲା – ମଣିମା । ମୁଁ ରାତି ନାହିଁ, ଦିନ ନାହିଁ, କି ଖରା, କି ବର୍ଷା, କି ଶୀତ, ଆଠକାଳି ବାରମାସୀ ଛାମୁଙ୍କ ଖଟଣି ଖଟି ଖଟି ମାସକୁ ପାଇଲି ଛ'ଟା ଟଙ୍କା ଦରମା । ଆଉ ଦିଆନବାବୁ ଦିନକୁ

ତିନି ଘଣ୍ଟା କଚିରି କରି ସେ ପାଇଲେ ମାସକୁ ଦୁଇ ଶହ ଟଙ୍କା । ଏହାଛଡ଼ା ଯିବା ଆସିବାକୁ ଘୋଡ଼ା, ହାତୀ । ଏହା କ'ଣ ନ୍ୟାୟ ବିଚାର ହୋଇଛି ? ଛାମୁ ଧର୍ମାବତାର; ଏ କଥାକୁ ଟିକିଏ ବିଚାର କରନ୍ତୁ, ଏଇ ମୋର ଗୁହାରି । ରଜା ଏହା ଶୁଣି ଟିକିଏ ହସି କରି କହିଲେ – ତୁ ଯାହା କହିଲୁ ସତ କଥା, ଆଚ୍ଛା ଦିନେ ଏ କଥା ବିଚାର କରିବା । ହରିଆ ରଜାଙ୍କଠାରୁ ଏତକ ଶୁଣି ମନେ ମନେ ଖୁସିଟେ ହୋଇ ଭାବିଲା – ରଜା ଯେତେବେଳେ ବୁଝିବାକୁ କହିଲେଣି, ସେତେବେଳେ ନିଶ୍ଚେ ମୋ ଦରମା ବଢ଼ିଯିବ । ଏପରି କେତେଦିନ ଗଲା ପରେ ମହାନଦୀର କନ୍ଦରପୁର ପେଣ୍ଠରେ ତିନି ଚାରିଖଣ୍ଡ ଅଗ୍ନିକୋଟ କାହୁଁ ଆସି ଲାଗିଲା । ରଜା ଏ କଥା ଶୁଣି ପାରିଲେ । ଦେଖିଲେ ଯେ ଗୋଟେ ସୁବିଧା ମିଳିଛି, ଏତିକିବେଳେ ହରିଆର ଗୁହାରିଟା ବୁଝିଦେବା । ଏଇ କଥା ଭାବି ହରିଆକୁ ଡାକି କହିଲେ – ହରିଆ ! କନ୍ଦରପୁରଠାରେ ଯେଉଁ ତିନି ଚାରି ଖଣ୍ଡ ଅଗ୍ନିବୋଟ ଲାଗିଛି, ଯା ବୁଝି ଆସିବୁ – ସେଥିରେ କ'ଣ ଆସିଛି ? କନ୍ଦରପୁର ଗଡ଼ଠାରୁ ତିନିକୋଶ ବାଟ । ହରିଆ ହୁକୁମ ପାଇଲା କ୍ଷଣି କନ୍ଦରପୁର ଧାଇଁଲା । ହାଁ ଶୋଷ, ହାଁ ଭୋକ ହୋଇ କନ୍ଦରପୁରରେ ପହଞ୍ଚି ପଚାରି ବୁଝିଲା – ଅଗ୍ନିବୋଟରେ ଲୁଗା ଆସିଛି । ହରିଆ ଏତକ ବୁଝି ଖରାଏ ଖରାଏ ଦୌଡ଼ିକରି ଆସି ରଜାଙ୍କୁ ଜଣାଇଲା, ମଣିମା । ସେଥିରେ ସବୁ ଲୁଗା ଆସିଛି । ରଜା ପୁଣି ପଚାରିଲେ – ସେ ଲୁଗା କ'ଣ ଆମ ଆଠଗଡ଼ରେ ବିକ୍ରି ହେବ ? ହରିଆ କହିଲା – ଆଜ୍ଞା ! ମୁଁ ତ ତା' ବୁଝିନାହିଁ । ରଜା କହିଲେ – ତେବେ ଶୀଘ୍ର ଯାଇ ବୁଝି ଆ । ହରିଆ ଆଉ ବସି ଝାଳ ମାରିବ କ'ଣ, ସାଙ୍ଗେ ସାଙ୍ଗେ ପୁଣି କନ୍ଦରପୁର ଦୌଡ଼ିଲା । ସେଠାରେ ଯାଇ ପଚାରିଲା – ଏ ଲୁଗାସବୁ କ'ଣ ଏଠାରେ ବିକ୍ରି ହେବ ? ଲୁଗା ମହାଜନ କହିଲା – ଏଠାରେ କେହି ଯେବେ ଗ୍ରାହକ ହୁଅନ୍ତି, ତେବେ ବିକ୍ରି ହେବ । ହରିଆ ଏହା ବୁଝି ପୁଣି ଦୌଡ଼ିକରି ଆସି ରଜାଙ୍କୁ ସେହି କଥା ଜଣାଇଲା । ରଜା ପୁଣି ପଚାରିଲେ – ସେ ଅଗ୍ନିବୋଟ ଏଠାରେ କେତେଦିନ ରହିବ ? ହରିଆ କହିଲା – ଆଜ୍ଞା ! ମୁଁ ତ ସେକଥା ବୁଝିନାହିଁ । ରଜା କହିଲେ – ତେବେ ଯାଇ ବୁଝିଆ । ବିଚରା କ'ଣ

କରିବ, ରଜାଙ୍କ ହୁକୁମ ତ ପାଳିବାକୁ ହେବ । ଗୋଡ଼ ହାତ ବଥେଇ ହେଉଥିଲେ ସୁଦ୍ଧା ପୁଣି ଦୌଡ଼ି ଯାଇ ବୁଝିଲା – ଅଗ୍ନିବୋଟ ପନ୍ଦର ଦିନ ରହିବ । ହରିଆ ଏହା ବୁଝିଆସି ରଜାଙ୍କୁ ଜଣାଇବାରେ ରଜା ପଚାରିଲେ – ସେମାନେ ଲୁଗା ବଦଳରେ ଜିନିଷ ନେବେ, ନା, ଟଙ୍କା ନେବେ ? ହରିଆ କହିଲା – ଆଜ୍ଞା, ମୁଁ ତ ସେ କଥା ବୁଝିନାହିଁ । ରଜା କହିଲେ – ଏବେ ଯାଇ ଏ କଥା ବୁଝିଆ । ବିଚରାକୁ ଭାରି ବାଧା ହେଲାଣି; ହେଲେ କ'ଣ ହେବ, ଚାକିରି ତ କରିଛି; ନ ଯିବାକୁ ବୋପାର ଚାରା ନାହିଁ । ପୁଣି ଦୌଡ଼ି ଦୌଡ଼ି ଗଲା, ମଜାଜନକୁ ପଚାରି ବୁଝିଲା ଯେ ସେ ଜିନିଷ ବୋଝେଇ କରି ନେବେ । ରଜାଙ୍କୁ ଆସି ସେହି କଥା ଜଣାଇଲା । ଏହା ବାଦ୍ ହରିଆକୁ ରଜା ପଚାରିଲେ – ସେ ମହାଜନ ନାଁ କ'ଣ ? ହରିଆ କହିଲା ଆଜ୍ଞା ! ମୁଁ ତ ସେକଥା ବୁଝିନାହିଁ । ରଜା କହିଲେ – ଥରକୁ ଥର ଯାଉଚୁ, ଏଇ କେତୋଟି କଥା ବୁଝିଆସି ପାରୁନାହୁଁ ? ଏବେ ଯା, ଏକଥା ବୁଝିଆ । ଦୌଡ଼ି ଦୌଡ଼ି ହରିଆର ଆଉ ଗୋଡ଼ ଚଳୁ ନ ଥାଏ । କ'ଣ କରିବ, ଘୋଷାରି ହୋଇ ପୁଣି ଗଲା । ମହାଜନ ନାଁ ବୁଝି ଆସି ଛାମୁରେ ଜଣାଇଲା । ଏହିପରି ଥରକୁ ଥର ଦୌଡ଼ିବାରେ ହରିଆର ହାଙ୍କାସି ଉଡ଼ିଲାଣି – ଆଉ ଗୋଡ଼ହାତ ଉଠାଇ ହେଉନାହିଁ, ଠାଏ ହାଲିଆ ହୋଇ ପଡ଼ିଗଲା । ହରିଆ ପଡ଼ିଥାଏ, ଏଥିମଧ୍ୟରେ ଦିଆନେ ରଜାଙ୍କ ଛାମୁକୁ ଆସିଲେ । ଦିଆନଙ୍କୁ ରଜା କହିଲେ – କନ୍ଦରପୁରଠାରେ କେତେଖଣ୍ଡ ଅଗ୍ନିବୋଟରେ କ'ଣ ଆସିଛି, ଟିକିଏ ବୁଝିଆସିଲ । ଦିଆନେ ସାଙ୍ଗେ ସାଙ୍ଗେ ଘୋଡ଼ା ମାରିଦେଇ ଅଗ୍ନିବୋଟରେ କ'ଣ ଆସିଛି, ଏଠାରେ ତାହା ବିକିବେ କି ନା, ଟଙ୍କା ନେବେ କି ମାଲ ନେବେ, କି ମାଲ ନେବେ, କେତେଦିନ ରହିବେ, ମହାଜନ କିଏ, କେଉଁଠାର ମହାଜନ – ଏହିପରି ଅନେକ କଥା ବୁଝିଆସିଲେ । ଦିଆନେ ରଜାଙ୍କ ଛାମୁରେ ପହଞ୍ଚିବାରେ ରଜା ହରିଆକୁ ଯାହାସବୁ ପଚାରିଥିଲେ, ତାହା ସବୁ ଗୋଟି ଗୋଟି ପଚାରିଲେ । ଦିଆନେ ସେହିଠାରେ ବସି ସମସ୍ତ ଉତ୍ତର ଦେଉଥା'ନ୍ତି । ତା' ଛଡ଼ା ହରିଆକୁ ନ ପଚାରିଥିବା କେତେ କଥା ମଧ୍ୟ ପଚାରିଲେ । ଦିଆନେ ସେସବୁର ଠିକ୍ ଠିକ୍ ଜବାବ ଦେଲେ । ହରିଆ ସେହିଠାର ପଡ଼ିରହି ଏସବୁ କଥା

ଶୁଣୁଥାଏ । ରଜା ଦିଆନଙ୍କୁ ଯାହା ପଚାରିବାର ପଚାରି ସାରି ହରିଆକୁ ଡାକିଲେ । ହରିଆ ରଜାଙ୍କ ଆଗକୁ ଯିବାରେ ରଜା କହିଲେ – ହଇରେ ହରିଆ, ତୋତେ ଯାହା ପଚାରିଥିଲି, ଦିଆନଙ୍କୁ ସେସବୁ କଥା ପଚରା ଗଲା ତ ? ହରିଆ କହିଲା – ଆଜ୍ଞା ! ମୋଠାରୁ ତ ତାଙ୍କୁ ବେଶି ପଚରା ଯାଇଛି । ଆଚ୍ଛା, ତୁ ଯେତେଥର ଦୌଡ଼ିଲୁ ଦିଆନେ ସେତିକି ଥର ଦୌଡ଼ିଲେ ତ ? ଆଜ୍ଞା ! ସେ ତ ଥରକରେ ସବୁ ବୁଝି ଆସିଲେ, ମୁଁ ତ ଗୋଟିଏ ଗୋଟିଏ କଥା ବୁଝିବାକୁ ଦୌଡ଼ି ଦୌଡ଼ି ମୋ ଗୋଡ଼ ହାତରୁ ଶିରାମଇ ଉଠୁଛି । ଆଜ୍ଞା ! ଦେହପୀଡ଼ାରେ ମୁଁ ଆଉ ଆଠ ଦିନ କାଳ ଉଠିପାରିବି ନାହିଁ । ରଜା କହିଲେ – ତେବେ ତୁଇ କହ, ତୁ ମାସକୁ ଦିଶହ ଟଙ୍କା ପାଇବୁ; ନା, ଦିଆନେ ପାଇବେ ? ହରିଆ ଏପର୍ଯ୍ୟନ୍ତ ବୁଝି ନ ଥିଲା ଯେ ପରୀକ୍ଷା ତା'ରି ପାଇଁ ହଉଛି ବୋଲି । ଏତେବେଳକୁ ତା'ର ଚେତା ପଶିଲା । ହରିଆ ଏଥିରେ ମନକୁ ମନ କାଇଲି ହୋଇ ରଜାଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଯାଇ କହିଲା – ମଣିମା ! ମୋର ଦୋଷ ହୋଇଛି, କ୍ଷମା କରିବେ । ଏବେ ବୁଝିଲି, ଦିଆନେ ଦି'ଶହ ଟଙ୍କା ପାଇବାର ଲୋକ; ମୁଁ ଛ'ଟଙ୍କା ପାଇବାର ଲୋକ । ରଜା କହିଲେ – ଏବେ ନ୍ୟାୟ ବୁଝିଲୁ ତ ? ହଉ, ହଉ; ତୁ ଦୌଡ଼ି ଦୌଡ଼ି ବ୍ୟସ୍ତ ହୋଇଯାଇଚୁ, ଏବେ ତୋତେ ଆଠ ଦିନ ଛୁଟି ଦିଆଗଲା, ତୁ ଘରକୁ ଯା । ହରିଆ ମୁଣ୍ଡିଆ ମାରି ଘରକୁ ଗଲା । ଆଉ ଯେ ସବୁ ରଜାଙ୍କର ଏ ବିଚାର ବୁଦ୍ଧି ଦେଖୁଥିଲେ, ସେସବୁ ରଜାଙ୍କୁ ଧନ୍ୟ ଧନ୍ୟ କହି ଘରକୁ ଗଲେ ।

ସେଥିପାଇଁ କଥା ଅଛି – ବୁଦ୍ଧି ବଳରେ କ'ଣ ନ ହୋଇପାରେ ?

# ପାଞ୍ଚ ପରମେଶ୍ୱର

ବିଶ୍ୱାସପୁର ଗୋଟିଏ ବଡ଼ ଗାଁ' । ସେଥିରେ ଛତିଶ ପାଟକର ବହୁତ ଲୋକ ବାସ କରନ୍ତି । ସେମାନଙ୍କ ଭିତରେ ପରବୋଲା ଦାସ ବୋଲି ଜଣେ ବ୍ରାହ୍ମଣ ଥିଲା । ପରବୋଲା ନିଦା ମୂର୍ଖ । ସେଥିକି ଚାହିଁ ପୁଣି ବାସିଓଳିକି ଦାନ ନ ଥାଏ, ପିଲା କୁଟୁମ୍ବ ହୋଇ ଗୋଛାଏ । ବଉଁଶଯାକ ଖାଇବା ବିନା ଦିନଦିନ ଝାଡ଼ା ଓପାସରେ ପଟାପଟା ହୋଇଯା'ନ୍ତି । ନ ଖାଇ ନ ପିଇ ପଛକୁ ଦାସଙ୍କ ପିଲାଙ୍କର ନାକଦଣ୍ଡିରେ ପ୍ରାଣ ରହିଲା । ଦିନେ ଗାଁ' ବାଲା ପାଞ୍ଚ ସାତ ଜଣ ଗୋଟେ ପିଣ୍ଡାରେ ବସି ଗପସପ କରୁଥିଲେ । ଦୈବଯୋଗକୁ ପରବୋଲା ସେ ବାଟ ଦେଇ ଯାଉଥିଲା । ତା' ଉପରେ ନଜର ପଡ଼ିବାରୁ ସମସ୍ତଙ୍କର ଭାରି ଦୁଃଖ ହେଲା । ସେଥିରୁ ଜଣେ କହିଲା – ଜାଣିଲ, ଖାଇବାକୁ ନ ପାଇ ଦାସର ବଂଶଟା ଯାକ ମରିଯିବେ ? ସମସ୍ତେ ତ ବସିଚ, ଗୋଟେ ଭଲା ଉପାୟ କ'ଣ ଯୋଡ଼ିଲ । ଏହା ଶୁଣି ଆଉ ଜଣେ କହିଲା ସତ କଥା; ତେବେ ଉପାୟ କ'ଣ ଅଛି ? ଏତିକି କଥା ଆମେ ପାଞ୍ଚଜଣ ବସିଥାଇଁ, ପାଞ୍ଚ ପରମେଶ୍ୱର, ସମସ୍ତେ ବିଚାରି ଯାହା ଗୋଟେ କରିଦେବା, ସେଥିରେ ଏ ଚଳିଯିବ । ତେବେ ଉପାୟ ତ କିଛି ଦିଶୁନାହିଁ । ଏହା ଶୁଣି ଆଉ ଜଣେ କହିଲା – ମତେ ଗୋଟେ କଥା ଆଭାସୁଚି, ତୁମମାନଙ୍କ ମନକୁ ସେ ପାଇବ କି ନା ? ମୁଁ ବାପାଙ୍କଠାରୁ ଶୁଣିଥିଲି – 'ଦଶମାତା ହରିତକୀ' ଦଶଗୋଟି ମାଆ ଯାହା ନ କରିବେ, ଏକା ଗୋଟିଏ ହରିଡ଼ାରେ ତାହା ହୋଇପାରିବ । ପରବୋଲା ତ ଗଜମୂର୍ଖ, ସେଥିରେ ପୁଣି ଉଦାସୀନ । ସେ ତ ଆଉ କିଛି କରି ପାରିବ ନାହିଁ, ଖାଲି ହରିଡ଼ାଗୁଡ଼ିଏ ଶୁଖାଇ ଛେଚି ଗୁଣ୍ଡ କରି ଯେ ଯେଉଁ ରୋଗକୁ ମାଗିଲା, ତାକୁ ସେଇ ଗୁଣ୍ଡ ଔଷଧ କରି ଦଉ । ଏଥିରେ ନିଶ୍ଚୟ ଉପକାର ପାଇବେ । ଆହେ, କଥା ଅଛି – "ସଞ୍ଚ

ସକାଳେ ଯେ ପୋଖରୀ ଯାଏ, ତା' କଉଡ଼ି କି ବଇଦ ଖାଏ ?" ହରିଡ଼ା ଖାଇଲେ ନିଶ୍ଚେ ଝାଡ଼ାଟି ସଫା ହେବ । ଝାଡ଼ାଟି ସଫା ହେଲେ ଭୋକଟି ନିଶ୍ଚେ ହେବ, ଭୋକ ହେଲେ ଖାଇଲେ ବଳ ମଧ୍ୟ ହେବ । ଆଉ ରୋଗର ବାଟ କେଉଁଠି ରହିଲା ? ଲୋକେ ଉପକାର ପାଇଲେ ପରବୋଲା ଅବଶ୍ୟ ଦି'ପଇସା ପାଇବ; ତେବେ କଷ୍ଟେମଷ୍ଟେ ଚଳିଯିବ । ଏକଥା ସମସ୍ତଙ୍କ ମନକୁ ପାଇଲା । ଏହି କଥା ଠିକଣା କରି ପରବୋଲାକୁ ଡକାଇ ପଠାଇଲେ । ପରବୋଲା ଆସିବାରୁ ତାକୁ ବୁଝେଇ ସୁଝେଇ କହିଲେ, "ଦେଖ ଦାସେ ! ତୁମେ କାଲିଠାରୁ ହରିଡ଼ାଗୁଡ଼ିଏ ଗୋଟେଇ କରି ଆଣି ସେଗୁଡ଼ିକ ଛେଚି, କୁଟି, ଚିକ୍କଣ କରି ଗୁଣ୍ଡ କରି ମୁଣିଟିରେ ରଖିଥିବ, ଯେ ଇଚ୍ଛା ସେ ରୋଗ ହେଉ, ସେଥିକି ସେଥିରୁ ପାନେ ଦି'ପାନେ ଦେଲେ ରୋଗୀ ନିଶ୍ଚେ ଭଲ ହୋଇଯିବ । ତୁମକୁ ଦି'ପଇସା ମଧ୍ୟ ମିଳିବ । ସେଥିରେ କୌଣସି ପ୍ରକାରେ ପିଲାଏ ଚଳିଯିବେ ।" ପରବୋଲା ସେହି ପାଞ୍ଚ ପରମେଶ୍ୱରଙ୍କ କଥା ମାନି ଜଙ୍ଗଲରୁ ହରିଡ଼ାଗୁଡ଼ିଏ ଆଣି ଶୁଖାଇ ଛେଚି କୁଟି କପଡ଼ାଛାଣ ଗୁଣ୍ଡ କରି ମୁଣିଟିରେ ପୂରାଇ ରଖିଥାଏ ।

ପରବୋଲାକୁ ତ କେହି ବୈଦ୍ୟ ବୋଲି ଜାଣନ୍ତି ନାହିଁ, କିଆଁ କିଏ ଔଷଧ ମାଗିବ । ପୁଣି କାହାକୁ କିମିତି ଔଷଧ ଦେଲେ ତ ପୁଣି ନାଁ ବିଖ୍ୟାତ ହେବ । ତେବେ ସିନା ରୋଜଗାର ହେବ । ପରବୋଲା ଯା ବିଚାରି କାହାର କ'ଣ ହଉଚି, ଖବର ନେଲା । ଲୋକଙ୍କୁ ଯାଚି ଗୁଣ୍ଡି ଔଷଧି ଦେଲା । ଯାହା ହଉ ପଛକେ ମହୌଷଧ ତ । ସେହି କପଡ଼ାଛାଣ ହରିଡ଼ା ଗୁଣ୍ଡା, ଅନୁପାନ ଉଷୁମ ପାଣି । ଏ ଔଷଧ ଯେ ଖାଇବ, ତା'ର ଗୋଟେ ଦି'ଟା ସଫା ଝାଡ଼ା ନିଶ୍ଚେ ହେବ । ଝାଡ଼ା ସଫା ହେଲେ ଅନେକ ରୋଗ ମଧ୍ୟ ଭଲ ହୋଇଯାଏ । ପରବୋଲା କପାଳକୁ କେତେ ଲୋକ ହରିଡ଼ାଗୁଣ୍ଡା ଔଷଧରେ ଭଲ ହୋଇଗଲେ । ତହୁଁ କ୍ରମେ କ୍ରମେ ତା' ନାଁ ଚାରିଆଡ଼େ ବ୍ୟାପିଲା । ଏଣିକି ପ୍ରତିଦିନ ପରବୋଲା ଦୁଆରେ ଦଶ ପନ୍ଦର ଜଣ ରୋଗୀ ଜମିଲେ । ଲୋକେ ଉପକାର ପାଇବାରୁ ତା'ର ଦି ପଇସା ରୋଜଗାର ମଧ୍ୟ ହେଲା । କ୍ରମେ କ୍ରମେ ପରବୋଲାର ଘର ଭଲ ଚଳିଲା । ପଛକୁ ତା'ର ଅବସ୍ଥା ଫେରି ଆସିଲା ।

ଏଣିକି ପରବୋଲାର ସୁନାମୁଦି ପାଟଖଦି ପର୍ଯ୍ୟନ୍ତ ଗଲାଣି । ଚାରିଆଡ଼େ ବଡ଼ ବୈଦ୍ୟ ବୋଲି ଡାକ ପଡ଼ିଲାଣି । ଏମିତି କେତେ ଦିନ ଗଲା ଉତ୍ତାରୁ ଗୋଟେ ରାଇଜର ରଜାଘରେ ଦାସୀ ପୋଇଲୀ ଦି' ଜଣଙ୍କର ହଇଜା ହେଲା । ଉଆସଟା ଭିତରେ ହଇଜା ହେବାରୁ ରଜାଙ୍କର ମନ ଚଞ୍ଚଳ ହେଲା । ସେ ଭଲ ବୈଦ୍ୟ ଖୋଜିଲେ । କେହି କେହି ପରବୋଲା ନାଁ କହିବାରୁ ରଜା ସବାରି ଗଉଡ଼ ପଠାଇ ତାକୁ ଡକାଇ ପଠାଇଲେ । ପରବୋଲା ରଜାଘର ଡାକରା ପାଇ ମୁଣିଏ ହରିଡ଼ା ଚୂନା ବାନ୍ଧି ଶିଷ୍ୟଟିଏ ସାଙ୍ଗରେ ଧରି ସବାରି ଚଢ଼ି ରାଜୁଡ଼ାକୁ ବାହାରିଲା ।

ରଜାଘର ବିଶ୍ୱାସପୁରକୁ ଦି'ଦିନର ବାଟ । ଯାଉ ଯାଉ ଗୋଟେ ଗାଁ'ରେ ରାତି ହୋଇଗଲା । ଦୈବଯୋଗେ ସେ ଗାଁ'ରେ ଜଣକ ଘରେ ଜଣଙ୍କର ହଇଜା ହେଉଥାଏ । ସେଥିଯୋଗୁଁ ଘରବାଲା ବଡ଼ ବିକଳ ହେଉଥାଏ । ସେ ଯହୁଁ ଶୁଣିଲା ଯେ ଏ ସବାରିରେ ଜଣେ ରାଜବୈଦ୍ୟ ଯାଉଛନ୍ତି, ତହୁଁ ଲସର ପସର ହୋଇ ଦୌଡ଼ିକରି ଯାଇ ବେକରେ ଲୁଗା ପକାଇ ହାତଯୋଡ଼ି ରାଜବୈଦ୍ୟଙ୍କୁ କହିଲା – ଆଜ୍ଞା ! ଅଳସୁଆ କପାଳକୁ ଗଙ୍ଗା ବିଜେ କଲା ପରି ଦୈବେ ଆପଣ ଆସିଛନ୍ତି । ମୋ ଘରେ ଗୋଟିଏ ହଇଜା ରୋଗୀ ପଡ଼ିଛି, ଆପଣ ଦୟାକରି ଆଜି ରାତିଟା ରହି ତାକୁ ଟିକିଏ ଦେଖନ୍ତୁ । ରାତି ତ ହୋଇଯାଇଥିଲା, ବୈଦ୍ୟ ମଙ୍ଗିଗଲେ । ବସା ସଞ୍ଜା ପାଇ ସେ ରାତିକ ରହିଲେ । ହଇଜା ରୋଗୀକି ମଧ୍ୟ ସେହି ହରିଡ଼ାଚୂନାରୁ ପାନେ ଉଷୁମ ପାଣି ଅନୁପାନରେ ଦେଲେ । ଘରବାଲା କିଆଁ ଜାଣିବ, ହରିଡ଼ାଚୂନା ବୋଲି ଓଷୁଅ ନା ଓଷୁଅ । ସେ ବୈଦ୍ୟଙ୍କ କଥା ଅନୁସାରେ ଉଷୁମ ପାଣିରେ ହରିଡ଼ାଚୂନା ପାନର ରୋଗୀକି ବଢ଼ାଇଦେଲା । ହଗା ରୋଗକୁ ହରିଡ଼ାଚୂନା ପଡ଼ିଲେ ଯାହା ହୁଏ, ତାହା ହିଁ ହେଲା । ଘଡ଼ିଟେ ଯାଇଛି କି ନା ରୋଗୀ ଚାହିଁଲାକୁ ମାଇଲା ଖାଲି ପାଣି ପରି ନାହାଳି ଦେଲା । ଦେଖୁ ଦେଖୁ ଗୋଡ଼ରୁ ହାତରୁ ବାକୁଲା ଉଠିଲା । ଏହା ଦେଖି ଘରବାଲାର ହାକାସି ଉଠିଲା । ସେ ଦୌଡ଼ିଆସି ବୈଦ୍ୟଙ୍କୁ ସବୁ ଅବସ୍ଥା କହିଲା । ବୈଦ୍ୟ ସବୁ ଶୁଣି ସାରି କହିଲେ – ବୁଝିଲ, ମତେ ଜଣାଯାଉଛି,

ତୁମେ ସବୁ ରୋଗୀ ସେବା କରି ଜାଣୁନାହଁ ନଇଲେ ଓଷୁଅ କିଆଁ ନ ଧରନ୍ତା ? ତୁମେ ପାରିବ ନାହିଁ, ରୋଗୀକି ଆମ ବସାକୁ ପଠାଇ ଦିଅ, ଆମେ ସବୁ ବୁଝିବୁ ।

ଘରବାଲା ବୈଦ୍ୟ କଥା ଅନୁସାରେ ରୋଗୀକି ଟେକାଟେକି କରି ଆଣି ବୈଦ୍ୟଙ୍କ ଜିମା କରିଦେଲା । ବୈଦ୍ୟ ପୁଣି କହିଲେ – "ତୁମେ ମଧ ରୋଗୀ ପାଖେ ରହିବା ଦରକାର ନାହିଁ । ତୁମେ ଘରକୁ ଯାଅ, ରୋଗୀ ଆମକୁ ଲାଗିଲା ।" ତେଣେ ରୋଗୀର ଅସମ୍ଭାଳ ଝାଡ଼ା ଭାସି ଯାଉଥାଏ । ବୈଦ୍ୟ ରୋଗୀର ଏ ଅବସ୍ଥା ଦେଖି ଭାବିଲେ – ଔଷଧ ଉପରେ ଔଷଧ ନ ପଡ଼ିଲେ ହଗା ଦବିବ ନାହିଁ । ଏହା ଭାବି ଶିଷ୍ୟକୁ କହିଲେ – ଆରେ ହେ ! ରୋଗୀ ଅବସ୍ଥା ତ ବଳାବଳ, ଆଉ ଚାହିଁଲେ କ'ଣ ହେବ ? ରୋଗୀ ଯେତେ ଥର ଝାଡ଼ା ଯାଇଛି, ସେତିକି ଥର ଔଷଧ ଚଢ଼ାଇବୁଟି, ଦେଖିବା ରୋଗର କେତେ ବଳ ଅଛି ? ରୋଗ ପୁଣି ହଟିବ ନାହିଁ ?

ଶିଷ୍ୟ ଗୁରୁଙ୍କ ହୁକୁମରେ ପାନକୁ ପାନ ଔଷଧ ଚଢ଼ାଇଲା । ତିନି ଚାରି ପାନରେ ରୋଗୀ ନାରାୟଣ ପାଇଗଲା । ଏହା ଦେଖି ଗୁରୁ ଶିଷ୍ୟକୁ କହିଲେ – କିରେ ଏ ତ ଏବେ ମରିଗଲା, କରିବା କ'ଣ ? ଏହା ଯେବେ ପ୍ରଘଟ ହୁଏ, ତେବେ ଆମ କଥା ସରିଯିବ, ଆମେ ଆଉ ରାଜୋଡ଼ାକୁ ଯିବା କ'ଣ ? ଏବେ ଗୋଟିଏ କଥା କର, ଚାଲ ଏହାକୁ ତୁନିତାନ ଦିହେଁଯାକ ଧରି ବଣରେ ଫିଙ୍ଗିଦେଇ ଏହି ରାତାରାତି ଚୁପଚାପ୍ ଖସିଯିବା । ନ ହେଲେ ଆମ ରୋଜଗାର ମାଟି ହୋଇଯିବ । ସେ ତ ଶିଷ୍ୟ ଲୋକ, ଉଁ କି ଚୁଁ ନ କରି ଗୁରୁଙ୍କ କଥା ଅନୁସାରେ ମଙ୍ଗିଗଲା । ଯେତେବେଳେ ମୁର୍ଦ୍ଦାର ଟେକିଲେ, ସେତେବେଳେ ଗୁରୁ କ'ଣ ଆଉ ଗୋଡ଼ଆଡୁ ଧରନ୍ତେ ? ଶିଷ୍ୟ ଧଇଲେ । ଯିମିତି ମୁର୍ଦ୍ଦାର ଟେକିଛନ୍ତି, ସେମିତି ସାଙ୍ଗେ ସାଙ୍ଗେ ମୁର୍ଦ୍ଦାର ପେଟରେ ବାକି ଯେତେ ମଳ ଥିଲା, ସେସବୁ ଭସୋକିନା ବହିଆସି ଶିଷ୍ୟ ଦିହମୁଣ୍ଡରେ ବହିଗଲା । ଶିଷ୍ୟ ବିଚରା କରିବ କ'ଣ । ପାଟିତୁଣ୍ଡ ତ କରିବ ନାହିଁ, କୌଣସି ପ୍ରକାରେ ମୁର୍ଦ୍ଦାରଟାକୁ ବଣରେ ଫିଙ୍ଗିଦେଇ ବୁହେ ମାଟି ଗୋବର ବୋଳି ହୋଇ ବୁଡ଼ିବାଡ଼ି ଗାଧୋଇ ପାଧୋଇ ଗୁରୁଙ୍କ ସାଙ୍ଗେ ରାଜୋଡ଼ା ଯିବାକୁ ବାହାରିଲା । ଗୁରୁ

ସବାରିରେ ଶୋଇକରି ଗୌଡ଼ଙ୍କୁ କହିଲେ ଦେଖ, ରାତି ଗଡ଼ାଏ ଅଛି, ମୋତେ ନିଦ ମାଡୁଛି । ତୁମେ ସବୁ ହୁଁ ହାଁ ଡ଼ାକ ନ ପକାଇ ଚୁପ୍‌ଚାପ୍ ବେଗେ ବେଗେ ଚାଲ । ପୁଣି ରାତି ପାହିଲେ ଡାକ ମାରିବ । ବେହେରା ସବୁ ସେହିପରି ଡାକ ନ ମାରି ରାତି ପାହିବାଯାଏ ଚୁପ୍‌ଚାପ୍ ଚାଲିଲେ । ରାତି ପାହିଲା ବେଳକୁ ସବାରି ଯାଇ ଦଶକୋଶ ବାଟରେ ହାଜର । ଏଣେ ଘରବାଲା ସକାଳୁ ଉଠି ରୋଗୀର ଅବସ୍ଥା ଦେଖିବାକୁ ଯାଇ ଦେଖନ୍ତି ତ, ରୋଗୀ ନାହିଁ କି ବୈଦ୍ୟ ନାହିଁ । କାନ୍ଦି ବୋବାଇ ମୁଣ୍ଡ ବାଡ଼େଇ ଖୋଜୁ ଖୋଜୁ ପଛକୁ ମୁର୍ଦ୍ଦାରଟାକୁ ବଣରୁ ପାଇଲେ । କ'ଣ କରିବେ, ବୈଦ୍ୟକୁ ଚିହ୍ନନ୍ତି ନାହିଁ, ଜାଣନ୍ତି ନାହିଁ – କପାଳ ଆଦରି ରହିଲେ । ତେଣେ ବୈଦ୍ୟ ଯିମିତି ରାଜଧାନୀରେ ପହଞ୍ଚିଗଲେ, ସେମିତି ସାଙ୍ଗେ ସାଙ୍ଗେ ରଜାଙ୍କୁ ଖବର ହୋଇଗଲା ।

ରଜା ଖବର ପାଇ ବୈଦ୍ୟଙ୍କୁ ଉଆସକୁ ଡକାଇ ଆଣି ଆଗ ରୋଗୀ କଥା କହିଲେ । ବୈଦ୍ୟ ମଧ୍ୟ ସାଙ୍ଗେ ସାଙ୍ଗେ ଶିଷ୍ୟକୁ କହିଲେ – ଆରେ ହେ, ଦି ରୋଗୀଙ୍କୁ ଦି ପୋଡ଼ା ଔଷଧ ଦେଇ ଦେ । ସେହିପରି ଉଷୁମ ପାଣି ଅନୁପାନରେ ଔଷଧ ଦିଆଗଲା । ଏଥିମଧ୍ୟରେ ବୈଦ୍ୟ ରଜାଙ୍କ ସାଙ୍ଗେ କଥାବାର୍ତ୍ତା କରୁଥା'ନ୍ତି, ଖବର ଆସିଲା – ଔଷଧ ଖାଇବାରେ ରୋଗ ବଳକା ହେଲା । ରଜା ଏ କଥା ଶୁଣି କହିଲେ – କିଓ ବୈଦ୍ୟରାଜ । ଏପରି କ'ଣ ହେଲା । ବୈଦ୍ୟ ସାଙ୍ଗେ ସାଙ୍ଗେ କହିଲେ – ମହାରାଜ ! ଉଆସରେ ଭଲ ସେବା ଶୁଶ୍ରୂଷା ହୋଇପାରି ନ ଥିବ, ସେଥିପାଇଁ ଔଷଧ ଗୁଣ କଲା ନାହିଁ । ଏବେ ସେ ରୋଗୀ ଦୁଇଜଣଙ୍କୁ ଆମ ବସାକୁ ପଠାଇ ଦିଅନ୍ତୁ । ମୁଁ ସବୁ ହାଲଚାଲ ବୁଝି ଔଷଧ ଦେବି । ରଜା ତତ୍‌କ୍ଷଣାତ୍ ମଙ୍ଗିଗଲେ । ଶିଷ୍ୟ ତ ସେଇଠାରେ ଠିଆହୋଇ ସବୁ ଶୁଣୁଥିଲା; ସେ ଦେଖିଲା ଯେ ପୁଣି ସେହିପରି ଏ ରୋଗୀକୁ ବସାକୁ ଆଣିଲାଣି, ଏ ତ ନିଶ୍ଚେ ମରିବ; ମୁଁ ତ ଶିଷ୍ୟ, ମତେ ତ ନିଶ୍ଚେ ଗୋଡ଼ଆଡୁ ଧରିବାକୁ କହିବ; ମୁଁ ଆଉ ଗୁହସ୍ନାନ ହୋଇପାରିବି ନାହିଁ । ଏହା ବିଚାରି ଶିଷ୍ୟ କହିଲା – ହେ ଗୁରୁ । ମୁଁ ଆଉ ଗୋଡ଼ଆଡ଼ ଧରିବି ନାହିଁ ।

ଏହା ଶୁଣି ରଜା କହିଲେ କ'ଣ, କ'ଣ ଗୋଡ଼ଆଡ଼ ଧରିବ ନାହିଁ କ'ଣ ? ଶିଷ୍ୟ ମୁହଁରୁ ତ ଏକଥା ବାହାରି ପଡ଼ିଛି, ସେ ଆଉ ଯାଏ କୁଆଡ଼େ ? ସେ ଯେତେ ବାରାବାରି କଲେ ସୁଦ୍ଧା ରଜା ସେକଥା ନ ଛାଡ଼ନ୍ତି । ପଛକୁ ଶିଷ୍ୟ ନାଚାର ହୋଇ ବାଟ ହଇଜା ରୋଗୀ କଥା କହିଲା – ଆଜ୍ଞା, ବାଟରେ ଏହିପରି ଗୋଟେ ହଇଜା ରୋଗୀକି ଔଷଧ ଦେବାରେ ତା'ର ଅଧିକ ହେବାରୁ ତାକୁ ବସାକୁ ଆଣିଲୁ; ପୁଣି ଔଷଧ ଦେବାରେ ସେ ମରିଗଲା । ମୁର୍ଦ୍ଦାର ଉଠାଇଲା ବେଳକୁ ମୁଁ ତ ଶିଷ୍ୟ; ମୋରି ଭାଗ୍ୟରେ ଗୋଡ଼ଆଡ଼ ଧରିବା ପଡ଼ିଲା । ଆଜ୍ଞା ! ଯିମିତି ମୁଁ ତାକୁ ଉଠାଇଛି, ସିମିତି ସାଙ୍ଗେ ସାଙ୍ଗେ ଗୁହସ୍ନାନ ହୋଇଗଲି । ଏ ତ ଏବେ ସିମିତି ହେଲାଣି, ମୋରି ଉପରେ ତ ପୁଣି ଗୋଡ଼ଆଡ଼ ପଡ଼ିବ, ସେଇଥିପାଇଁ ମୁଁ ଏକଥା କହିଲି । ରାଜା ଯହୁଁ ଏକଥା ଶୁଣିଲେ; ତହୁଁ ସଙ୍ଗେ ସଙ୍ଗେ କହିଲେ – ହେଁ, ତେବେ ଆରେ । କିଏ ଅଛରେ ? ଏ ବୈଦ୍ୟକୁ ଚାବୁକ ମାରି ମାରି ରାଜ୍ୟ ପାର କରି ଦେଇଆସ । ସଙ୍ଗେ ସଙ୍ଗେ ବୈଦ୍ୟ ପିଠିରେ ହେଲା ଚାବୁକ ମାଡ଼ । ପିଠି ଫାଟିଯାଇ ରକ୍ତ ଫସ୍‌ଫସ୍ ବାହାରି ଯାଉଥାଏ । ତାକୁ ଏହିପରି ମାରି ରାଜ୍ୟ ପାରି କରିଦେଲେ । ବିଚରା ପିଠିରୁ ଘା' ଶୁଖୁ ଶୁଖୁ ଚାରିମାସ ବିତିଗଲା । ପିଠିରୁ ଛାଲଟେ ଛାଡ଼ିଗଲା । ଏତକ ଯହୁଁ ହୋଇଗଲା, ପରବୋଲା ସମିତି ମୁଣି ଫୁଣି ଫିଙ୍ଗିଦେଇ ଆଉ ବୈଦ୍ୟବୃତ୍ତି କରିବ ନାହିଁ ବୋଲି ନିୟମ କଲା । ସେହିଦିନଠାରୁ ତା' ବୈଦ୍ୟବୃତ୍ତି ଗଲା । ସେ ସେହିଦିନଠାରୁ ବୁଝିଲା ଯେ ବୈଦ୍ୟ ହବା ସହଜ କଥା ନୁହେଁ । କିଛି ନ ଜାଣି ନ ଶୁଣି ନ ପଢ଼ି ବୈଦ୍ୟବୃତ୍ତି କଲେ ପଛକୁ ଏହିପରି ଦଣ୍ଡ ଭୋଗିବାକୁ ହୁଏ । ଏହା ଦେଖି ଆଉ ଯେତେ ଦରପାଠୁଆ, ଅଧାପାଠୁଆ, ଅପାଠୁଆ ବୈଦ୍ୟ ଥିଲେ, ସେସବୁ ବୃତ୍ତି ଛାଡ଼ିଦେଲେ । ସେହିଦିନଠାରୁ ଭଲ ଭଲ ବୈଦ୍ୟ ବାହାରିଲେ ।

# ଭାଉପୁର ନିଶାପ

ଭାଉପୁର ବୋଲି ଗୋଟିଏ ରାଜ୍ୟ ଥିଲା । ସେଠାରେ ଖଗେଶ୍ୱର ବୋଲି ଜଣେ ରଜା ଥିଲେ । ଖଗେଶ୍ୱର ପ୍ରକୃତରେ ଖଗା । ଖଗେଶ୍ୱର ରଜାଙ୍କୁ ଚାହିଁ ବଗେଶ୍ୱର ମନ୍ତ୍ରୀ ମିଳିଥା'ନ୍ତି । ଖଗାକୁ ବଗା ଯେପରି ବିଧାତା ଘଟଣ । ରାଜ୍ୟର ନ୍ୟାୟ ନିଶାପ ତ ପୁଣି ରଜା ମନ୍ତ୍ରୀ ବୁଝିବେ । ଯେଉଁଦିନ ଠାରୁ ଖଗା ବଗା ଦିହେଁ ରାଜ୍ୟ ବୁଝିଲେ; ସେହିଦିନଠାରୁ ଜଣେ ଚୋରି କଲେ ଆଉ ଜଣେ ଦଣ୍ଡ ପାଇଯାଏ । କେହି ଯେବେ ଭଲ କାମ କରେ, ତେବେ ଆଉ କେହି ପୁରସ୍କାର ପାଇଯାଏ । ତାଙ୍କ ନ୍ୟାୟ ବୁଝାମଣାରେ କାହାର କପାଳ ଫାଟେ, କାହାର ବଂଶ ମରନ୍ତି, କେହି ଅବା ଶୁଖିଲାରେ ବାଳିଆ ପିଟେ, ତା'ର ତ କିଛି ଠିକଣା ନାହିଁ । ଏହିପରି କେତେ କ'ଣ ହୋଇଯାଏ ।

ଥରେ ପଞ୍ଚାଏ ଚୋର ଦିନେ ରାତିରେ ଚୋରି କରିବାକୁ ଗଲେ । ଚୋରଯାକ ବୁଝିଶୁଝି ଅନାମ ସାହୁ ମହାଜନ ଘରେ ପହଞ୍ଚିଲେ । ମହାଜନ ଘରେ ଧନଦୌଲତ କମ୍ ନୁହେଁ । ତା' ଘରଖଣ୍ଡି ଇଟାରେ ତିଆରି । ଚୋରମାନେ ରାତି ଅଧରେ ଯାଇଥା'ନ୍ତି । ସେତେବେଳକୁ ମହାଜନ ଘରର ସମସ୍ତେ ଖାଇପିଇ ଦୁଆରଘର ନିବୁଜ କରି କିଳି ନିଘୋଡ଼ ନିଦରେ ଶୋଇଥା'ନ୍ତି । ଚୋରମାନେ ବାଡ଼ିଆଡ଼, ଦାଣ୍ଡଆଡ଼ ବୁଲି ତା' ଘରେ ପଶିବାକୁ ବହୁତ ଯତ୍ନ କଲେ, ଦୁଆର ବାଟେ ପଶି ପାରିଲେ ନାହିଁ । ତାଙ୍କ ପାଖରେ ତ ସିନ୍ଧିକାଠି ଥିଲା, ସେଥିରେ ସେ ସିନ୍ଧି କଲେ । ସିନ୍ଧି କରୁ କରୁ କାନ୍ଥଟା ଅଜାଡ଼ି ହୋଇପଡ଼ିଲା । ଦୈବାତ୍ ଚୋରଙ୍କ ଭିତରୁ କାହାରି କିଛି

ଖରାପ ହୋଇନାହିଁ । ତା' ପରେ ସେମାନେ ମହାଜନ ଘରେ ପଶି ଯାହା ନବାର ତାହା ନେଲେ । ତହିଁ ଆରଦିନ ସେହି ଚୋରଯାକ ଏକମେଳ ହୋଇ ରଜାଙ୍କ ପାଖରେ ପହଞ୍ଚି ଆପତ୍ତି କଲେ, ଆଜ୍ଞା । ଚୋରି ଆମର ଜୀବିକା, ଆମେ ସବୁ ଚୋରି କଲେ ଚଳୁ । କାଲି ରାତିରେ ଅନାମ ସାହୁ ମହାଜନ ଘରକୁ ଚୋରି କରିବାକୁ ଯାଇଥିଲୁ । ସିନ୍ଧି କରୁ କରୁ କାନ୍ଥଟା ପଡ଼ିଗଲା । ଯୋଗକୁ ସିନା ଆମ ଭିତରୁ କାହାରି କିଛି ହେଲା ନାହିଁ, ନୋହିଲେ ତ ନରହତ୍ୟା ହୋଇଥା'ନ୍ତା । କାନ୍ଥଟି ଯେବେ ସେ ଦମ୍ଭିଲା କରି ଗଢ଼ିଥା'ନ୍ତା, ତେବେ କାନ୍ଥ କିଆଁ ଭାଙ୍ଗିଥା'ନ୍ତା ? ତେବେ ଏଥିପାଇଁ ଅନାମ ସାହୁ ଦୋଷୀ ହେବ କି ନାହିଁ ?

ରଜା ଚୋରଙ୍କ ଆପତ୍ତି ଶୁଣି ବଗେଶ୍ୱର ମନ୍ତ୍ରୀଙ୍କି ଚାହିଁ କହିଲେ – ହଯେ ମନ୍ତ୍ରୀ । ଏ ଚୋରଯାକ ଯାହା କହିଲେ, ଏ ତ ବୁଝିବାର କଥା । ବଗେଶ୍ୱର କହିଲେ – ନ ବୁଝିବା କେମିତି ? ନ ବୁଝିଲେ ଏ ରାଜ୍ୟ ଚଳିବ କିପରି ? ଏ ନରହତ୍ୟା ମୋକଦ୍ଦମା, ଆଖି ମୁଦି ଦେଲେ ଚଳିବ କି ? ମୁଁ କହେ – ସାଙ୍ଗେ ସାଙ୍ଗେ ଅନାମ ସାହୁକୁ ତଲବ କରି ତାକୁ ପଚରାଯାଉ, ସେ ଦୋଷୀ କି ନୁହେଁ । ସାଙ୍ଗେ ସାଙ୍ଗେ ପିଆଦା ଯାଇ ଅନାମକୁ ଧରି ଆଣିଲା । ଅନାମ ପହଞ୍ଚିବାରୁ ରଜା ପଚାରିଲେ – କିଓ ଅନାମ ! କାଲି ରାତିରେ ତୁମ ଘରେ ଚୋରି ହୋଇଥିଲା ? ଅନାମ ହଁ କଲା । ଆଚ୍ଛା ତୁମର ଯେଉଁ କାନ୍ଥରେ ସିନ୍ଧି ଗାତ ହୋଇଥିଲା, ସେ ଭଲା ଭାଙ୍ଗି ପଡ଼ିଛି ?

ଅନାମ କହିଲା – କାନ୍ଥ ଭାଙ୍ଗି ପଡ଼ିଲା, ସେଥିକି ମୋର ଦୁଃଖ ନାହିଁ । ଚୋର ମୋର ସବୁ ବୋହି ନେଇଯାଇଛନ୍ତି; ଘରେ ଆଉ ଚିରାକନା ଖଣ୍ଡେ ଛାଡ଼ି ଯାଇ ନାହାନ୍ତି । ରଜା କହିଲେ ସେ କିଛି କଥା ନୁହେଁ; ଆଜି ଧନ ଯାଇଛି, ପୁଣି କାଲିକି ହବ । ମଣିଷ ମରିଗଲେ ତ ଆଉ ଫେରିଆସିବ ନାହିଁ ? କାଲି ଏବେ ତୁମର କାନ୍ଥ ଯୋଗୁଁ ଏ ଦଶଜଣ ଯାକ ଚୋର ମରିଥା'ନ୍ତେ । ତୁମେ ଯେବେ କାନ୍ଥଟି ଦମ୍ଭ କରି ଦେଇଥା'ନ୍ତ, ତେବେ ଏତେଦୂର କଥା କାହିଁକି ଉଠିଥା'ନ୍ତା ? ଏବେ ହବ କ'ଣ ? ଏ ଅପରାଧ ଯୋଗୁଁ ତୁମକୁ ଏବେ ଶୂଳୀ ଦଣ୍ଡ ଦିଆଯିବ ।

ଅନାମ କହିଲା – ଆଜ୍ଞା, ଏଇ ବିଚାର ହେଲା ? ସେ କଲେ ଚୋରି; ମୋର ଗଲା ଧନ, ଚୋର ପାଇବେ ନାହିଁ ଦଣ୍ଡ, ମୁଁ ପାଇବି ଦଣ୍ଡ ? ରଜା କହିଲେ – ତୋର ବୁଦ୍ଧି କେତେ ଯେ ତୁ ବିଚାର ବୁଝିବୁ ? ଆରେ ଓଲୁ । ଚୋରି କରିବା ଚୋରଙ୍କର ରହିଲା କୁଆଡୁ ? ଏବେ ତୋର ଦୋଷ କି ତାଙ୍କର ଦୋଷ ବୁଝିଲୁ ତ ? ଅନାମ ଦେଖିଲା ଯେ – ରଜା ତ ବୁଝିବାକୁ ଖମ୍ବଆଳୁ, ଆଉ କାଲ ଆଗେ ମୂଳା ଚୋବାଇ ହବ କ'ଣ ? ଏବେ ଶୂଳୀରୁ ଖଲାସ ପାଇବା ବିଚାର ଦରକାର । ନ ହେଲେ ଏ ଖଗା ନିଷ୍ଟେ ଶୂଳୀରେ ଚଢ଼ାଇଦବ । ଏହା ଭାବି ଅନାମ କହିଲା – ଆଜ୍ଞା ! କାନ୍ଥ ଭାଙ୍ଗି ପଡ଼ିଲା, ଏଥିରେ ମୋର ଦୋଷ କ'ଣ ? ମୁଁ ତ କାନ୍ଥ ଦେଇ ନ ଥିଲି, ମିସ୍ତ୍ରୀ ଦେଇଥିଲେ । ମିସ୍ତ୍ରୀ ଦୋଷୀ ନ ହୋଇ ମୁଁ କିପରି ଦୋଷୀ ହେବି ?

ରଜା ଏହା ଶୁଣି ବଗା ମନ୍ତ୍ରୀଙ୍କୁ ଚାହିଁ କହିଲେ – ହୟେ ମନ୍ତ୍ରୀ । ସତ କଥା ତ, ଏଥିରେ ଅନାମର ତ କିଛି ଦୋଷ ହେଉନାହିଁ, ତେବେ ମିସ୍ତ୍ରୀଙ୍କି ତଲବ କର । ସାଙ୍ଗେ ସାଙ୍ଗେ ମିସ୍ତ୍ରୀଙ୍କୁ ତଲବ କରାଗଲା । ମିସ୍ତ୍ରୀମାନେ ପହଞ୍ଚିବାରୁ ପଚରାଗଲା – ତୁମେ ସବୁ ଅନାମ ସାହୁ କାନ୍ଥ ଗଢ଼ିଥିଲ ? ମିସ୍ତ୍ରୀମାନେ ଏସବୁ ଜାଣି ନ ଥିଲେ, ତେଣୁ କାରଣ ପଚାରିବାରୁ କୁହାଗଲା – ତୁମେ ସବୁ କାନ୍ଥ ଅଦମ୍ଭ କରି ଗଢ଼ିଥିଲ । ଏ ଚୋରମାନେ ସିନ୍ଧି କଲାବେଳେ ସେ ଭାଙ୍ଗିପଡ଼ିଲା । ଯେବେ ମଣିଷ ମରିଥା'ନ୍ତେ, ତେବେ ନରହତ୍ୟା ହୋଇଥା'ନ୍ତା କି ନା ?

ମିସ୍ତ୍ରୀମାନେ ରଜାଙ୍କ ବୁଦ୍ଧି ବିଚାର ସବୁ ବୁଝି ନେଇ କହିଲେ – ଆଜ୍ଞା ! ହଁ ଆମେ ଦଣ୍ଡ ପା'ନ୍ତୁ; କିନ୍ତୁ ଆମର ଏଥିରେ ଦୋଷ ନାହିଁ । କାହିଁକି ନା, ଆମେ କାନ୍ଥ ଦେବାବେଳେ ଛାମୁଙ୍କ ମାହାରୀମାନେ ସେହି ବାଟ ଦେଇ ଯିବାରୁ ଆମେ ତାଙ୍କ ଅଳଙ୍କାର ଶବ୍ଦ ଶୁଣି ତାଙ୍କୁ ଟିକିଏ ଚାହିଁ ଦେଇଛୁ, ସେତିକିବେଳେ କାନ୍ଥ ଦିହରେ ଦରଜଗମ ରହି ଯାଇଥିଲେ ରହି ଯାଇଥିବ । ମାହାରୀମାନେ ଯେବେ ସେ ବାଟରେ ଯାଇ ନ ଥା'ନ୍ତେ, ତେବେ ଆମେ କାହିଁକି ପଛକୁ ଚାହିଥା'ନ୍ତୁ ?

ରଜା କହିଲେ – ସତ କଥା, ଏଥିରେ ତ ୟାଙ୍କର କିଛି ଦୋଷ ନାହିଁ । ଦୋଷ ମାହାରୀଙ୍କର । ତେବେ ତାଙ୍କୁ ତଲବ କରାଯାଉ । ତଲବ ଗଲା, ମାହାରୀ ଆସିଲେ, ରଜା ମୋକଦ୍ଦମାର ସବୁ ହାଲ ତାଙ୍କୁ ବୁଝାଇଦେଲେ । ଶେଷରେ କହିଲେ – ତୁମେ ସବୁ ଦେଖୁଛ, କାନ୍ଥ ଦିଆ ହେଉଛି, ସେ ବାଟରେ ଯିବା ମୂଳରୁ ଭୁଲ ହୋଇଛି । ଯେବେ ଗଲ, ଝମର ଝମର ହୋଇଗଲ କାହିଁକି ? ତୁମ ଝମର ଝମର ଶବଦ ଶୁଣିବାରୁ ସିନା ମିସ୍ତ୍ରୀମାନେ ପଛକୁ ଚାହିଁଲେ, ନୋହିଲେ ସେ କିଆଁ ପଛକୁ ଚାହାନ୍ତେ, କାହିଁକି ବା କାନ୍ଥ ଦରଜଗମ ହୁଅନ୍ତା । ତୁମରି ଦୋଷରୁ କାନ୍ଥ ପଡ଼ିଲା, ମଣିଷ ମରିବା ଆଉ କେତେ ଦୂର । ଏଥିପାଇଁ ତୁମେ ଶୂଳୀ ପାଇବ ।

ମାହାରୀମାନେ ରଜାଙ୍କ ଓଲଟା ବୁଝାମଣା ଶୁଣି କହିଲେ – ଆଜ୍ଞା । ଆମେ ତ ଅଳଙ୍କାର ଗଢ଼ି ନାହୁଁ, ବଣିଆ ଯେବେ ଇମିତି ବାଜେଣି ଅଳଙ୍କାର କରି ନ ଥା'ନ୍ତା, ତେବେ ଆଉ ବାଜନ୍ତା କୁଆଡୁ । ଛାମୁ ନିଜେ ବୁଝନ୍ତୁ – ଏଥିରେ ଆମର ଦୋଷ, ନା ବଣିଆର ଦୋଷ ।

ରଜା ଯିମିତି ଏତକ ଶୁଣିଗଲେ, ସିମିତି ସାଙ୍ଗେ ସାଙ୍ଗେ କହିଲେ – କିଓ ମନ୍ତ୍ରୀ ! ଏମାନେ ଯାହା କହିଲେ, ଉଚିତ କଥା । ତେବେ ବଣିଆର ପ୍ରକୃତ ଦୋଷ । ଏବେ ବଣିଆକୁ ତଲବ ହଉ । ତଲବ ଗଲା, ବଣିଆ ଅଇଲା । ରଜା କହିଲେ – ତୁମେ ଯେବେ ବାଜେଣି ଅଳଙ୍କାର କରି ନ ଥା'ନ୍ତ, ତେବେ କିଆଁ ବାଜିଥା'ନ୍ତା । ମିସ୍ତ୍ରୀ କିଆଁ ଚାହାନ୍ତେ ? ସିନ୍ଧି କଲେ ମଧ କାନ୍ଥ କିଆଁ ଭାଜନ୍ତା ? ଭଙ୍ଗାକାନ୍ଥରେ ଯେବେ ମଣିଷ ମରିଥା'ନ୍ତେ, ତେବେ କ'ଣ ହୋଇଥା'ନ୍ତା । ମଲା ମଣିଷ ତ ଆଉ ବଞ୍ଚିଯା'ନ୍ତେ ନାହିଁ । ତେବେ ଏଥିପାଇଁ ତୁମେ ଦୋଷୀ ନ ହେବ କାହିଁକି । ଏଥିକି ତୁମେ ଶୂଳୀ ପାଇବ ।

ବଣିଆ କହିଲା – ଆଜ୍ଞା, ଛାମୁ ଏଥିରେ ତ କାହାରି ହାତ ନାହିଁ, ଯେତେବେଳେ ଦୋଷୀ ହେଲିଣି, ନିଶ୍ଚୟ ଦଣ୍ଡ ପାଇବି । ତେବେ ଗୋଟିଏ ଗୁହାରି କଣ କି, ମୁଁ ଯେଉଁ ହତିଆରରେ ବାଜେଣି ଅଳଙ୍କାର ତିଆରି କରୁଛି, ସେ ହତିଆର ତ ମୁଁ ଗଢ଼ିନାହିଁ, କମାର ଗଢ଼ିଛି । କମାର ଯେବେ

ସେମିତି ହତିଆର କରି ନ ଥା'ନ୍ତା, ତେବେ ମୁଁ କେଉଁଠୁ ବାଜେଣି ଅଳଙ୍କାର କରିପାରନ୍ତି । ଏଥିରେ ମୁଁ ଦୋଷୀ, କି କମାର ଦୋଷୀ, ଛାମୁ ବୁଝାମଣା କରି ଦେଖନ୍ତୁ ।

ରଜା ବଣିଆ କଥା ଶୁଣି ଟିକିଏ କ'ଣ ଭାବି ମନ୍ତ୍ରୀଙ୍କୁ ଚାହିଁ କହିଲେ – ମନ୍ତ୍ରୀ ! ବଣିଆ ଯାହା କହିଲା, ଶୁଣିଲ ତ । ସତରେ ଏଥିରେ ତ ବଣିଆର ଦୋଷ ଫାବୁ ନାହିଁ, ଦୋଷୀ ହଉଚି କମାର । ଦଣ୍ଡ ପାଇଲେ ପାଇବ କମାର ।

ମନ୍ତ୍ରୀ ତ ବଡ଼ ବୁଦ୍ଧିମାନ । ସେ ମଧ ଚଟକିନି କଥାଟା ବୁଝିପାରିଲେ । ସାଙ୍ଗେ ସାଙ୍ଗେ କହିଲେ – ଆଜ୍ଞା, ଛାମୁତ ସାକ୍ଷାତେ ଧର୍ମ, ଏଠାରେ କ'ଣ ଧର୍ମଟା ଆଉ ଲୁଚି ରହନ୍ତା । ଯାହା ଧର୍ମ, ତାହା ମନକୁ ବାହାରି ପଡୁଛି । ଆମେ ଯେବେ ସେତକ ବିଚାର ନ କରି ବଣିଆକୁ ଶୂଳୀ ଦେଇ ପଳାଇଥା'ନ୍ତେ, ତେବେ ଯୁଗ ଯୁଗକୁ ଆମର ନିନ୍ଦା ରହିଯାଇଥା'ନ୍ତା । ତେବେ କମାରକୁ ଡକରାଯାଉ । ସାଙ୍ଗେ ସାଙ୍ଗେ ପିଆଦା ଗଲା, କମାର ଧରା ହୋଇ ଆସିଲା ।

ରଜା କମାରକୁ କହିଲେ – କାଲି ରାତିରେ ଅନାମ ସାହୁ ଘରେ ସିନ୍ଧି ହେବା କଥା ଜାଣ ତ । ସିନ୍ଧି କରୁ କରୁ କାନ୍ଥ ପଡ଼ିଲା, ଦୈବେ ଚୋରଙ୍କ ଉପରେ ନ ପଡ଼ି ଅଳ୍ପକେ ରହିଗଲା । ନୋହିଲେ ଆଠ ଦଶ ଜଣ ମଣିଷ ମରିବାକୁ ଆଉ କେତେ ଦୂର ଥିଲା କି । ଏବେ ବୁଝାସୁଝା ହେବାରେ ତୁମରି ଉପରେ ଦୋଷ ଫାବୁଚି । ଏଥିକି ତୁମେ ଶୂଳୀ ଦଣ୍ଡ ପାଇବ ।

କମାର ବିଚରା ଏହା ଶୁଣି ଆବାକାବା ହୋଇ କହିଲା – ଆଜ୍ଞା, ଏ କି କଥା । ଚୋର କଲେ ଚୋରି, ମୁଁ ପାଇବି ପ୍ରାଣଦଣ୍ଡ । ଏ କ'ଣ ଧର୍ମ ବୁଝାମଣା ହେଲା ।

ରଜା କହିଲେ – ଆରେ ଓଲୁ । ତୁ ବାଜେଣି ଅଳଙ୍କାର ତିଆରି କରିବା ଭଳି ହତିଆର କଲୁ ବୋଲି ସିନା ବଣିଆ ବାଜେଣି ଅଳଙ୍କାର କଲା । ତାକୁ ଆମ ମାହାରୀ ପିନ୍ଧି ସେ ବାଟରେ ଯିବାରୁ ମିସ୍ତ୍ରୀମାନେ ଝୁମ୍ ଝୁମ୍ ଶବ୍ଦ ଶୁଣି ପଛକୁ ଚାହିଁଲେ, ଚାହିଁବାରୁ ସିନା କାନ୍ଥ ଦରଜଗମ

ହେଲା । ନ ହେଲେ ସିନ୍ଧି କଲାବେଳେ କାହିଁକି କାନ୍ଥ ଭାଙ୍ଗିପଡ଼ନ୍ତା ? ଏତେଦୂର କାହିଁକି କଥା ଯାଇଥା'ନ୍ତା ? ଏବେ ବୁଝିଲୁ ତ ଦୋଷ କାହାର ହେଲା ?

କମାର ଏପରି ଧର୍ମ ବିଚାର ଶୁଣି ଭାବିଲା – ରଜାକୁ ଚାହିଁ ମନ୍ତ୍ରୀ ମିଳିଛି; ଏଠାରେ କ'ଣ କିଛି ବିଚାର ଅଛି ? ଆଉ ଚାହିଁଲେ କ'ଣ ହେବ, ଏ ଦିନାରକୁ ଚାହିଁ ବୁଦ୍ଧିଟେ ନ କଲେ ହେବ ନାହିଁ । ତହୁଁ କହିଲା – ଆଜ୍ଞା ଛାମୁ ଯାହା ବୁଝିଛନ୍ତି, ସେଥିରେ ଆଉ କାହାର ତୁଣ୍ଡମୁଣ୍ଡ ଅଛି ? ମୋର ଯେତେବେଳେ ଷୋଳଅଣା ଦୋଷ ହେଲାଣି, ସେତେବେଳେ ମୁଁ ଦଣ୍ଡ ପାଇବାର ଯୋଗ୍ୟ । କ'ଣ ହେବ ଆଜ୍ଞା । ମୋର ଗୋଟିଏ ଆପତ୍ତି କରିବାକୁ ଅଛି । ଆପତ୍ତି କ'ଣ କି ଆଜ୍ଞା ! ପିଲାଦିନରୁ ଲୁହା ଆଉଟିବା, ଲୁହା ବାଡ଼େଇବା କାମ କରିବାରେ ମୋର ଦେହ ଗୋଟାପଣେ ହଲେ । ସେଇ ଅଭ୍ୟାସରୁ ମୋର ଦେହ ତ ଥୟ ହେବନାହିଁ । ଆଉ ଶୂଳୀ ଘେନିବି କିପରି ? ସେତେବେଳେ ତ ଦିହ ଥରିବ, ଯେ ଶୂଳରେ ବସି ହବ ନାହିଁ – ଆଉ ଦଣ୍ଡ ଦିଆଯିବ କିପରି ?

ରଜା ଏହା ଶୁଣି ବଗା ମନ୍ତ୍ରୀକି କହିଲେ – କିଓ ମନ୍ତ୍ରୀ । ସବୁ ଶୁଣିଲ ତ ? ଏ ତ ଏବେ ମହା ଅଡୁଆ ପଡ଼ିଲାଣି, ଏହାକୁ ଦଣ୍ଡ ଦେଇହେବ ନାହିଁ । ଏତେ ବଡ଼ ଦୋଷ ଘଟିଗଲା, କିଏ ତ ପୁଣି ଜଣେ ଦଣ୍ଡ ପାଇବ, ନ ହେଲେ କାଳ କାଳକୁ ଆମର ନିନ୍ଦା ରହିଯିବ । ତେବେ କ'ଣ କରିବା ?

ବଗେଶ୍ୱର ମନ୍ତ୍ରୀ କହିଲେ – ଆଜ୍ଞା ! ଦଣ୍ଡ ଆଉ ବନ୍ଦ ହୋଇପାରେ ? ତେବେ ଜଣେ ଥୟବାଲା କେଉଁଠୁ ଖୋଜେଇ ଆଣିଲେ ହେବ ।

ରଜା କହିଲେ – ଏ ମୋକଦ୍ଦମା ତ ବାକି ରଖିଲେ ଚଳିବ ନାହିଁ; ତୁମେ ସାଙ୍ଗେ ସାଙ୍ଗେ ଯାଇ ରାଜ୍ୟଯାକ ବୁଲି ଅସଲ ଥୟ ଦିହବାଲା ଜଣେ କାହାରିକୁ ଧରିଆଣ । ରଜାଙ୍କ ହୁକୁମରେ ବଗା ମନ୍ତ୍ରୀ ଥୟ ଦିହବାଲା ଖୋଜି ବାହାରିଲେ । ରାଜ୍ୟ ଗୋଟାକ ଯାକ ବୁଲି ବୁଲି କାହାରିକୁ ପାଇଲେ ନାହିଁ । ଯାହାକୁ ଦେଖିଲେ, ସେ ନିଜ କାମରେ ଅଥୟ । ପଛକୁ ବୁଲି

ବୁଲି କାହିଁରେ କିଛି ନ ହେବାରୁ ଗଡ଼କୁ ଫେରିଲେ । ଫେରିବା ବାଟରେ ଖଣ୍ଡେ ବଣ ପଡ଼ିଲା । ସେ ବଣରେ ଆସୁ ଆସୁ ଦେଖିଲେ – ଗୁରୁ ଶିଷ୍ୟ ଦି'ଜଣ ଗୋଟେ ଗଛ ମୂଳରେ ଆଖି ବୁଜି ଥୟ ହୋଇ ଏକ ଧ୍ୟାନରେ ବସିଛନ୍ତି, ହଲ ଚଲ କିଛି ନାହିଁ । ମନ୍ତ୍ରୀ ସେ ଦି'ଜଣଙ୍କୁ ଦେଖି ମନେ ମନେ ବଡ଼ ଖୁସି ହୋଇ ତାଙ୍କ ପାଖକୁ ଯାଇ ତାଙ୍କୁ ପଚାରିଲେ – ହୟୋ, ତୁମର ଥୟ ଦିହ ତ ? ଗୁରୁଶିଷ୍ୟ ବଗା ମନ୍ତ୍ରୀଙ୍କର ଏ ପ୍ରଶ୍ନ ଶୁଣି କାବା ହୋଇ ପଚାରିଲେ – କିଓ । ଥୟ ଦିହ କ'ଣ ? ତାହା ଶୁଣି ମନ୍ତ୍ରୀ ଚୋରଙ୍କ କଥା ସବୁ କହିଲେ । ପଛକୁ କହିଲେ – ସେ ଯାହାହେଲା ହେଲା, ଏବେ କମାର ଉପରେ ପୂରା ଦୋଷ ଲାଗିଲା । ସେ ଫାଶି ଶୂଳୀ ଘେନିବାର କଥା । ହେଲେ କ'ଣ ହେବ; କମାରର ଥୟ ଦିହ ନୁହେଁ । ସେହି ହେତୁରୁ ଶୂଳୀରେ ବସିଲାବେଳକୁ ହଲଚଲ ହେବ। ସେଥିରୁ ତାକୁ ଶୂଳୀ ଦିଆଯାଇ ପାରିବ ନାହିଁ । କିଏ ତ ପୁଣି ସେ ଦୋଷ ପାଇଁ ଶୂଳୀ ଘେନିବ । ସେଥିପାଇଁ ଥୟ ଦିହବାଲା ଖୋଜା ପଡ଼ିଛି ।

ଗୁରୁଶିଷ୍ୟ ଦିହେଁ ବଗା ମନ୍ତ୍ରୀଠାରୁ ସୃଷ୍ଟିଛଡ଼ା ବୁଝାମଣା ଶୁଣି ବୁଝିଲେ ଯେ ଏ ରାଜ୍ୟର ରଜା ଓଲୁଙ୍କ ବୁକୁଚାବୁହା । ତାଙ୍କୁ ଚାହିଁ ମନ୍ତ୍ରୀ ମଧ୍ୟ ମିଳିଛି । ଯେ ଇଚ୍ଛା ସେ ରଜା ମନ୍ତ୍ରୀଙ୍କୁ ଚିତା କାଟିପାରେ । ବୁଦ୍ଧି ଖରଚ କଲେ ଏ ଶୂଳୀ ଘେନିବାରେ ଲାଭ ଛଡ଼ା କ୍ଷତି ନାହିଁ । ଏହା ବିଚାରି ଗୁରୁଶିଷ୍ୟ ଦିହେଁ କହିଲେ – ହଁ, ଆମେ ଦିହେଁ ଥୟ ଦିହବାଲା, ତେବେ ଗୋଟିଏ କଥା ଏହି ଯେ, ଯେବେ ଆମ ଦିହିଙ୍କୁ ଶୂଳୀ ଦେବ, ତେବେ ଆମେ ମଙ୍ଗିବୁ, ନ ହେଲେ ମଙ୍ଗିବୁ ନାହିଁ ।

ବଗା କହିଲେ – ହେଲା ଏବେ, ନ ହେଲେ ତ ଦୋଷ ପାଇଁ କାହାକୁ ଦଣ୍ଡ ଦିଆଯାଇ ପାରିବ ନାହିଁ । ପଛକୁ ମୋକଦ୍ଦମା ତୁଟି ପାରିବ ନାହିଁ ।

ତା'ପରେ ଗୁରୁଶିଷ୍ୟ ଦୁହେଁ ବଗା ମନ୍ତ୍ରୀ ସଙ୍ଗେ ରଜାଘରକୁ ଚାଲିଲେ । ବାଟରେ ଯାଉ ଯାଉ ଗୁରୁଶିଷ୍ୟ ଦିହେଁ ଗୁପ୍ତରୂପେ ଗୋଟେ ପାଞ୍ଚ ପାଞ୍ଚିଲେ – ଶୂଳୀ ଘେନିବା ବେଳକୁ ମୁଁ କହିବି – ମୁଁ ଆଗ ଶୂଳୀ

ଘେନିବି, ତୁ କହିବୁ ମୁଁ ଆଗ ଶୂଳୀ ଘେନିବି, ଏପରି ବାଦ ଲଗାଇବା । ଏହା ଦେଖି ରଜା ତ କାରଣ ପଚାରିବ । ସେତେବେଳେ କହିବା, ବାଦର କାରଣ କ'ଣ କି, ଯେ ଆଗ ଶୂଳୀ ଘେନିବ; ସେ ରଜା ହେବ, ଯେ ପଛେ ଶୂଳୀ ଘେନିବ ସେ ମନ୍ତ୍ରୀ ହବ । ଏଥିପାଇଁ ଆମ ଦିହିଙ୍କର ବାଦ ଲାଗିଛି । ଏତିକିରେ ଆମ ଫଳ ଆମେ ପାଇଯିବା ।

ମନ୍ତ୍ରୀ ଥୟ ଦିହବାଲା ଗୁରୁଶିଷ୍ୟଙ୍କୁ ନେଇ ରଜାଙ୍କ ପାଖରେ ହାବୁଡ଼େଇବାରେ ସାଙ୍ଗେ ସାଙ୍ଗେ ଶୂଳୀ ଦବାର ବରାଦ ହୋଇଗଲା । ଗୁରୁଶିଷ୍ୟ ଦିହେଁ ଯେମିତି ଶୂଳୀ ପାଖରେ ଠିଆହେଲେ ସେମିତି ଗୁରୁ କହିଲେ – ଆଜ୍ଞା, ମୁଁ ଗୁରୁ ମୋତେ ଆଗ ଶୂଳୀ ଦିଅ । ଶିଷ୍ୟ କହିଲା – ମୁଁ ସାନ ଥାଉ ଥାଉ ବଡ଼ କିମିତି ଆଗ ଶୂଳୀ ଘେନିବ ? ଗୁରୁ କହିଲେ, ଗୁରୁ ଆଉ ଶୂଳୀ ନ ଘେନି ଶିଷ୍ୟ ଘେନିବ । ତୁ ପିଲାଟେ, ତୋ କଥା ପଛ କଥା । ଏହିପରି ଦିହେଁ ବାଡ଼ିଆବାଡ଼ି ହେବାରୁ ରାଜା କାବା ହୋଇ ପଚାରିଲେ କିଓ, ଶୂଳୀ ଘେନିଲେ ତ ମରିବ, ମରିବାକୁ ଏତେ ଆଦର କାହିଁକି ? ଗୁରୁ କହିଲେ – ଆଜ୍ଞା ! ସେକଥା ଆମେ ଜାଣୁ, ଆପଣଙ୍କର ଶୁଣିବା ଦରକାର ନାହିଁ । ମୋତେ ଆଗ ଶୂଳୀ ଦିଅନ୍ତୁ । ରଜା ଏକଥା ଶୁଣି ଆଉରି କାବା ହୋଇ ପଚାରିଲେ – ଆଚ୍ଛା, ଆଗ ପଛ କଥା ତ ଆମେ ବୁଝିବା, ତୁମେ ଆଗ କାରଣ କହ, ନଇଲେ ଶୂଳୀ ପାଇପାରିବ ନାହିଁ । ଗୁରୁ କହିଲେ – ଆପଣଙ୍କର ତ କେହି ଶୂଳୀ ଘେନିଲେ ଗଲା, କାରଣ ଜାଣି କ'ଣ ହେବ ? ଏତେ କହିଲା ଉତ୍ତାରୁ କାରଣ ଶୁଣିବାକୁ ରଜାଙ୍କର ଆଗ୍ରହ ବଢ଼ିଗଲା । ତେଣୁ ସେ କାରଣ କହିବାକୁ ଏକାଜିଦ୍ ଧଇଲେ । ଗୁରୁ ରଜାଙ୍କର ଆଗ୍ରହ ବଢ଼ିଯିବାର ଦେଖି କହିଲେ – ଆଜ୍ଞା, ତେବେ ନ କହିଲେ କ'ଣ ଚଳିବ ନାହିଁ ? ହଉ ତେବେ ଶୁଣନ୍ତୁ । କଥା କ'ଣ କି, ଯେ ଆଗ ଶୂଳୀ ଘେନିବ, ସେ ରଜା ହେବ, ଯେ ପରେ ଶୂଳୀ ଘେନିବ ସେ ମନ୍ତ୍ରୀ ହେବ । ତେବେ ମୁଁ ଗୁରୁ ଥାଉ ଥାଉ ଶିଷ୍ୟ କେମିତି ଆଗ ଶୂଳୀ ଘେନିବ ? ଛାମୁ ଏକଥା ନିଜେ ବୁଝି ଦିଅନ୍ତୁ ।

ଛାମୁଁ ଆଉ ଏକଥା ବୁଝିବେ କ'ଣ; ଗୁରୁଙ୍କ କଥାରେ ତାଙ୍କ ମୁଣ୍ଡକୁ ତେନ୍ତୁଳିଆ ବିଛା କାମୁଡ଼ିଲାଣି । କାହିଁକି ନା – ଯେ ଶୂଳୀ ଘେନିବ, ସେ

ତ ରଜା ହେବ, ଯେ କ'ଣ କରିବେ ? ଏଇ ଭାବନାରେ ପଡ଼ି ମନ୍ତ୍ରୀଙ୍କି କହିଲେ – ହୟେ ମନ୍ତ୍ରୀ ! କଥା ଶୁଣିଲଟିକି ? ପଛକୁ ଆମ ରାଜୁତି, ତୁମ ମନ୍ତ୍ରୀପଣିଆ ଯିବ ସିନା ! ତେବେ କ'ଣ କରିବା ? ୟାଙ୍କୁ ଦଣ୍ଡ ଦେଲେ ତ ଏପରି ଅସୁବିଧା; ଦଣ୍ଡ ନ ଦେଲେ ତ ମୋକଦ୍ଦମା ତୁଟୁ ନାହିଁ । ସେଇଥିରୁ ମୁଁ ଭାବୁଛି – ଆଗପଛ ହୋଇ ଆମେ ଦିହେଁ ଶୂଳୀ ଘେନି ପକାଇଲେ ମୋକଦ୍ଦମା ତୁଟିଯା'ନ୍ତା ଆଉ ଆମେ ଦିହେଁ ଯିମିତି ରଜା ମନ୍ତ୍ରୀ ଅଛେ ସେମିତି ରଜା ମନ୍ତ୍ରୀ ରହନ୍ତେ ।

ମନ୍ତ୍ରୀ କହିଲେ – ଆଜ୍ଞା, ନ ହେଲେ କି ରଜା ବୋଲି ସିନା ଛାମୁଙ୍କୁ ଇମିତି ବୁଦ୍ଧି ଆସିଲା ? ସବୁ ଲୋକେ ଏଡ଼େ ବଡ଼ ବୁଦ୍ଧି କାହୁଁ ପାଇବେ । ତେବେ ଆଉ ବିଳମ୍ବ ନ କରି ସେଇ କଥା କରନ୍ତୁ।

ରଜା ମନ୍ତ୍ରୀ ବୁଦ୍ଧି ବଳରେ ଏହି କଥା ସ୍ଥିର କରି ଆଗ ରଜା, ତା'ପରେ ମନ୍ତ୍ରୀ ଶୂଳୀରେ ବସିଲେ । ରଜା ମନ୍ତ୍ରୀଙ୍କର ଏପରି ମୃତ୍ୟୁ ଖବର ରାଜ୍ୟର ଚାରିଆଡ଼େ ଖେଳିଯିବାରେ ଲୋକେ ଏପରି ମରିବାର କାରଣ ବୁଝିଲେ । ରାଜ୍ୟର ପ୍ରଜାମାନେ ଗୁରୁଶିଷ୍ୟଙ୍କର ବୁଦ୍ଧିରେ ଏପରି ହୋଇଥିବାର ଜାଣି ଗୁରୁଶିଷ୍ୟଙ୍କୁ ଭାରି ପ୍ରଶଂସା କଲେ । ଖଗା ରଜାକୁ ବଗା ମନ୍ତ୍ରୀ ମିଳି ରାଜ୍ୟ ଚଳାଇବାରେ ପ୍ରଜାମାନଙ୍କର ବହୁତ ଦୁଃଖ ହେଉଥିଲା । ଏବେ ମରିଯିବାରୁ ରାଜ୍ୟ ଉଶ୍ୱାସ ହେଲା । କପାଳକୁ ଶାନ୍ତ ପଣ୍ଡିତ, ବୁଦ୍ଧିଆ ଗୁରୁ ଶିଷ୍ୟ ପାଇଲେ । ସବୁ ପ୍ରଜା ମିଳି ଗୁରୁଙ୍କୁ ରଜା, ଆଉ ଶିଷ୍ୟଙ୍କୁ ମନ୍ତ୍ରୀ କରିଦେଲେ । ତେଣିକି ରାଜ୍ୟ ଶାନ୍ତିରେ ଚଳିଲା । ପ୍ରଜାସବୁ ସୁଖରେ ରହିଲେ ।

# ଚତୁର ଛେଳି

ଗୋଟିଏ ବଣରେ ଗୋଟିଏ ଛେଳି ଚରୁଥିଲା । ଦୈବେ ଗୋଟିଏ ମହାବଳ ବାଘ ତା' ଆଡ଼କୁ ଆସିଲା । ତା'ର ଛେଳିକି ଦେଖି ତାକୁ ଖାଇବ ବୋଲି ମନେ ମନେ ଖୁସି ହୋଇ ଫୁଲି ଫାଲି ଆସିଥାଏ । ଏଣେ ଛେଳି ବାଘକୁ ଦେଖି ଭାବିଲା – ଆଜି ବାଘ ହାବୁଡ଼େ ପଡ଼ିଲିଣି; ବଞ୍ଚିବା କଥା ସେମିତି ସେମିତି । ତେବେ ଏଥିକି ଉପାୟ କ'ଣ ? ଆଚ୍ଛା, ଗୋଟେ ତରତୁରା ଲଗାଏ । ଯେବେ ବଞ୍ଚିଗଲି ତ ବଞ୍ଚିଗଲି, ନ ହେଲେ ତ ମତେ ନିଶ୍ଚେ ଖାଇବ । ଏହା ଭାବି ଭାବି ଗୋଟେ ଢିପ ଉପରକୁ ଯାଇ ଆଗ ଗୋଡ଼ ଯୋଡ଼ାକ ଗୋଟେ ବୁଦା ଉପରେ ଟେକି କରି ରଖି ଆଖି ତରାଟି ବାଘକୁ ଚାହିଁ ଠିଆ ହେଲା । ବାଘ ଛେଳିର ଏ ଢଙ୍ଗ ଦେଖି କାବା ହୋଇ ଠିଆ ହୋଇ ଭାବିଲା – କିରେ; ଏ କ'ଣ ତେବେ ଛେଳି ନୁହେଁ ? ଯେବେ ଛେଳି ହୋଇଥା'ନ୍ତା, ତେବେ ମୋତେ ଦେଖି ତ ଥରହର କମ୍ପୁଥା'ନ୍ତା । ଏ ତ ଓଲଟି କ'ଣ ମୁରାଟ ଦେଖାଇ ଦମ୍ଭରେ ଠିଆ ହେଉଛି । ଆଚ୍ଛା, ଟିକିଏ ପାଖକୁ ଯାଇ ପଚାରେ । ବାଘ ଛେଳି ପାଖକୁ ଯାଇ ପଚାରିଲା – କିଏ, ତୁମେ ଇମିତି ଚାହୁଁଛ ? ଛେଳି କହିଲା – ଆମେ ଏମିତି ଚାହୁଁ । ବାଘ ପଚାରିଲା, ତୁମେ ଖାଅ କ'ଣ ? ଛେଳି କହିଲା – ଆମର ତିନି ଧୂପ ହୁଏ । ଆମର ପହିଲି ଧୂପରେ ଗୁଡ଼ିଏ କୋମଳ ତୃଣ ବଲ୍ଲଭ ହୁଏ । ଦି' ପହର ଧୂପରେ ଆମେ ଗୋଟିଏ ବାଘ ଆହାର କରୁ । ସଞ୍ଜ ଧୂପରେ ତିନୋଟି ବାଘ, ଆଉ ଗୋଟିଏ ସିଂହ ଭୋଜନ କରୁ ।

ବାଘ ତ ଛେଳିର ମୁରାଟରେ ଡରି ଯାଇଥିଲା, ଯହୁଁ ଏତକ ଶୁଣିଲା, ବାଘ ଆଉ ରହେଟିକି । ଏକ ମୁହାଁ ହୋଇ ଚମ୍ପଟ କଲା । ଗୋଟେ ଜାଗାରେ ଗୋଟିଏ ବିଲୁଆ ବୁଲୁଥିଲା । ସେ ବାଘର ଏ ଦୌଡ଼ ଦେଖି

ବାଘକୁ ଡାକି ପଚାରିଲା, "କିରେ ଭାଇ ! ତୁ କାହିଁକି ଇମିତି ଦୌଡୁଛୁ ।" ବାଘ କହିଲା, "ଭାଇ ! କ'ଣ କହିବି । ଆଜି ତ ମରିଥା'ନ୍ତି ।" ବିଲୁଆ କହିଲା, "କିରେ କାହିଁକି ?" ବାଘ କହିଲା, "ଭାଇ ମତେ ଏତେ ବୟସ ହେଲାଣି, ମୁଁ ଆଜି ଯାହା ଦେଖିଲି; ଇମିତି ଜୀବ ମୋ ଜୀବନରେ ଦେଖି ନ ଥିଲି ।" ବିଲୁଆ କହିଲା, "କ'ଣ ଦେଖିଲୁ କହ ।" ବାଘ କହିଲା, "ଜାଣିଲୁ, ଆଜି ବୁଲୁ ବୁଲୁ ଗୋଟେ ନୂଆ ଜୀବ ଦେଖିଲି । ସେ ଛେଳି ପରି ଦିଶୁଚି । ମୁଁ ଛେଳି ବୋଲି ବିଚାରି ତା' ପାଖକୁ ଗଲାବେଳକୁ ସେ ଆଖି କାନ ତରାଟି ମତେ ତ ରଟମଟ କରି ଚାହିଁଲା । ତହୁଁ ମୋ ମନ ଟିକିଏ ଦବିଲା । ତା'ପରେ ହୁବ କରି ତା' ପାଖକୁ ଯାଇ ପଚାରିଲି, 'କିଏ ? ତୁମେ ଇମିତି ଚାହୁଁଛ ।' ତହୁଁ ସେ କହିଲା, 'ଆମେ ଇମିତି ଚାହୁଁ ।' ତା'ପରେ ମୋ କଥା ମୁଁ ପଚାରିଲି, 'ତୁମେ କ'ଣ ଖାଅ ।' ସେ କହିଲା – ଆମର ତିନି ଧୂପ । ଆମର ସକାଳ ଧୂପରେ ଗୁଡ଼ିଏ କୋମଳ ତୃଣ ବଲ୍ଲଭ ହୁଏ, ଦି' ପହର ଧୂପରେ ଗୋଟିଏ ବାଘ ଆହାର କରୁ । ସଞ୍ଜ ଧୂପରେ ତିନୋଟି ବାଘ ଆଉ ଗୋଟିଏ ସିଂହ ଭୋଜନ କରୁ । ଏହା ଯହୁଁ ଶୁଣିଲି, ମୋର ତ ହଡ଼କମ୍ପ ହେଲା, ପଳାଇ ଆସୁ ଆସୁ ବାଟ ଅଣ୍ଟିଲା ନାହିଁ ।'

ବିଲୁଆ ବାଘର ଏକଥା ଶୁଣି ହସି ହସି କହିଲା ତୁ ଜଙ୍ଗଲର ମାଲିକ ହୋଇ ତୋର ଏତେ ଡର ? ସେ ଏମିତି କି ଜୀବଟେ ଯେ ତାକୁ ଦେଖି ତୋତେ ପୁଣି ଡର ମାଡୁଛି । ଆଚ୍ଛା, ମୋ ସାଙ୍ଗରେ ଆସ, ଦୁହେଁ ଯାଇ ଦେଖିବା, ସେ କି ଜୀବ । ବାଘ କହିଲା – 'ନାହିଁ ଭାଇ ମୋ କଥା ପଟିବ ନାହିଁ । ତୋର ଯେବେ ମରିବାକୁ ଭୟ ନାହିଁ, ତେବେ ତୁ ଯା, ମୁଁ ଯିବି ନାହିଁ ।' ବିଲୁଆ କହିଲା – 'ଆଚ୍ଛା, ତୋତେ ଯେବେ ଏତେ ଭୟ ଲାଗୁଛି, ତେବେ ମୋ ଲାଙ୍ଗୁଡ଼ରେ ତୋ ଲାଙ୍ଗୁଡ଼ ବାନ୍ଧି ଦେବା । ମୁଁ ଆଗରେ ଚାଲିବି, ତୁ ମୋ ପଛେ ପଛେ ଯିବୁ । ଆଉ ଭୟ କ'ଣ ? ବିଲୁଆ ଏତେ ବୁଝାଶୁଝା କରିବାରୁ ବାଘ ଥୋକ ମୋଡ଼ ହୋଇ ମଙ୍ଗିଲା । ତହୁଁ ଦୁହିଁଙ୍କ ଲାଙ୍ଗୁଡ଼ ବନ୍ଧା ହେଲା । ବିଲୁଆ ଆଗେ ଆଗେ ଚାଲିଲା, ବାଘ ତା' ପଛେ ପଛେ ଗଲା । ବାଘ ବିଲୁଆ ଦୁହେଁ ଛେଳିର ପାଖାପାଖି ହେବାରୁ ଛେଳି

ଚାହିଁ ଦେଇ ଭାବିଲା – ପୁଣି ତ ସେହି ବାଘ ଆସିଲାଣି, ତା' ସାଙ୍ଗରେ ପୁଣି ବିଲୁଆ ଅଛି । ବିଲୁଆଗୁଡ଼ାକ ତ ବୁଦ୍ଧିମାନ, ନିଶ୍ଚେ ଏଥର ମଲି । ଏଥର ବାଘ ହାବୁଡ଼ରୁ ଖସିବା ସହଜ ନୁହେଁ । ତେବେ ଗୋଟେ ତରତୁରା ମାରି ଦେଖେ । ଯେବେ ଖସିଗଲି, ତ ଖସିଗଲି, ନ ହେଲେ ତ ନିଶ୍ଚେ ଖାଇବ । ଛେଳି ଏ କଥା ଭାବି ପୁଣି ଆଗଥର ପରି ଗୋଟେ କୁଦ ଉପରେ ଠିଆ ହୋଇ ଆଗ ଗୋଡ଼ ଯୋଡ଼ାକ ଗୋଟିଏ ଗଛ ଦେହରେ ଟେକି ରଖି ଆଖି ତରାଟି ବାଘ ବିଲୁଆ ଆଡ଼କୁ ଚାହିଁଲା ।

ତା'ପରେ ବିଲୁଆକୁ କହିଲା – କିରେ, ତୋ ବାପ ଥିଲା ଯେ ରାତି ନ ପାହୁଁଣୁ ପୁଞ୍ଜେ ପୁଞ୍ଜେ ବାଘ ଲାଙ୍ଗୁଡ଼ରେ ବାନ୍ଧି ହାଜର କରୁଥିଲା । ତୁ ଏତେବେଳକୁ ଗୋଟିଏ ବାଘ ବାନ୍ଧିକରି ଆଣୁଛୁ । ଆଚ୍ଛା, ତୋ ଖବର ମୁଁ ବୁଝୁଛି । ବାଘ ଏତକ ଯହୁଁ ଶୁଣିଲା, ତହୁଁ ଭୟରେ ତା' ଛାତି ଧଡ଼ ଧଡ଼ ହେଲା । ଦେଖିଲା ଯେ, ଯେଉଁ ବିଲୁଆ ଦମ୍ଭ ଦେଖାଇ ମୋତେ ଆଣିଛି; ତା' ଉପରେ ତ ୟାର ଇମିତି ହାକିମି, ଏ ମୋତେ କ'ଣ ରଖିବ । ପୁଣି ଯେବେ ବିଲୁଆ ଆପଣା ଦେଏଣା ହାଜର କରିବାକୁ ମୋତେ ପଟାପଟି କରି ହାଜର କରୁଥିବ, ତେବେ ତ ମଲି । ଆଉ ଏଠାରେ ରହିବି କ'ଣ ବୋଲି ମାଇଲା ଡିଆଁ । ଏଣେ ବାଘ ଲାଙ୍ଗୁଡ଼ରେ ତ ବିଲୁଆ ଲାଙ୍ଗୁଡ଼ ବନ୍ଧା । ବାଘ ବଳ ତ ବିଲୁଆ ବଳଠାରୁ ସରସ । ବାଘ ଯହୁଁ ଦୌଡ଼ିଲା, ଆଉ ବିଲୁଆ ସମ୍ଭଳା ପଡ଼େଟିକି । ବିଲୁଆ ବିଚରା କଣ୍ଟାଝଣ୍ଟାରେ ଝିଙ୍କା ଓଟରା ହୋଇ ଫଡ଼ା ଫଡ଼ା ହୋଇ ମରିଗଲା । ଛେଳି ନିଜ ଚାଲାକିରେ ରକ୍ଷା ପାଇ ଚରିବୁଲି ସନ୍ଧ୍ୟା ବେଳକୁ ଗାଁ' ଭିତରକୁ ଗଲା ।

"ବୁଦ୍ଧି ଯାହାର ଅଛି, କେହି ତା'ର କିଛି କରିପାରିବେ ନାହିଁ ।"

# ଅଭିମତ

ନିଷ୍ଠାପର ସାହିତ୍ୟସେବୀ, ପୁରୀ ଜିଲା ସ୍କୁଲର ହେଡ୍‌ମାଷ୍ଟର, ରାୟସାହେବ ଶ୍ରୀଯୁକ୍ତ ବାବୁ ଆନନ୍ଦଚନ୍ଦ୍ର ପତି, ବି.ଏ.–

ଶ୍ରୀମାନ୍ ପଣ୍ଡିତ ଜଗନ୍ନାଥ ରଥ କାବ୍ୟତୀର୍ଥ କର୍ତ୍ତୃକ ପ୍ରଣୀତ "ଶ୍ରଦ୍ଧାବୀର" (ଧ୍ରୁବ) ନାମକ ପୁସ୍ତକର ପାଣ୍ଡୁଲିପି ଆମୂଳ ମନୋଯୋଗପୂର୍ବକ ପାଠକରି ପରମ ପ୍ରୀତି ଲାଭ କରିଅଛି । ପୁସ୍ତକଟିର ବିଷୟ ଅତୀବ ଉପାଦେୟ । ଧ୍ରୁବ ପୁରାଣପ୍ରସିଦ୍ଧ ମହାପୁରୁଷ । ତାଙ୍କର ନାମ ସମଗ୍ର ଭାରତବର୍ଷରେ ବିଶେଷତଃ ଉତ୍କଳର ଘରେ ଘରେ ସୁପରିଚିତ ଓ ସୁପୂଜିତ ହେଲେ ହେଁ ବିଶେଷ ବିବରଣଯୁକ୍ତ ତାଙ୍କର ଜୀବନଚରିତ ଅଧିକାଂଶ ଲୋକେ ଜାଣନ୍ତି ନାହିଁ । "ଶ୍ରଦ୍ଧାବୀର" ପୁସ୍ତକଖଣ୍ଡି ଏ ଅଭାବ ବହୁ ପରିମାଣରେ ପୂରଣ କରିଅଛି ।

ପୁସ୍ତକର ଭାଷା ଓ ଲିଖନପ୍ରଣାଳୀ ସରଳ ଓ ପ୍ରାଞ୍ଜଳ, ବିଶେଷତଃ ସୁକୁମାରମତି ବାଳକମାନଙ୍କ ପକ୍ଷରେ ସୁଖବୋଧ୍ୟ । ଗ୍ରନ୍ଥକର୍ତ୍ତା ମହାଶୟ ଉତ୍କଳଭାଷା ଓ ସାହିତ୍ୟକ୍ଷେତ୍ରରେ ମହାରଥୀ ସ୍ୱର୍ଗୀୟ ଚନ୍ଦ୍ରମୋହନ ମହାରଣାଙ୍କର ସୁଯୋଗ୍ୟ ଶିଷ୍ୟ । ଗ୍ରନ୍ଥଖଣ୍ଡିକ ପାଠ କଲାବେଳେ ମନେହୁଏ, ଯେପରିକି ଲେଖକ ସ୍ୱକୀୟ ଗୁରୁଦେବଙ୍କର କଠୋର ଶାସନ ଓ ତୀକ୍ଷ୍ଣ ଦୃଷ୍ଟି ଅଧୀନରେ ରହି ସତତ ଜାଗ୍ରତ ଭାବରେ ଲେଖନୀ ପରିଚାଳନା କରୁଅଛନ୍ତି । ଏପରି ଗୁରୁଭକ୍ତ ଓ ଜାଗ୍ରତ ଲେଖକଙ୍କର ଭାଷା ଓ ଲିଖନପ୍ରଣାଳୀ ଯେ ବିଶୁଦ୍ଧ ଓ ନିର୍ଦ୍ଦୋଷ ହେବ, ଏହା ବୋଲିବା ବାହୁଲ୍ୟମାତ୍ର ।

ଏହା ଅବଶ୍ୟ ବକ୍ତବ୍ୟ ଯେ ଗ୍ରନ୍ଥଖଣ୍ଡିକ ଦ୍ୱାରା ଛାତ୍ରସମାଜର ବିଶେଷ ଉପକାର ସାଧିତ ହେବ ବୋଲି ଆଶା କରାଯାଏ । ସ୍ୱକୀୟ ଲକ୍ଷ୍ୟସାଧନ କରିବା ନିମିତ୍ତ ବାଳକର କ'ଣ କରିବା ଉଚିତ, ଏ ବିଷୟରେ ଧ୍ରୁବଙ୍କ ଜୀବନ ଜ୍ୱଳନ୍ତ ଉଦାହରଣ ଏବଂ ଏହି ଉଦାହରଣଟି ଅତି ସୁନ୍ଦରଭାବରେ ଓ ଦକ୍ଷତା ସହକାରେ ଆଲୋଚ୍ୟଗ୍ରନ୍ଥରେ ପରିସ୍ଫୁଟ କରାଯାଇଅଛି । ଧ୍ରୁବ ଈଶ୍ୱରଙ୍କୁ ପାଇବା ପାଇଁ ସଂସାରର ଭୋଗବିଳାସ, ପ୍ରଲୋଭନ, ବିଭୀଷିକା, ମାୟାମମତା, ପ୍ରତି ଭ୍ରୂକ୍ଷେପ

ନ କରି ଏକାଗ୍ରଚିତ୍ତରେ ବ୍ୟାକୁଳ ଭାବରେ ତପସ୍ୟାରେ ନିମଗ୍ନ ରହିବାରୁ ସ୍ୱୟଂ ନାରଦ ଆସି ତାଙ୍କର ଗୁରୁ ହେଲେ ଓ ତାଙ୍କୁ ଉପଯୁକ୍ତ ମନ୍ତ୍ର ଉପଦେଶ ଦେଲେ ଏବଂ ସେହି ମନ୍ତ୍ରସାଧନ ବଳରେ ଧ୍ରୁବ ସାଧନାରେ ସିଦ୍ଧି ଲାଭ କଲେ । "ବାଳାନାଂ ଅଧ୍ୟୟନ ତପଃ" ଏହା ସର୍ବବାଦୀସମ୍ମତ । ଧ୍ରୁବଙ୍କ ପରି ଯେବେ ପ୍ରତ୍ୟେକ ବାଳକ ଲକ୍ଷ୍ୟଭ୍ରଂଶକାରୀ ସାଂସାରିକ ପ୍ରଭାବ ପ୍ରଲୋଭନ ମସ୍ତକରେ ପଦାଘାତ କରି, ସ୍ୱକୀୟ ଜ୍ଞାନାର୍ଜନ ରୂପେ ତପସ୍ୟାରେ ଏକାଗ୍ରଭାବରେ ନିରତ ରହିବ, ତାହାହେଲେ ନାରଦଙ୍କ ତୁଲ୍ୟ ଦିବ୍ୟଜ୍ଞାନସମ୍ପନ୍ନ ବ୍ୟକ୍ତିମାନେ ଆସି ତାହାର ସହାୟତା କରିବେ ଏବଂ ସେ ପରିଶେଷରେ ସିଦ୍ଧି ଲାଭ କରିବ ଓ ଜ୍ଞାନ ସ୍ୱରୂପ ପରମେଶ୍ୱରଙ୍କୁ ପାଇବ । ଗ୍ରନ୍ଥକାର 'ଶ୍ରଦ୍ଧାବୀର' ଗ୍ରନ୍ଥରେ କଥାଛଳରେ ଅନ୍ୟାନ୍ୟ ଶିକ୍ଷା ମଧ୍ୟରେ ଏହି ମହାଶିକ୍ଷା ବାଳକମାନଙ୍କୁ ପ୍ରଦାନ କରୁଅଛନ୍ତି ।

ପୁନଶ୍ଚ ଗ୍ରନ୍ଥାକାରଙ୍କ ଆନ୍ତରିକତା ଗ୍ରନ୍ଥଖଣ୍ଡିକର ପ୍ରଧାନ ବିଶେଷତ୍ୱ । ମହାତ୍ମା କାର୍‌ଲାଇଲ୍ ଏହି ଆନ୍ତରିକତାକୁ ସିନ୍‌ସିୟୋରିଟି ବୋଲି କହିଅଛନ୍ତି । ଏହି ଆନ୍ତରିକତାର ଅଭାବ ହେଲେ କୌଣସି ମନୁଷ୍ୟ ମନୁଷ୍ୟ ପଦବାଚ୍ୟ ନୁହେଁ କିମ୍ବା କୌଣସି ଗ୍ରନ୍ଥ ଗ୍ରନ୍ଥ ପଦବାଚ୍ୟ ନୁହେଁ । 'ଶ୍ରଦ୍ଧାବୀର' ଗ୍ରନ୍ଥଖଣ୍ଡି ପାଠକଲାବେଳେ ମନେହୁଏ, ଲେଖକ ଯେପରିକି ଲିଖ୍ୟମାନ ବିଷୟରେ ତନ୍ମୟ ହୋଇଯାଇଅଛନ୍ତି ଓ ତହିଁରେ ହୃଦୟ ଢାଳି ଦେଇଅଛନ୍ତି । ଏହି ଆନ୍ତରିକତା ହେତୁରୁ ଗ୍ରନ୍ଥଖଣ୍ଡିକ ଏପରି ଚିତ୍ତାକର୍ଷକ ଓ ଉପାଦେୟ ହୋଇଅଛି ।

ଇତି ପୂର୍ବେ ଗ୍ରନ୍ଥକାରଙ୍କ ପ୍ରଣୀତ 'ସତ୍ୟବୀର' (ଭୀଷ୍ମଚରିତ) ନାମକ ପୁସ୍ତକ ପାଠକରି ପରମ ପରିତୋଷ ଲାଭ କରିଥିଲି । ବର୍ତ୍ତମାନ 'ଶ୍ରଦ୍ଧାବୀର' ପାଠକରି ପରମାପ୍ୟାୟିତ ହେଲି । ଗ୍ରନ୍ଥକାର ଏପରି ବୀରଜୀବନ ଚରିତ ଲେଖିବାରେ ସିଦ୍ଧହସ୍ତ । ଆଶା ହୁଏ, ପ୍ରଣେତା ଉତ୍ତରୋତ୍ତର ଏହିପରି ସଦ୍‌ଗ୍ରନ୍ଥମାନ ପ୍ରଣୟନ କରି ଉତ୍କଳସାହିତ୍ୟ ଭଣ୍ଡାରକୁ ଅମୂଲ୍ୟ ରତ୍ନମାନ ଉପହାର ଦେବେ ।

ପୁରୀ — ଶ୍ରୀ ଆନନ୍ଦଚନ୍ଦ୍ର ପତି

ତା୨।୧।୧୯୫୯

# ଶ୍ରଦ୍ଧାବୀର

## ପ୍ରଥମ ପରିଚ୍ଛେଦ

**ଲୋ**କେ ସବୁବେଳେ ନିଜକୁ ବଡ଼ କରିବାକୁ ଇଚ୍ଛା କରନ୍ତି । ଏହା ସମସ୍ତଙ୍କର ସ୍ୱଭାବ । ପ୍ରତ୍ୟେକଙ୍କର ବଡ଼ ହେବା ମଧ୍ୟ ଉଚିତ । ଏହା ବୋଲି ଯେ ଛଳେ, ବଳେ, କୌଶଳେ ବଡ଼ ହେବ, ତାହା ନୁହେଁ; କାରଣ ତାହା ବହୁଦିନ ରହେ ନାହିଁ କିମ୍ୱା ତାହାର ପରିଣାମ ଭଲ ନୁହେଁ । ଅନେକ ଲୋକ ବୁଝି ନ ପାରି ବୃଥା ଅହଂକାରରେ ମାତି ନାନା କୁକାର୍ଯ୍ୟ କରି ବଡ଼ ହେବାକୁ ଉଦ୍ୟମ କରନ୍ତି; କିନ୍ତୁ ଯେଉଁମାନଙ୍କର ସୁବୁଦ୍ଧି ଥାଏ, ଧର୍ମରେ ବିଶ୍ୱାସ ଥାଏ, ସେମାନେ ସାଧୁକାର୍ଯ୍ୟ କରି ବଡ଼ ହୁଅନ୍ତି ଏବଂ ହୋଇଛନ୍ତି । ସେହିମାନେ ହିଁ ଯୁଗେ ଯୁଗେ ଦେବତା ପରି ପୂଜା ପାଆନ୍ତି । ଏପରି ଉଦାହରଣ ଆମ୍ଭମାନଙ୍କର ପୁରାଣରେ ଅନେକ ଦେଖାଯାଏ ।

ଆମ୍ଭମାନଙ୍କର ଏହି ପୁଣ୍ୟଭୂମି ଭାରତବର୍ଷରେ ଉତ୍ତାନପାଦ ନାମରେ ଜଣେ ପ୍ରଧାନ ରାଜା ଥିଲେ । ସେ ଅତ୍ୟନ୍ତ ଶାନ୍ତଶୀଳ ଏବଂ ସରଳବିଶ୍ୱାସୀ ଥିଲେ । ଛନ୍ଦ କପଟ କ'ଣ ସେ ଜାଣନ୍ତି ନାହିଁ । ତାଙ୍କର ସୁଶାସନରେ ରାଜ୍ୟର ସକଳ ପ୍ରଜା ଅତ୍ୟନ୍ତ ସୁଖଶାନ୍ତିରେ ଚଳୁଥିଲେ । ସେହି ରଜାଙ୍କର ଦୁଇଟି ରାଣୀ ଥିଲେ । ଜଣକର ନାମ ସୁନୀତି, ଅନ୍ୟଜଣଙ୍କର ନାମ ସୁରୁଚି । ସୁରୁଚି ସୁନୀତିଠାରୁ ଅଧିକ ସୁନ୍ଦରୀ; କିନ୍ତୁ ସୁନୀତି ପରି ତାଙ୍କଠାରେ ଗୁଣ ନ ଥିଲା । ସୁରୁଚି ସୁନୀତିଙ୍କୁ ଭଲ ପାଆନ୍ତି ନାହିଁ । ସେ ରାଜାଙ୍କର ପ୍ରିୟ ହେବା ପାଇଁ ନାନା ଛନ୍ଦ, କପଟ, କୌଶଳ କରି ରଜାଙ୍କୁ ନିଜର ଆୟତ୍ତ କଲେ । ରାଜା ତ ସରଳ ପ୍ରକୃତିର ଲୋକ, ସେ ସୁରୁଚିର ମାୟାରେ ପଶି ନ ପାରି ତାହାରି ଅଧୀନ ହେଲେ । ସୁନୀତିଙ୍କର ସ୍ୱଭାବ ଅତି ଉତ୍ତମ । ସୁରୁଚି ତାଙ୍କୁ ସହି ପାରନ୍ତି ନାହିଁ, ଏହା ସେ ଉତ୍ତମ ରୂପେ

ଜାଣନ୍ତି; କିନ୍ତୁ ସେ ତାଙ୍କୁ ଭଲ ପାଆନ୍ତି । ଯାହା କଲେ ସୁରୁଚିଙ୍କର ମଙ୍ଗଳ ହେବ, ସେ ସୁଖ ପାଇବେ, ସୁନୀତି ସେହିପରି କାର୍ଯ୍ୟ କରୁଥା'ନ୍ତି; କିନ୍ତୁ ସୁରୁଚି ତାଙ୍କର ଅମଙ୍ଗଳ ପାଇଁ ନାନା ଚେଷ୍ଟା କରୁଥା'ନ୍ତି ।

ସଂସାର ବିଷମ ସ୍ଥାନ, ମହାପରୀକ୍ଷାର ସ୍ଥଳ । ସେଥିରେ ଧନ, ଜନ, କ୍ଷମତା, ବୟସ, ସେହି ମହାପରୀକ୍ଷାର ଗୋଟିଏ ଗୋଟିଏ ପ୍ରଧାନ ଉପକରଣ । ଯେଉଁମାନେ ସେହି ଉପକରଣ ଲାଭ କରି ସାଧୁମାର୍ଗରେ ଗତି କରନ୍ତି, ସେହିମାନେ ହିଁ ପରୀକ୍ଷାର ପୁରସ୍କାର ଲାଭ କରନ୍ତି । ଅନ୍ୟ ପକ୍ଷରେ ଯେଉଁମାନେ ଧନଜନ ପ୍ରଭୃତି ଲାଭ କରି ଅହଂକାରରେ ମାତିଯା'ନ୍ତି, ସେମାନେ ନରକ ଯନ୍ତ୍ରଣା ଭୋଗ କରନ୍ତି । କାଳକ୍ରମେ ଦୁଇ ରାଣୀଙ୍କର ଦୁଇଟି ପୁତ୍ର ହେଲେ । ସୁନୀତିଙ୍କ ପୁଅର ନାମ ଧ୍ରୁବ, ସୁରୁଚିଙ୍କ ପୁଅର ନାମ ଉତ୍ତମ । ପୁଅ ହେବାରୁ ସୁରୁଚିଙ୍କର ଅହଙ୍କାର ବଢ଼ିଗଲା । ନିଜର ପୁଅ କିପରି ଭବିଷ୍ୟତରେ ରାଜା ହେବ; ଏ ବିଷୟରେ ତାଙ୍କର ଅହରହ ଚିନ୍ତା ହେଲା । ତହୁଁ ସେ ସୁନୀତିଙ୍କୁ ରାଜନବରରୁ ପୃଥକ୍ ସ୍ଥାନରୁ ତଡ଼ିଦେବା ନିମନ୍ତେ ନାନା କୌଶଳ କରିବାକୁ ଲାଗିଲେ । ରାଜା ସୁରୁଚିଙ୍କର କୁଟିଳ କୌଶଳ ବୁଝି ନ ପାରି ତାଙ୍କ କଥାରେ ଭାସିଯାଇ ସୁନୀତିଙ୍କୁ ରାଜନବରରୁ ଅଲଗା କରାଇଦେଲେ । ସୁନୀତି ପତିବ୍ରତା । ପତିଙ୍କର ଯହିଁରେ ସୁଖ ହେବ, ସେ ତାହା କରିବାକୁ କେବେହେଲେ ଅସ୍ୱୀକୃତ ହୋଇ ନାହାନ୍ତି । ବର୍ତ୍ତମାନ ବିନା କାରଣରେ ତଡ଼ି ଦେଉଥିଲେ ସୁଦ୍ଧା ଆପତ୍ତି ନ କରି ନିଜ ଅଦୃଷ୍ଟକୁ ଅନୁସରି ରାଜାଙ୍କ ଆଦେଶାନୁସାରେ ଶିଶୁପୁତ୍ରଟିକୁ ସଙ୍ଗରେ ନେଇ ସୁନୀତି ରାଜନବରରୁ ଦୂରରେ ଏକ ଉଦ୍ୟାନ ମଧ୍ୟରେ ଗୋଟିଏ କ୍ଷୁଦ୍ର କୁଟୀରରେ ବାସ କଲେ ।

ସ୍ନେହ, ଶ୍ରଦ୍ଧା, ପ୍ରେମ, ଭକ୍ତି ଗୋଟିଏ ଗୋଟିଏ ଅମୂଲ୍ୟ ଦିବ୍ୟ ଗୁଣ । ମହାବୀରଙ୍କ ବୀରତ୍ୱ, ଇନ୍ଦ୍ରଙ୍କର କ୍ଷମତା, କୁବେରଙ୍କର ଧନ ଭଣ୍ଡାର ସେ ଗୁଣ ନିକଟରେ ଅକିଞ୍ଚିତ୍କର । ଭଗବାନ ପ୍ରତ୍ୟେକ ମାନବ ହୃଦୟରେ ସେ ମହାମୂଲ୍ୟ ଗୁଣ ପରମ୍ପରାର ବୀଜ ରୋପଣ କରିଅଛନ୍ତି । ଲୋକେ କ୍ରମେ ପରିବାର ମଧ୍ୟରେ ସମାଜରେ, ଦେଶରେ, ଶେଷକୁ ପୃଥିବୀରେ

ସେହି ସ୍ନେହ, ଶ୍ରଦ୍ଧା, ପ୍ରେମ ଭକ୍ତିର ବିନିମୟ କରି ବଡ଼ ବଡ଼ ମହାତ୍ମା ହୋଇଅଛନ୍ତି ଏବଂ ମଙ୍ଗଳମୟ ପ୍ରଭୁଙ୍କ କୃପା ଲାଭ କରି କୃତାର୍ଥ ହୋଇଛନ୍ତି । ସେ ଗୁଣମାନଙ୍କର ପୁଣି ଏପରି ଅଦ୍ଭୁତ ଶକ୍ତି ଯେ, ଲୋକ ତାହା ବଳରେ ଲୋକକୁ କିଣି ନେଇପାରିବ । ଯାହାର ଯାହା ସଙ୍ଗେ ସେ ସମ୍ବନ୍ଧ ରହିବ, ସେ କେବେହେଲେ ତାକୁ ଭୁଲି ପାରିବ ନାହିଁ; ବରଂ ସେ ତା'ର ବିରହରେ ଝୁରି ମରିବ । ଧ୍ରୁବ ଉତ୍ତାନପାଦ ରାଜାଙ୍କର ଔରସ ପୁତ୍ର । ଧ୍ରୁବ କ୍ରମେ ଟିକିଏ ବଡ଼ ହୋଇ ଆସିଲା । ତାହାର ପିତାମାତା ଜ୍ଞାନ ହେଲା । ପୁଅ ବାପାମା'ଙ୍କୁ ଭୁଲି ପାରେ ନାହିଁ । ସନ୍ତାନ ମା' ବାପାଙ୍କ ଠାରୁ ଅନ୍ତର ହେଲେ ଦୁଇ ପକ୍ଷରେ ଝୁରିବା ସ୍ୱାଭାବିକ । ଧ୍ରୁବ ଉତ୍ତାନପାଦଙ୍କୁ ନିଜର ପିତା ବୋଲି ବୁଝିପାରି ତାଙ୍କ ନିକଟକୁ ଯିବାକୁ ଅତ୍ୟନ୍ତ ଆଗ୍ରହ କଲା । ତହୁଁ ସେ ଦିନେ ମା'ଙ୍କ ଅନୁମତି ନେଇ ବାପାଙ୍କ ପାଖକୁ ଗଲା । ସେତେବେଳେ ଦେଖିଲା, ତା'ର ବିମାତାପୁତ୍ର ଉତ୍ତମ ବାପାଙ୍କ କୋଳରେ ବସିଛି । ପିଲାଏ ବାପାମା'ଙ୍କୁ ପାଇଲେ କୋଳରେ ବସିବାକୁ ଅଳି କରିଥା'ନ୍ତି । ସେଥିରେ ପୁଣି ଅନ୍ୟ ଯେବେ କେହି କୋଳରେ ବସିଥାଏ, ତେବେ ତାହା ଦେଖିଲେ ପିଲାଙ୍କର କୋଳରେ ବସିବା ଅଳି ବଢ଼ିଯାଏ । ସୁତରାଂ ଉତ୍ତମକୁ ଦେଖି ଧ୍ରୁବର ଆଗ୍ରହ ବଢ଼ିଗଲା । ଏଣେ ପୁଣି ଉତ୍ତାନପାଦ ଧ୍ରୁବକୁ ଦେଖି ଆନନ୍ଦରେ ଅଧୀର ହେଲେଣି । ତେଣେ ଧ୍ରୁବ କୋଳରେ ବସିବାକୁ ଦ୍ରୁତଗତିରେ ଧାଇଁଛି । ଏହି ମଧୁର ଦିବ୍ୟ ଅଭିନୟ ଦେଖିଲେ ପୃଥିବୀରେ ସ୍ୱର୍ଗସୁଖ ମିଳିଥାଏ, ଭୋଗିବା କଥା ତ ଦୂରର କଥା କ୍ରମେ ଧ୍ରୁବ ପିତାଙ୍କର ନିକଟବର୍ତ୍ତୀ ହୋଇ କୋଳରେ ବସିବାକୁ ହାତ ବଢ଼ାଇଲା । ରାଜା ଏହା ଦେଖି ଆନନ୍ଦରେ ଗଦ୍ ଗଦ୍ ହୋଇ ମନେ ମନେ ହାତ ବଢ଼ାଉଥା'ନ୍ତି; କିନ୍ତୁ ପ୍ରକୃତରେ ହାତ ବଢ଼ାଇ ପାରନ୍ତି ନାହିଁ କାରଣ ପାଖରେ ଦୁଷ୍ଟା ସୁରୁଚି ଠିଆ ହୋଇ ରହିଛି । ଧ୍ରୁବକୁ ଦେଖି ସେ ଈର୍ଷାରେ କଳା ପଡ଼ିଗଲାଣି । ରାଜା ଏ ସମସ୍ତ ବୁଝି ପାରୁଛନ୍ତି । ଧ୍ରୁବ ସରଳ ଶିଶୁ, ସେ ବା କିପରି ବିମାତାର ବକ୍ର ଚାହାଣିର ଭାବ ବୁଝିବ ? ତାହାର ଭୟ – ସେ କିପରି କୋଳରେ ବସିବ । କୋଳରେ ବସିବାର ଯେତେ ଯେତେ ବିଳମ୍ବ ହେଲା, ଧ୍ରୁବର ତେତେ

ଆବେଗ ବଢ଼ିଲା । ଏହା ଦେଖି ସୁରୁଚିର ହିଂସା ସେତେ ସେତେ ବଢ଼ିଲା । ରାଜା ଦୋସନ୍ଧିରେ ପଡ଼ି ପଡ଼ି କଲବଲ ହେଲେ; କିନ୍ତୁ କିଛି କରିପାରିଲେ ନାହିଁ । ବିଳମ୍ବ ହେବାରୁ ଧ୍ରୁବ କହିଲା – "ବାବା ! ମୁଁ କୋଳରେ ବସିବି ।" ଏ କଥାରେ ରାଜାଙ୍କର ମନ ତରଳି ଗଲାଣି; କିନ୍ତୁ ସୁରୁଚି ରାଗରେ ଜଳି ଉଠିଲାଣି । ଏଥିରେ ରାଜା କିପରି ବା ଧ୍ରୁବର ଅଳି ବୁଝିବେ ? କେବଳ ଭୟରେ ଥରେ ଥରେ ରାଣୀଙ୍କ ମୁହଁକୁ ଚାହୁଁଥା'ନ୍ତି ପୁଣି ସ୍ନେହାଧିକ୍ୟ ହେତୁ ଧ୍ରୁବ ମୁହଁକୁ ଚାହୁଁଥା'ନ୍ତି । ଏଣିକି ଧ୍ରୁବ ଆଉ ବିଳମ୍ବ ସହି ନ ପାରି କହିଲା – "ବାବା ! ମୋ କଥା ଶୁଣୁନାହଁ କାହିଁକି ? ମୋତେ ଟିକିଏ କୋଳରେ ବସାଅ ।" ଏଥିରେ ଆଉ ଲୋକର ଧୈର୍ଯ୍ୟ ରହେଟିକି ? ଉତ୍ତାନପାଦ ସ୍ନେହରେ ଆଉ ସମ୍ଭାଳି ହୋଇ ନ ପାରି ସୁରୁଚି ଭୟକୁ ଭୁଲିଯାଇ ଧ୍ରୁବକୁ କୋଳକୁ ନେବାକୁ ହାତ ବଢ଼ାଇଦେଲେ । ଧ୍ରୁବ ଆନନ୍ଦରେ ଅଧୀର ହୋଇ କୋଳରେ ବସିବାକୁ ଉଦ୍ୟମ କରୁଛି, ଏମନ୍ତ ସମୟରେ ଦୁଷ୍ଟା ସୁରୁଚି ରାଗରେ, ହିଂସାରେ ଜର୍ଜର ହୋଇ କହିଲା – "କିରେ ଦରିଦ୍ର ପିଲା ! ତୋର ତ ଭାରି ସାହସ, ମୋ ପୁଅ ଉତ୍ତମ ଯେଉଁଠି ବସିବ, ତୁ ପୁଣି ସେଇଠି ବସିବୁ ? ତୁ ସିନା ଏ ରାଜାଙ୍କର ପୁଅ, ରାଣୀର ପୁଅ ତ ନୋହୁ । ତେବେ କିପରି ରାଜକୋଳରେ ବସିବାକୁ ସାହସ କରୁଛୁ ? ତୁ ପରା ଗୋଟେ ଭିକାରୁଣୀର ପୁଅ ? ତୋ ମା' ରାଣୀ ହୋଇଥିଲେ ନଅରରେ ନ ଥା'ନ୍ତା ? ତୁ ତା'ର ପୁଅ ହୋଇ ରାଜକୋଳରେ ବସିବାକୁ ଆହାବୁଛୁ ? ତୋର ମନ ବଢ଼ିଗଲା କିରେ ? ଭଲ ଗତି ଅଛି ତ ସେ କାଙ୍ଗାଳୀ ମା' ପାଖକୁ ଶୀଘ୍ର ବାହୁଡ଼ି ଯା' । ପୁଣି ଆଉ ଦିନେ ଏପରି ସାହସ କରିବୁ ନାହିଁ ।"

ରାଜା ସୁରୁଚି ଭୟରେ ମୂକ ପରି ହୋଇଗଲେ । କିଛି କହିପାରିଲେ ନାହିଁ; କିନ୍ତୁ ଦୁଃଖରେ ମନେ ମନେ କଲବଲ ହୋଇ ନିଜ ଅଦୃଷ୍ଟକୁ ନିନ୍ଦା କଲେ । ଧ୍ରୁବ ବିମାତାର ଭର୍ତ୍ସନାରେ ଅଭିମାନରେ ଜଳିଗଲେ । ବିକଳ ଭାବରେ ଭୋ ଭୋ କାନ୍ଦି କାନ୍ଦି ମା'ଙ୍କ ପାଖକୁ ବାହାରିଲେ । ମା'ଙ୍କୁ ଦେଖିଲାକ୍ଷଣି ଦୂରରୁ ଦୌଡ଼ିଯାଇ ଯାକି ପକାଇ ଭୋ ଭୋ ବୋବାଳି ପକାଇଲେ । ଦୁଃଖିନୀ ମା'ଙ୍କ ସଂସାରରେ ଧ୍ରୁବ ଛଡ଼ା ଆଉ ସମ୍ପତ୍ତି କିଛି

ନାହିଁ । ସେ ତାହାରି ମୁହଁକୁ ଚାହିଁ ଦିନ କାଟନ୍ତି । ସେ ପୁଅର ବୋବାଳି ଶୁଣି କିଛି କାରଣ ନ ବୁଝି ହଠାତ୍ କାନ୍ଦିପକାଇ ପଚାରିଲେ – 'ମୋ ଧନ, ମୋ ଗଣ୍ଠି ସଙ୍ଖାଳି, କାହିଁକି କାନ୍ଦୁଛୁ ? କ'ଣ ହେଲା । କିଏ କଣ କହିଲା ?' ମା' ଏତକ ପଚାରିବାରୁ ଧ୍ରୁବର କାନ୍ଦ ଅଧିକ ବଢ଼ିଗଲା । ଅତ୍ୟନ୍ତ ଦୁଃଖବେଳେ ଲୋକ ଆତ୍ମୀୟ ଲୋକ ପାଇଲେ କାନ୍ଦିପକାଏ; ପୁଣି ତା'ଠାରୁ ସ୍ନେହ ସାନ୍ତ୍ୱନା ପାଇଲେ ଆହୁରି ଅଧିକ କାନ୍ଦିପକାଏ । ଧ୍ରୁବଙ୍କର ତାହା ହିଁ ହେଲା । ଧ୍ରୁବ କାନ୍ଦରେ କଇଁ କଇଁ ହୋଇଗଲେ । କଥା କହିପାରିଲେ ନାହିଁ । ଏଥିରେ ମା'ଙ୍କର ହୃଦୟ ଘାଣ୍ଟି ହୋଇଗଲା, ଚକ୍ଷୁରୁ ଅଜସ୍ର ଲୋତକ ବୋହିଗଲା । ସେ ବହୁକଷ୍ଟରେ ଗଛପତ୍ର, ଫୁଲଫଳ, ଜୀବଜନ୍ତୁ ଦେଖାଇ କୌଣସି ପ୍ରକାରେ ପୁଅକୁ ବୋଧ ଦେଲେ । କ୍ରମେ କ୍ରମେ ତା' ଠାରୁ ବିମାତାର ଗାଳି ତିରସ୍କାରମାନ ଶୁଣିଗଲେ ।

ସୁନୀତି ସୁରୁଚିର ତିରସ୍କାର କଥା ଶୁଣି କାନ୍ଦ କାନ୍ଦ ହୋଇ ବାରମ୍ବାର ଦୀର୍ଘ ନିଃଶ୍ୱାସ ପକାଇଲେ; ମାତ୍ର ଆଉ ପ୍ରକାଶ୍ୟ ଭାବରେ କାନ୍ଦିଲେ ନାହିଁ; କାରଣ ସେ କାନ୍ଦିଲେ ଧ୍ରୁବର ଶୋକ ବଢ଼ିଯିବ । ସେ ପୁତ୍ରକୁ ବୁଝାଇ କହିଲେ, "ବତ୍ସ ! ପ୍ରକୃତରେ ତୁ ଭିକାରୁଣୀର ପୁଅ । ସୁରୁଚି ପୂର୍ବଜନ୍ମରେ ତପସ୍ୟା କରିଛି, ସେଇଥିପାଇଁ ସେ ରାଜରାଣୀ ହୋଇ ରହିଲା । ମୋର ତପସ୍ୟା ନାହିଁ ବୋଲି ମୁଁ ବନବାସରେ ରହିଲି । ତୁ ତ ମୋ ଗର୍ଭରୁ ବାହାରିଛୁ, ଉତ୍ତମ ପରି ରାଜସିଂହାସନ ରାଜକୋଳ କାହୁଁ ପାଇବୁ ? ଯେ ଯେପରି କର୍ମ କରିଛି, ସେ ସେହିପରି ଫଳ ପାଇବ । ଆଉ ଦୁଃଖ କରି କ'ଣ ହେବ ? ଏ ଜନ୍ମରେ ଭଲ କର୍ମ କର, ତେବେ ଆର ଜନ୍ମରେ ରାଜସିଂହାସନ ପାଇବୁ, ଆଉ ଏ ଦୁଃଖ ରହିବ ନାହିଁ ।"

ଧ୍ରୁବ କହିଲେ – "ମା ! ମୁଁ ଉତ୍ତମ ପରି ସିଂହାସନ ପାଇବାରୁ ଇଚ୍ଛା କରୁନାହିଁ । ତା ଠାରୁ ଉଚ୍ଚ ଆସନ ପାଇବା ମୋର ଇଚ୍ଛା । କ'ଣ କଲେ ମା' ଆମର ଏ ଦୁଃଖ ଯିବ ?"

ସୁନୀତି କହିଲେ – "ବାପା ! ହରିଙ୍କୁ ଭଜିପାରିଲେ ଏ ଦୁଃଖ ରହିବ ନାହିଁ । ସେ ପ୍ରଭୁ ଦୟାମୟ, ଭକ୍ତକୁ ଅଭୀଷ୍ଟ ଫଳ ଦିଅନ୍ତି ।"

ଧ୍ରୁବ ପଚାରିଲେ – "ମା ! ହରି କିଏ ? ସେ କେଉଁଠାରେ ଥାଆନ୍ତି ? କିପରି ତାଙ୍କ ଦେଖା ମିଳିବ ? ସେ ମୋର ପିଲା କଥା ଶୁଣିବେ କି ନା ? କ'ଣ କଲେ ତାଙ୍କୁ ପାଇବି ?"

ମା' କହିଲେ, "ବତ୍ସ ! ହରି ଏ ଜଗତର ପ୍ରଭୁ । ସେ ଏ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର, ଆକାଶ, ପୃଥିବୀ, ଜଳ, ବାୟୁ, ତରୁ, ଲତା, ଜୀବ, ଜନ୍ତୁ ସୃଷ୍ଟି କରିଛନ୍ତି । ସେ ସବୁଠାରେ ଅଛନ୍ତି । ସଂସାର କଥା ସବୁ ଭୁଲିଯାଇ ଏକ ଲୟରେ ଦିନରାତି ତାଙ୍କୁ ଡାକିଲେ, ସେ ଦେଖାଦିଅନ୍ତି । ସେ ପିଲା ବୁଢ଼ା ବାରନ୍ତି ନାହିଁ । ତାଙ୍କୁ ଯେ ଭଜି ପାରିଲା, ସେ ତାକୁ ଦୟା କରନ୍ତି । ଯେ ପରର ଉପକାର କରେ, କାହାରି ପ୍ରତି ହିଂସା କରେ ନାହିଁ, ସତ୍ୟ କହେ; ସବୁବେଳେ ଭଲକାର୍ଯ୍ୟ କରେ, ସେହି ଲୋକ ହରିଙ୍କୁ ଦେଖିପାରେ । ବତ୍ସ ! ତୁ ଏହି ପିଲାଦିନୁ ସେହିପରି କାର୍ଯ୍ୟ କର, ନିଶ୍ଚୟ ହରି ଦେଖାଦେବେ । ଯୋଗୀ ଋଷିମାନେ ବନରେ ରହି ଫଳମୂଳ ଖାଇ କେବଳ ହରିଙ୍କି ଡାକି ଡାକି ବଡ଼ ହୋଇଛନ୍ତି ସିନା ।"

"ମା ! ମୁଁ ଆଉ ଖେଳାବୁଲା ନ କରି କେବଳ ସେହି ହରିଙ୍କି ଡାକିବି । ତୁ ଦେଖିବୁ ନିଶ୍ଚେ ଉତ୍ତମଠାରୁ ବଡ଼ ଗାଦି ପାଇବି । ତୋର ଆଉ ଏ ଦୁଃଖ ରହିବ ନାହିଁ ।"

ଧ୍ରୁବ ସାଧାରଣ ବାଳକ ନୁହେଁ । ସେ ପିଲାହେଲେ କ'ଣ ହେବ, ଏହି ଦିନୁଁ ତା'ର ହୃଦୟ ଉଚ୍ଚ, ଏହିଦିନୁଁ ପ୍ରତିଜ୍ଞା ପାଳିବାରେ ସେ ତତ୍ପର । ଯେ ସବୁ ବଡ଼ ହୁଅନ୍ତି, ସେମାନେ ଏହିପରି ପିଲାଦିନୁଁ ଉଚ୍ଚ ଲକ୍ଷ୍ୟ ରଖି, ସତ୍ କାର୍ଯ୍ୟ କରି ବଡ଼ ହୁଅନ୍ତି ସିନା । ଧ୍ରୁବ ମା'ଙ୍କଠାରୁ ଉପଦେଶ ଶୁଣିଲାବେଳୁ ସର୍ବଦା ସେ ଦୟାମୟ ହରିଙ୍କୁ ଡାକିବାକୁ ଲାଗିଲା ।

# ଦ୍ୱିତୀୟ ପରିଚ୍ଛେଦ

ଗଭୀର ଅନ୍ଧକାର, ଆକାଶରେ କେବଳ ତାରାଗୁଡ଼ିଏ ଦେଖାଯାଉଛନ୍ତି । ସେମାନଙ୍କର ବା ଆଲୋକ କେତେ ? ସେଥିରେ ପୁଣି ବନପ୍ରଦେଶ ବୃକ୍ଷଲତାରେ ପରିପୂର୍ଣ୍ଣ । ଦିନ ଦି'ପହରେ ସୁଦ୍ଧା ସେ ବନ ମଧ୍ୟରେ ସୂର୍ଯ୍ୟକିରଣ ମିଳେ ନାହିଁ । ଏବେ ତ ରାତି, ସେଥିରେ ପୁଣି କୃଷ୍ଣପକ୍ଷ ରାତି, ଶୁକ୍ଳପକ୍ଷ ହୋଇଥିଲେ ଅବା ଚନ୍ଦ୍ରକିରଣର ଆଶା କରାଯା'ନ୍ତା; କିନ୍ତୁ ସେତକ ମଧ୍ୟ ନାହିଁ । ତେଣୁ ବନସ୍ଥଳୀ ଗ୍ରାମ ଅନ୍ଧକାରାଚ୍ଛନ୍ନ । ଋଷିପଲ୍ଲୀଟି ଏହି ବନର ଅନ୍ତର୍ଗତ । ପଲ୍ଲୀରେ ଯେ କେତେଜଣ ଲୋକ ଥିଲେ, ସେ ସମସ୍ତେ ଗାଢ଼ ନିଦ୍ରାରେ ନିଦ୍ରିତ । ସୁତରାଂ ପଲ୍ଲୀଟି ଅନ୍ଧାରରେ ମାଡ଼ି ମାଡ଼ି ପଡ଼ିଲା ପରି ଲାଗୁଛି । ଧ୍ରୁବର ମା' ପୁଅକୁ କୋଳରେ ଧରି ଅନେକ ରାତି ପର୍ଯ୍ୟନ୍ତ ନିଜ କୁଟୀରରେ ବସି ରହିଲେ । ପଛକୁ ବେଶି ରାତି ହେବାରୁ ପୁଅକୁ କୋଳରେ ଧରି ନିଦ୍ରା ଗଲେ । ବହୁ ଚିନ୍ତା ପରେ ସୁନୀତିଙ୍କର ସାମାନ୍ୟ ନିଦ୍ରା ହେଲା; କିନ୍ତୁ ଧ୍ରୁବର ନିଦ ହେଲା ନାହିଁ । ସେ ମା'ଙ୍କ କୋଳରେ ଶୋଇ କେବଳ ମନେ ମନେ ହରିଙ୍କୁ ଡାକୁଥା'ନ୍ତି । ମା'ଙ୍କର ଟିକିଏ ଗାଢ଼ ନିଦ୍ରା ହୋଇଗଲେ ବେଳଉଣ୍ଡି କିପରି ବନକୁ ଯିବେ, ଏହି କଥା ଚିନ୍ତା କରୁଥା'ନ୍ତି । ଧ୍ରୁବ ଜାଣିଛନ୍ତି, ମା'ଙ୍କୁ କହିକରି ବନକୁ ଯାଇ ହେବ ନାହିଁ । ସୁତରାଂ ଲୁଚିକରି ଯିବାକୁ ହେବ । ଦୈବାତ୍ ମା'ଙ୍କୁ ସାମାନ୍ୟ ଗାଢ଼ ନିଦ୍ରା ହୋଇଗଲା । ଧ୍ରୁବ ଏହା ଜାଣିପାରି ଧୀରେ ଧୀରେ ମା'ଙ୍କ କୋଳରୁ ଉଠି ମା'ଙ୍କୁ ପ୍ରଦକ୍ଷିଣ କରି ତାଙ୍କର ପାଦତଳେ ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କରି ହରିଙ୍କି ଖୋଜିବା ନିମନ୍ତେ ସେ ଘୋର ଅନ୍ଧାକାରରେ ସେ ନିବିଡ଼ ବନ ମଧ୍ୟରେ ବାହାରିଲେ । ସେତେବେଳେ ଦାଣ୍ଡ, ହାଟ, ବାଟ, ଘାଟ ସବୁ ନୀରବ । ଗୋଟିଏ ପକ୍ଷୀର ସୁଦ୍ଧା ଶବ୍ଦ ଶୁଣାଯାଉ ନାହିଁ । ଧ୍ରୁବ ଏକାକୀ ଘରୁ ବାହାରି କ୍ରମେ ଋଷିପଲ୍ଲୀ ପାରହୋଇ ନିବିଡ଼ ଅରଣ୍ୟ ମଧ୍ୟରେ ଅଗ୍ରସର ହେଲେ । ସେତେବେଳେ ବ୍ୟାଘ୍ର, ସିଂହ, ଭଲ୍ଲୁକ ପ୍ରଭୃତି ହିଂସ୍ରଜନ୍ତୁ ସକଳ ବନ

ମଧ୍ୟରେ ଆହାର ଖୋଜି ବୁଲୁଥା'ନ୍ତି; ମାତ୍ର ଧ୍ରୁବର ସେଥିପ୍ରତି ଦୃଷ୍ଟି ନାହିଁ ବା ଭୟ ନାହିଁ । ସେ ହରି ହରି ଏହି ଅଭୟ ମନ୍ତ୍ର ଉଚ୍ଚାରଣ କରି ଅଗ୍ରସର ହେଉଥା'ନ୍ତି । କ୍ରମେ ବନ ପରେ ବନ ଅତିକ୍ରମ କଲେ; କିନ୍ତୁ ହରିଙ୍କର ସାକ୍ଷାତ ନାହିଁ । ବେଳୁବେଳ ଧ୍ରୁବଙ୍କର ହରିଦର୍ଶନ-ବାଞ୍ଛା ବଳବତ୍ତର ହେଲା, ମନ ଆକୁଳ ହେଲା । ତହୁଁ ସେ ଡାକିବାକୁ ଲାଗିଲେ, "ହେ ଦୟାମୟ ହରି । ବାରେ ହେଲେ ଦେଖାଦିଅ । କାହିଁ ଅଛ, ଦେଖାଦିଅ, ମୋ ମା' କହିଛନ୍ତି ଦେଖାଦିଅ ।" ଏହିପରି ଭାବରେ ଧ୍ରୁବ କେତେ ନଈ, କେତେ ନାଳ, କେତେ ପାହାଡ଼, କେତେ ପର୍ବତ ପାର ହୋଇ ଗଲେ । ତାଙ୍କର ଚାଲିବାର ବିଶ୍ରାମ ନାହିଁ, ସର୍ବଦା ଧ୍ୟାନ ଯୋଗେ ଆଖିରେ ନିଦ ନାହିଁ । କ୍ଷୁଧା, ତୃଷ୍ଣା କିଛି ଜାଣିପାରୁ ନାହାନ୍ତି । ଚାରି ପାଞ୍ଚ ବର୍ଷର ବାଳକ, ଏତେ କଷ୍ଟ ସହିଲେ କି ଆଉ ଦେହରେ ବଳ ରହେ ? ମାତ୍ର ଧ୍ରୁବ ଦେଖିବାକୁ ଦୁର୍ବଳ ହୋଇଗଲେ ସୁଦ୍ଧା ତାଙ୍କର ମନର ବଳ ବେଳୁବେଳ ବଢୁଥିଲା । ତେଣୁ ହରିଡାକ ମଧ୍ୟ ଅଧିକ ହେଉଥିଲା । ସେ ଏକ ଲୟରେ ହରିଙ୍କୁ ଡାକି ଡାକି ଯାଉଛନ୍ତି, ଏମନ୍ତ ସମୟରେ ହଠାତ୍ ଦୂରରୁ ସୁମଧୁର ବୀଣା ଶବ୍ଦ ସଙ୍ଗେ ଶୁଣାଗଲା –

ଭଜ ମନ ଘନ ଶ୍ୟାମ ସୁନ୍ଦର
ଦୁଃଖ ଶୋକ ପାପ ତାପ ହୋଇବ ଦୂର,
ତୁଟିଯିବ ଭବଭାର          ମେଣ୍ଟିଯିବ ହାହାକାର
ଫିଟିଯିବ ସ୍ୱରଗର ରୁଦ୍ଧ ଦୁଆର ।ଘୋଷା।

ଆଧି-ବ୍ୟାଧି-ମହୌଷଧି ସେ ନାମ ସାର,
ଧନ ମାନ ଗୁଣ ଜ୍ଞାନ ତହିଁ ଅସାର,
ହେଳାରେ ଖେଳାରେ ହେଲେ     ଭଜିଲେ ପରାଣ ତରେ
ମଜ୍ଜିଲେ ମାନବ ହୁଏ ଚିର ଅମର ।୧।

ବନେ ନଗେ ନଭେ ନୀରେ ବାତେ ଅନଳେ,
ଦିବାରାତ୍ର ସାୟଂପ୍ରାତଃ ସକଳ ବେଳେ,
ନାରୀ ନରେ ବୃଦ୍ଧକାଳେ          କି ଇତର ଜୀବକୁଳେ
ବିଳସନ୍ତି ପ୍ରାଣେ ପ୍ରାଣ ସେ ପରାତ୍ପର ।୨।

ନୀଳମଣି ଜିଣି ତନୁ କେଡ଼େ ମଞ୍ଜୁଳ
ଶିଖେ ଶିଖିପୁଚ୍ଛ ଶୋଭେ ନାହିଁ ତା ତୁଳ,
କଟିତଟେ ପୀତପଟ ଦିଶେ କିବା ଝଟ ଝଟ
ମୋହନ ମୁରଲୀ ଢାଳେ କି ସୁଧା ଧାର ।୩।

କାଳିନ୍ଦୀ ଜଳକଲ୍ଲୋଳେ କମଳଦଳେ
ନୀପମୂଳେ ଧୂଳିଖେଳେ ସଖାଙ୍କ ମେଳେ,
ତ୍ରିଭଙ୍ଗଛନ୍ଦ ମଧୁର ନଟବର ଗିରିଧର
ଖେଳଛଳେ ଦିଏ ବ୍ରହ୍ମାନନ୍ଦ ଅପାର ।୪।

ଭକ୍ତି ଚିନ୍ତାମଣି ପ୍ରଭୁ ଭକତ ଦାସ,
ଭକତର ପ୍ରାଣସଖା ଭକତ ଈଷ,
ଭଜିଲେ ଭକତିବଳେ ସେ ପ୍ରଭୁ ଆସନ ବଳେ
ଲଭେ ଚତୁର୍ବର୍ଗ ଫଳ ଭକତବୀର ।୫।

ନାରଦ ସୁମଧୁର ଭକ୍ତିସଙ୍ଗୀତ ଗାଇ ଗାଇ କ୍ରମେ କ୍ରମେ ଧ୍ରୁବର ନିକଟବର୍ତ୍ତୀ ହେଲେ । ଧ୍ରୁବ ଗହନବନ ମଧ୍ୟରେ ନିଜେ କେବଳ ହରି ହରି ଡାକି ବୁଲୁଥିଲେ । ହରିଙ୍କି ପାଇବା ଦୂରେ ଥାଉ, ଆଉ କାହାରିଠାରୁ ହରି ଡାକଟିଏ ସୁଦ୍ଧା ଶୁଣିବାକୁ ପାଇ ନ ଥିଲେ । କେବଳ ମା'ଙ୍କ କଥାରେ ବିଶ୍ୱାସ ଥିଲା ବୋଲି ସେ ଏ ହିଂସ୍ରଜୀବପୂର୍ଣ୍ଣ ବନରେ ହରିଙ୍କି ଖୋଜି ବୁଲୁଥିଲେ । ନଚେତ୍ ଅନ୍ୟ କେହି ପିଲା ଅନ୍ଧାର ରାତିରେ ଘୋର ଅରଣ୍ୟରେ ବାଘ ଭାଲୁ ମେଳରେ ଏତେ ଦମ୍ଭ ଧରି ରହିପାରି ନ ଥା'ନ୍ତା । ଧନ୍ୟ ବିଶ୍ୱାସ, ଧନ୍ୟ ମାତୃଭକ୍ତି । ଏହିପରି ଭକ୍ତିରେ, ଏହିପରି ବିଶ୍ୱାସରେ ସିନା ସୁଫଳ ମିଳେ ।

ସଂସାରରେ ଅନେକ ପ୍ରକାର ଋଷି ଅଛନ୍ତି । ସେମାନଙ୍କ ମଧ୍ୟରେ ମହର୍ଷି, ରାଜର୍ଷି, ଦେବର୍ଷି ପ୍ରଧାନ । ତିନି ଋଷିଙ୍କ ମଧ୍ୟରେ ଦେବର୍ଷିଙ୍କର ଆସନ ଉଚ୍ଚ । ନାରଦ ଦେବର୍ଷି । ସାଧାରଣ ଋଷିଙ୍କର ତେଜ ଦେଖିଲେ; କଥା ଶୁଣିଲେ, ଦୟା ଭୋଗିଲେ, ଲୋକ ସଂସାରର ସବୁ କଥା ଭୁଲିଯାଏ,

ଏପରିକି ନିଜର ବାପ, ମା, ଭାଇଭଉଣୀ, ଖାଦ୍ୟପେୟ ମଧ୍ୟ ମନେ ପଡ଼େ ନାହିଁ । ଦେବର୍ଷିଙ୍କ କଥା ଅବା କ'ଣ କହିବା ? ହରିଙ୍କୁ ଦେଖିବା ସ୍ଥଳେ ଦେବର୍ଷିଙ୍କୁ ଦେଖିବା । ତପସ୍ୟା ନ ଥିଲେ ଦେବର୍ଷିଙ୍କ ଦର୍ଶନ ମିଳେ ନାହିଁ । ଧ୍ରୁବଙ୍କର ଭାଗ୍ୟ ଭଲ, ତପସ୍ୟା କଠୋର, ତେଣୁ ସିନା ନାରଦଙ୍କ ଦର୍ଶନ ପାଇଲେ । ଯେ କୌଣସି ଲୋକ କାହୁଁ ପାଇବ ?

ନାରଦ ବୟସରେ ବୃଦ୍ଧ, ମୁଣ୍ଡର ଜଟାଜାଳ ପୃଷ୍ଠରେ ଲମ୍ବିତ ପାଦରେ କାଷ୍ଠ ପାଦୁକା, ହସ୍ତରେ ବୀଣା, ଶରୀରର ତେଜ ମଧୁର, ସୁନ୍ଦର । ମୂର୍ତ୍ତିଟି ଯେପରି ଦୟାରେ ଗଢ଼ା ହୋଇଛି । ବାଳକ ଧ୍ରୁବ ସେ ମଧୁର ମନୋହର ରୂପ ଦେଖି ଭକ୍ତିରେ ଗଦ୍‌ଗଦ୍ ହୋଇ ଭାବିଲେ, ଏ ନିଶ୍ଚୟ ହରି । ନିଶ୍ଚୟ ପ୍ରଭୁ ଦୟାକରି ଦେଖା ଦେଇଛନ୍ତି । ତତ୍ପରେ ଧ୍ରୁବ ଆଣ୍ଠୁ ମାଡ଼ି ବସି ଦୁଇହାତ ଯୋଡ଼ି ଡାକିବାକୁ ଲାଗିଲେ – "ପ୍ରଭୋ ! ପ୍ରଭୋ ! ହରି ! ହରି ! ଦୀନବନ୍ଧୋ ! ଦୟାକରି ଏ ଅଧମକୁ ଦେଖା ଦେଲେ କି ? ଆସ ପ୍ରଭୋ ! ଦୟା କର, ଉଦ୍ଧାର କର !"

ନାରଦ କହିଲେ – "ବତ୍ସ ! ମୁଁ ହରି ନୁହେଁ !" ଧ୍ରୁବ କହିଲେ – "ପ୍ରଭୋ ! ତେବେ ଆପଣ କିଏ ?" ନାରଦ କହିଲେ – "ବତ୍ସ ! ମୁଁ ହରିଙ୍କର ଦାସ । ତୁମେ କିଏ ବତ୍ସ ! ତୁମେ କାହିଁକି ଏପରି ଏକାକୀ ବୁଲୁଛ ? ଏ ବନରେ ଭୀଷଣ ବ୍ୟାଘ୍ର, ସିଂହ ବହୁତ ଅଛନ୍ତି । ତୁମ୍ଭେ ନିତାନ୍ତ ସୁକୁମାର ଶିଶୁ; ତୁମ୍ଭେ ଏକାକୀ କିପରି ବୁଲୁଛ, ତୁମ୍ଭର ଭୟ ହେଉ ନାହିଁ ?

ଧ୍ରୁବ କହିଲେ – "ପ୍ରଭୋ ! ମୋର ନାମ ଧ୍ରୁବ, ମୁଁ ଅଜ୍ଞାନ ବାଳକ; ହରିଙ୍କି ଖୋଜୁଛି । ହରିନାମ ତୁଣ୍ଡରେ ଧରିଲେ ଦଣ୍ଡ ହୁଏ କି ? କାହିଁ, କେତେ ବଣ ଜଙ୍ଗଲ ବୁଲି ଆସିଲିଣି ତ, କେହି ତ ମୋର କିଛି କରି ନାହିଁ । ପ୍ରଭୋ ! ମୋ ମା କହିଛନ୍ତି, ସେ ପ୍ରଭୁ ସବୁଠାରେ ଅଛନ୍ତି, ତାଙ୍କୁ ଭଜିଲେ କେହି କିଛି କ୍ଷତି କରିପାରିବେ ନାହିଁ । ପ୍ରଭୋ ! ଆପଣ ତ ହରିଙ୍କର ଦାସ, ନିଶ୍ଚୟ ତାଙ୍କୁ ଦେଖିଥିବେ, ଦୟାକରି ଏ ଶିଶୁକୁ ଦେଖାଇଦେବେ କି ?"

ନାରଦ କହିଲେ – "ବତ୍ସ ! ହରିଙ୍କଠାରେ ତୁମ୍ଭର ପ୍ରୟୋଜନ କ'ଣ ? ତୁମ୍ଭେ ତ ରାଜପୁତ୍ର, ତୁମର ଧନ, ଜନ, ରାଜ୍ୟ, ପିତା, ମାତା, ସବୁ ତ ଅଛି । ଆଉ ଅଭାବ କ'ଣ ?"

ଧ୍ରୁବ କହିଲେ – "ପ୍ରଭୋ ! ଶୁଣିବେ, ମୋର ଅଭାବ କ'ଣ ? ମୁଁ ରାଜପୁତ୍ର ସତ୍ୟ, ମୋର ମା' ରାଜରାଣୀ ସତ୍ୟ; କିନ୍ତୁ ମୋର ମା ବର୍ତ୍ତମାନ ଭିକାରୁଣୀ । ମୋର ଜଣେ ବିମାତା ଅଛନ୍ତି, ତାଙ୍କର ନାମ ସୁରୁଚି । ପିତା ଉତ୍ତାନପାଦ ସୁରୁଚିଙ୍କ କଥାରେ ଭୋଳ ହୋଇ ମୋର ମା'ଙ୍କୁ ରାଜନବର ବାହାରେ ରଖାଇଛନ୍ତି । ମୁଁ ସେହି ଦୁଃଖିନୀର ପୁତ୍ର । ଦିନେ ବିମାତାଙ୍କର ପୁତ୍ର ମୋର ଭ୍ରାତା ଉତ୍ତମ ପିତାଙ୍କ କୋଳରେ ବସିଥିଲା । ମୁଁ ମଧ୍ୟ ବସିବାକୁ ଆଗ୍ରହ କଲି; କିନ୍ତୁ ପିତା ମୋତେ ଗ୍ରହଣ କଲେ ନାହିଁ । ସେତିକି ହୋଇଥିଲେ ମୋତେ ବାଧି ନ ଥା'ନ୍ତା । ସେତେବେଳେ ବିମାତା ବହୁ ତିରସ୍କାର କରି ଦୂରଦୂର କଲେ । ସେ ମୋତେ ମାରିଥିଲେ ମୁଁ ସହିଥା'ନ୍ତି; କିନ୍ତୁ ସେ ତାହା ନ କରି ମୋ ମାଆଙ୍କୁ ବହୁତ ତିରସ୍କାର କଲେ । ମୁଁ ସୁନୀତିଙ୍କ ଗର୍ଭରୁ ଜନ୍ମିଲି ବୋଲି ରାଜସିଂହାସନ କଥା ଛାଡ଼ି ଦିଅନ୍ତୁ, ପିତାଙ୍କ କୋଳରେ ସୁଦ୍ଧା ବସିବାକୁ ଯୋଗ୍ୟ ନୁହେଁ ? ମୁଁ ପୁଣି ପାଟରାଣୀର ପୁତ୍ର, ସେଥିରେ ପୁଣି ମୋର ମାଆ ଦୁଷ୍ଟ ନଷ୍ଟ ନୁହଁନ୍ତି । ସେ ଶତ୍ରୁକୁ ସୁଦ୍ଧା ଭଲ ପା'ନ୍ତି । ଲୋକେ ତାଙ୍କୁ ଦେବୀ ପରି ଭକ୍ତି କରନ୍ତି । ମୋର ଏପରି ମାଆଙ୍କୁ ତରିସ୍କାର କଲେ ମୁଁ କଦାପି ସହି ପାରିବି ନାହିଁ । ବିମାତା ଯାହା କହିଥିଲେ, ସେ ସବୁ ଏ ପର୍ଯ୍ୟନ୍ତ ମୋ ହୃଦୟରେ ଲାଗି ରହିଛି । ଏ ଦୁଃଖ ଆଗରେ ଧନ, ଦ୍ରବ୍ୟ, ଅଧିକାର କି ସୁଖ ଦେବ ? ତାହା ନ ହେଲା ବୋଲି ପ୍ରାଣପଣ କରି ହରିଙ୍କି ଖୋଜୁଛି । ତାଙ୍କରି କୃପାରୁ ଉତ୍ତମ ଠାରୁ ଅଧିକ ଉଚ୍ଚସ୍ଥାନ ପାଇପାରିଲେ ମୋ ମାଆଙ୍କର ଦୁଃଖ ଯିବ । ମାଆଙ୍କ ଦୁଃଖ ଦୂର କରି ନ ପାରିଲେ ମୋର ବଞ୍ଚି ରହିବା ଯାହା, ମରିବା ତାହା ।"

ନାରଦ କହିଲେ – "ବତ୍ସ ତୁମ୍ଭର ବୟସ ଅଳ୍ପ । ତୁମେ କ୍ଷୁଦ୍ର ସୁକୁମାର ବାଳକ । ହରିଙ୍କି ପାଇବା ସହଜ ନୁହେଁ । କେତେ କେତେ ଲୋକ ନ ଖାଇ ନ ପିଇ ନ ଶୋଇ ଘୋର ତପସ୍ୟା କରି ହରିଙ୍କି ପାଇ

ପାରି ନାହାନ୍ତି । ତେଣୁ ତୁମ୍ଭେ ଆଉ ବଣ ବୁଦାରେ ବୁଲ ନାହିଁ । ଭୋକ ଶୋଷରେ ଦେହ କ୍ଷୀଣ ହେଲାଣି, କଣ୍ଟା ଲଟାରେ କ୍ଷତ ବିକ୍ଷତ ହେଲାଣି, ଏବେ ଘରକୁ ଫେରିଯାଅ ।

ଧ୍ରୁବ କହିଲେ – "ନାଁ ପ୍ରଭୋ ! ଆପଣ ଆଉ ଏପରି କହନ୍ତୁ ନାହିଁ । ମାଆ କହିଛନ୍ତି – ହରି ଦୀନବନ୍ଧୁ, କୃପାସିନ୍ଧୁ । ସେ ସର୍ବତ୍ର ଅଛନ୍ତି, ତାଙ୍କୁ ଡାକିଲେ ଅବଶ୍ୟ ଦୟା କରିବେ । ହରିଙ୍କି ନ ଦେଖିଲେ ମୁଁ କଦାପି ଫେରିବି ନାହିଁ । ଆପଣ ନିଶ୍ଚୟ ତାଙ୍କୁ ଜାଣନ୍ତି । ତାଙ୍କୁ କେଉଁଠାରେ କିପରି ପାଇବି, ଦୟାକରି କହନ୍ତୁ ।"

ନାରଦ କହିଲେ – "ରାଜପୁତ୍ର । ଆଉ ଏପରି ସାହସ କର ନାହିଁ । ଅନିଦ୍ରା ଅନାହାରରେ ସୁଦ୍ଧା ହରି-ଦର୍ଶନ ତ ମିଳିଲା ନାହିଁ । ସେ ପ୍ରଭୁ ଦୟାମୟ ବୋଲି କିପରି କହୁଛ ? ତୁମ୍ଭେ ଏ ସୁକୁମାର ଶରୀରରେ ଏତେ କଷ୍ଟ ପାଇଲଣି, ତଥାପି ତାଙ୍କର ଦୟା ହେଲା ନାହିଁ ? ଆଉ କାହିଁକି କଷ୍ଟ ପାଇବ ? ଫେରିଯାଅ ।"

ଧ୍ରୁବ କହିଲେ – "ପ୍ରଭୋ ! ହରି ନିଶ୍ଚୟ ଦୟାମୟ । ମୁଁ ଅନାହାର ଅନିଦ୍ରାରେ ରହିଲି ସତ୍ୟ; କିନ୍ତୁ ମୋର ଦେହ ତ ଦୁର୍ବଳ ହୋଇନାହିଁ । ମୋ ମନର ବଳ ତ ବେଳୁଁ ବେଳ ଅଧିକ ହେଉଛି । ସେ ନାମ ନେବାରୁ ସିନା ଏପରି ହୋଇଛି ? ନ ହେଲେ ଉଠିବା ଦୂରେ ଥାଉ, କଥା କହିପାରୁଥା'ନ୍ତି କି ? ପୁଣି ମାଆ କହିଛନ୍ତି, ହରି ଅମୂଲ୍ୟ ଧନ । ତାଙ୍କୁ ପାଇଲେ ପ୍ରାଣୀର ଦୁଃଖକଷ୍ଟ କିଛି ରହେ ନାହିଁ । ଲୋକେ ତ ସାମାନ୍ୟ ଧନ ପାଇଁ ଜୀବନ ଗୋଟାକଯାକ ଧାଇଁଛନ୍ତି । ହରି ତ ଅମୂଲ୍ୟ ଧନ । ମୁଁ ଆଉ ସେଥିପାଇଁ ଅଧିକ କ'ଣ ଧାଇଁଲି । ମୁଁ ମନେ କରୁଛି, ଆହୁରି ଅଧିକ ଧାଇଁବାକୁ ହେବ । ପୁଣି ମନେ କରୁଛି – ଯେତେ ଡାକିଲେ ହରି ଶୁଣନ୍ତେ, ବୋଧହୁଏ ସେତେ ଡାକି ନାହିଁ ବୋଲି ହରି ଶୁଣି ନାହାନ୍ତି । ଅଥବା ଯେପରି ଡାକିଲେ ପ୍ରଭୁ ପ୍ରସନ୍ନ ହୁଅନ୍ତେ, ସେପରି ଡାକିପାରି ନାହିଁ ବୋଲି ଏ ପର୍ଯ୍ୟନ୍ତ ଦୟାମୟଙ୍କର ଦର୍ଶନ ପାଇ ପାରିନାହିଁ । ପ୍ରଭୋ ! ମୁଁ ଅଜ୍ଞାନ ବାଳକ । ଆପଣ ଦୟା କରି ମୋତେ ଉପାୟ ବତାଇ ଦିଅନ୍ତୁ ।"

ପିତାମାତା ପରମ ଦେବତା । ସେ ଏ ପିଣ୍ଡର କର୍ତ୍ତା । ମାଆର ସନ୍ତାନ ପ୍ରତି ଯେ ସ୍ନେହ ମମତା, ତାହା କଥାରେ କହି ହେବ ନାହିଁ, ମନରେ ଭାବି ହେବ ନାହିଁ । ଆତ୍ମୀୟ କହ, ବନ୍ଧୁ କହ, ସହୋଦର କହ, କେହି କେବେ ମାଆଙ୍କ ପରି ଉପକାର କରି ନାହାନ୍ତି ବା କରିପାରିବେ ନାହିଁ । ମାଆ ସନ୍ତାନଲାଗି ନିଜର ସମସ୍ତ ସୁଖ ଛାଡ଼ିଯାଏ । ସେ ନ ଖାଇ, ନ ପିଇ, ନ ଶୋଇ ସନ୍ତାନକୁ ଖୁଆଇ, ପିଆଇ, ଶୁଆଇ ସୁଖ ଲାଭ କରେ । ସନ୍ତାନ ଦୁଷ୍ଟ ହେଉ ଶିଷ୍ଟ ହେଉ, କେବେହେଲେ ମାଆ ତା ପ୍ରତି ଅବହେଳା କରେ ନାହିଁ । ମାଆ ତା ପାଇଁ କେତେ ଗାଳି ତିରସ୍କାର, ଏପରି କି ମାଡ଼ ପର୍ଯ୍ୟନ୍ତ ନ ସହେ ? ସନ୍ତାନ ମାଆର ଆତ୍ମା, ସନ୍ତାନ ମାଆର ପ୍ରାଣ, ସନ୍ତାନର ସୁଖରେ ମାଆ ସୁଖୀ, ଦୁଃଖରେ ଦୁଃଖୀ । ମାଆଙ୍କର ସ୍ନେହ ଉପକାର ଭାବିଲେ ମନ ଅଧୀର ହୋଇପଡ଼େ । ସେ ଦୟାମୟୀ, ସ୍ନେହମୟୀ ଦେବୀଙ୍କ ଆରାଧନା କରି ଯେ ଜୀବନ ଛାଡ଼ିଛି, ସେହି ଏକା ଧନ୍ୟ, ସେହି ଏକା ବୈକୁଣ୍ଠ ସୁଖ ଲାଭ କରେ । ଯାହାର ଭାଗ୍ୟ ଭଲ ଯାହାର ଜ୍ଞାନ ହୋଇଛି, ଯେ ବୈକୁଣ୍ଠ ସୁଖ ପାଇବାକୁ ଇଚ୍ଛା କରେ, ସେହି ସିନା ମାଆଙ୍କୁ ବୁଝିପାରିବ, ଭଜି ପାରିବ ?

ଧ୍ରୁବ ବୃଦ୍ଧ ନୁହେ ଶିଶୁ । ଏତେ ଅଳ୍ପ ବୟସରୁ ଧ୍ରୁବ ମାଆଙ୍କୁ ଚିହ୍ନିପାରିଛି, ମାଆଙ୍କ ଲାଗି ପ୍ରାଣସୁଦ୍ଧା ଦେବାକୁ ପ୍ରସ୍ତୁତ ହୋଇଛି । ଏଥିରେ ଅସମ୍ଭବ କିଛି ନାହିଁ । ଏପରି ଭାବରେ ପ୍ରାଣ ଦେବାକୁ ପ୍ରସ୍ତୁତ ହେଲେ ଲାଭ ଛଡ଼ା କ୍ଷତି ନାହିଁ । ଶେଷରେ ଧ୍ରୁବର ଯାହା ଲାଭ ହେଲା, ତାହା ଦେଖିଲେ ବୁଝାଯିବ – ମାଆଙ୍କ ଉପଦେଶ ପାଳନ କଲେ କି ଲାଭ ଅଛି ? ଯେ ପିତା ମାତାଙ୍କ ମହିମା ବୁଝିପାରିଛି । ସେ ନିଶ୍ଚୟ ଧ୍ରୁବ ପରି ପିତୃମାତୃଭକ୍ତ ହୋଇ ପଡ଼ିବ, ତାହା ହୋଇପାରିଲେ ନିଶ୍ଚୟ ବୈକୁଣ୍ଠ ସୁଖ ଲାଭ କରିବ ।

ଦେବର୍ଷି ନାରଦ ଧ୍ରୁବର ପ୍ରତିଜ୍ଞା ଦେଖି ବିସ୍ମିତ ହୋଇଗଲେ । ପ୍ରଗାଢ଼ ହରିଭକ୍ତି ଦେଖି ସ୍ତମ୍ଭିତ ହୋଇଗଲେ ଏବଂ ପ୍ରବଳ ମାତୃଭକ୍ତି ଦେଖି ଦୟାରେ ତରଳି ଗଲେ । ସେ ଆହ୍ଲାଦିତ ହୋଇ କହିଲେ, "ବତ୍ସ ଧ୍ରୁବ !

ଧନ୍ୟ ତୁମର ହରିଭକ୍ତି, ଧନ୍ୟ ତୁମ୍ଭର ପିତାମାତା । ଆମ୍ଭେ ତୁମ୍ଭର ଏକାଗ୍ରତା ଦେଖି ମୁଗ୍ଧ ହୋଇଅଛୁଁ ବତ୍ସ । ପବିତ୍ର ଯମୁନା ନଦୀର ତୀରରେ ମଧୁବନ ନାମରେ ଗୋଟିଏ ପବିତ୍ର ବନ ଅଛି । ସେ ବନ ବୃକ୍ଷଲତା ପତ୍ରପୁଷ୍ପ ଫଳରେ ଅତି ରମଣୀୟ । ସେହି ପବିତ୍ର ରମଣୀୟ ସ୍ଥଳରେ ସ୍ତୁତି କଲେ ପୀତାମ୍ବର ବେଣୁଧର କମଳଲୋଚନ ଶ୍ୟାମସୁନ୍ଦର ପ୍ରଭୁଙ୍କର ଦର୍ଶନ ମିଳିବା ସହଜ ହେବ ।"

ଧ୍ରୁବ କହିଲେ – "ପ୍ରଭୋ ! ମୁଁ ଅଜ୍ଞାନ ବାଳକ, କିପରି ସ୍ତୁତି କରିବି, ଜାଣେ ନାହିଁ । ଦୟାକରି ଦୀକ୍ଷା ଦିଅନ୍ତୁ ।"

ନାରଦ କହିଲେ – "ବତ୍ସ ! ଯମୁନାର ପବିତ୍ର ଜଳରେ ସ୍ନାନ କରି ଶୁଦ୍ଧପୂତ ହୋଇ ଏକାସନରେ ଅର୍ଦ୍ଧମୁଦ୍ରିତ ନୟନରେ ବସି କରଯୋଡ଼ି ସ୍ତୁତି କରିବ । ଯେତେ ଭୟ ବିପଦ ପ୍ରଲୋଭନ ଆସିଲେ ସୁଦ୍ଧା ଚିତ୍ତ ଚଞ୍ଚଳ କରିବ ନାହିଁ । ସେ ପ୍ରଭୁଙ୍କ ପାଦପଦ୍ମରେ ଏକାଗ୍ରତା ରଖିପାରିଲେ ଜଗତରେ କେହି କିଛି ଅମଙ୍ଗଳ କରିପାରିବେ ନାହିଁ । ସେ ପ୍ରଭୁ ଦୀନବନ୍ଧୁ, ଭକ୍ତବତ୍ସଳ । ତୁମ୍ଭର କରୁଣ କୋମଳ ଡାକରେ ଅବଶ୍ୟ ଦୟା କରିବେ । ବତ୍ସ ! ତୁମେ ବର୍ତ୍ତମାନ ଏହି ଦୀକ୍ଷା ଗ୍ରହଣ କର – "ଓଁ ନମୋ ଭଗବତେ ବାସୁଦେବାୟ ।"

ନାରଦ ଧ୍ରୁବଙ୍କୁ ଉକ୍ତ ଦୀକ୍ଷା ଦେଇ ମଧୁବନକୁ ଯିବାର ମାର୍ଗ ଦେଖାଇ ଦେଇ ବିଦାୟ ନେଲେ । ଧ୍ରୁବ ମଧ୍ୟ ଦେବର୍ଷିଙ୍କ ପାଦତଳେ ସାଷ୍ଟାଙ୍ଗ ଦଣ୍ଡ ପ୍ରଣାମ କରି ମଧୁବନ ଯାତ୍ରା କଲେ ।

# ତୃତୀୟ ପରିଚ୍ଛେଦ

କୌଣସି ମାଆ କେବେ ଶିଶୁପୁତ୍ରକୁ ଶୁଆଇ ନିଜେ ନିଶ୍ଚିନ୍ତ ଭାବରେ ଶୋଇପାରେ ନାହିଁ । କାଳେ ପୁଅର କିଛି ବିପଦ ହେବ, ଏହି ଆଶଙ୍କାରେ ସବୁବେଳେ ତାହାର ମନ ଚଞ୍ଚଳ ଥାଏ । ସେଥିଯୋଗୁଁ ବେଳେ ବେଳେ ତାହାର ନିଦ୍ରାଭଙ୍ଗ ହେଉଥାଏ । ସେହି ବେଳାମାନଙ୍କରେ ସେ ସନ୍ତାନକୁ ଆଲିଙ୍ଗନ କରିପକାଏ ଅଥବା ତାହା ଉପରେ ହାତ ବୁଲାଇ ନେଉଥାଏ । ସେଥିରେ ତା' ମନରେ ଦମ୍ଭ ଏବଂ ସାନ୍ତ୍ୱନା ଆସେ । ଧ୍ରୁବ ସୁନୀତିଙ୍କର ଏକମାତ୍ର ପୁତ୍ର । ସୁତରାଂ ସୁନୀତିଙ୍କୁ କାହୁଁ ବା ନିଦ୍ରା ହେବ ! ସନ୍ତାନ ହେଲା ପରେ ମାଆର ଆଉ ଆହାର ନିଦ୍ରାରେ ସୁଖ ଥାଏ କି ? ସନ୍ତାନର ସୁଖରେ ମାଆର ସୁଖ, ସନ୍ତାନର ଦୁଃଖରେ ମାଆର ଦୁଃଖ । ଆଜି ପୁଣି ଧ୍ରୁବ ବିମାତାର ତିରସ୍କାରରେ ନିତାନ୍ତ ଅଧୀର । ତେଣୁ ସୁନୀତିଙ୍କର ଯାହା ଅବା ନିଦ୍ରା ହୁଅନ୍ତା, ତାହା ମଧ୍ୟ ହେଲା ନାହିଁ । ପୁଅଲାଗି ସେ ରାତିଯାକ ବାୟାଣୀ ପରି ହେଉଥା'ନ୍ତି; କିନ୍ତୁ ଦୁଃଖ ଆସିଲାବେଳେ ତ ନାନା ପ୍ରକାରେ ଆସେ । ସେ କାରଣରୁ ହେଉ ଅଥବା ସଂସାର କ୍ଷେତ୍ରରେ କଠିନ ପରୀକ୍ଷା ଦେବା ପାଇଁ ହେଉ, କିଛି ସମୟ ପାଇଁ ସୁନୀତିଙ୍କର ସାମାନ୍ୟ ନିଦ୍ରା ହୋଇଗଲା । ଧ୍ରୁବ ସେହି ନିଦ୍ରାବେଳାରେ ମାଆଙ୍କଠାରୁ ଅନ୍ତର ହୋଇଅଛନ୍ତି, ଏହା ମାଆ ଜାଣିପାରି ନାହାନ୍ତି । କିଛି ସମୟ ପରେ ମାଆଙ୍କର ନିଦ୍ରାଭଙ୍ଗ ହେବାରୁ ସେ ଶେଯରେ ହାତ ବୁଲାଇ ଦେଖନ୍ତି ତ ଧ୍ରୁବ ନାହିଁ । ପ୍ରାଣର ସଂଖାଳି, ଜୀବନର ସର୍ବସ୍ୱ, ଦୁଃଖିନୀର ଧନ ଧ୍ରୁବକୁ ନ ପାଇବାରେ ସୁନୀତିଙ୍କର ମନରେ ଯେ କି ଆତଙ୍କ ଆସିଥିବ, ତାହା ତାଙ୍କ ଛଡ଼ା କିଏ ଜାଣିବ । ସୁନୀତି ଚମକି ପଡ଼ି ଧ୍ରୁବକୁ ବହୁତ ଡାକିଲେ; କିନ୍ତୁ ଉତ୍ତର ମିଳିଲା ନାହିଁ । ସେହି ଗାଢ଼ ଅନ୍ଧକାରରେ ଘରେ ଏବଂ ବାହାରେ ଖୋଜିଲେ; ମାତ୍ର କିଛି ସଙ୍କେତ ପାଇଲେ ନାହିଁ । ଏଥିରେ ସୁନୀତିଙ୍କର ଦୁଃଖ, ଆବେଗ, ଉଦ୍‌ବେଗ ଅତ୍ୟନ୍ତ ବଢ଼ିଗଲା ।

ସୁନୀତି ଉତ୍ତାନପାଦଙ୍କର ପ୍ରଥମ ରାଣୀ । ଧର୍ମରେ ରାଜ ପରିବାରରେ ତଥା ରାଜ୍ୟ ମଧରେ ତାଙ୍କର ସମ୍ମାନ ବେଶି ହେବାର କଥା । ସମସ୍ତ ରାଣୀଙ୍କ ଅପେକ୍ଷା ତାହାଙ୍କ ନିକଟରେ ଅଧିକ ଦାସ ବା ଦାସୀ ସେବା କରୁଥା'ନ୍ତେ; କିନ୍ତୁ ରାଜ୍ୟ ଆଜି ଧର୍ମଛଡ଼ା ହୋଇଛି । ତେଣୁ ଉତ୍ତାନପାଦ ସୁରୁଚିର କୁଟିଳ କୌଶଳରେ ପଡ଼ି ସାଧ୍ୱୀ ସୁନୀତିଙ୍କୁ ନବରରୁ ତଡ଼ି ଦେଇ ବନବାସ ଦଣ୍ଡ ଦେଇଛନ୍ତି । ସୁନୀତି ଆଜି ଏକାକିନୀ କୁଟିରବାସିନୀ; ମାତ୍ର ଦାସଦାସୀ ଅଭାବରୁ ସ୍ୱୟଂ ସମସ୍ତ କର୍ମ କରିବାରେ ବିମୁଖ ନୁହନ୍ତି । ଏତେ ଦୁଃଖରେ, ଏତେ ଅଭାବରେ ପଡ଼ି ସୁଦ୍ଧା ସେ କ୍ଷଣକ ପାଇଁ ପତିଙ୍କୁ ନିନ୍ଦା କରି ନାହାନ୍ତି । ସେ ବୁଝିଥିଲେ ପତି ସ୍ତ୍ରୀର ଦେବତା । ସେ ବୁଝିଥିଲେ ଯେ ସତ୍ୟରେ ଏବଂ ଧର୍ମରେ ବହୁତ କଠିନ ପରୀକ୍ଷା ଅଛି । ତାଙ୍କର ବିଶ୍ୱାସ ଥିଲା ଯେ, ଧର୍ମ ହିଁ ବୈକୁଣ୍ଠ ସୁଖ ଦେବ । ସେଥିପାଇଁ ସେ ତପସ୍ୱିନୀ ବେଶରେ ପବିତ୍ର ଭାବରେ ଦୁଃଖ କଷ୍ଟ ସହି ଜୀବନ ଯାପନ କରୁଥିଲେ । କେବଳ ଜୀବନସର୍ବସ୍ୱ ଏକମାତ୍ର ପୁତ୍ର ଧ୍ରୁବର ଚନ୍ଦ୍ରବଦନରେ ଚୁମ୍ବନ ଦେଇ ତାହାର ଅମୃତମୟ ସରଳ କଥା ଶୁଣି କ୍ଷୁଦ୍ର କୁଟୀରରେ ସୁଦ୍ଧା ପ୍ରାସାଦ ସୁଖ ଭୋଗ କରୁଥିଲେ । ମର୍ତ୍ତ୍ୟରେ ସୁଦ୍ଧା ସ୍ୱର୍ଗସୁଖଲାଭ କରୁଥିଲେ । ସେହି ସରଳ ସୁକୁମାର ଶିଶୁପୁତ୍ର ଏବେ ଗାଢ଼ ଅନ୍ଧକାରରେ କେଉଁଆଡ଼େ ଗଲା, ତାହା ଅନୁମାନରେ ସୁଦ୍ଧା ଜଣାଯାଉ ନାହିଁ । ଧ୍ରୁବ ସାମାନ୍ୟ ଶିଶୁ ନୁହେଁ, ସେ ରାଜାର ଜ୍ୟେଷ୍ଠପୁତ୍ର, ତାହା ବ୍ୟତୀତ ଅନ୍ୟ କେହି ସିଂହାସନର ଅଧିକାରୀ ହେବା ଧର୍ମରେ ନିଷିଦ୍ଧ । ସେ ପୁଣି ସୁନ୍ଦର, ସରଳ, ସୁବୁଦ୍ଧି ଶିଶୁ । ଏପରି ପୁତ୍ରକୁ ଛାଡ଼ି କେଉଁ ଜନନୀ ସ୍ଥିର ରହିପାରେ ? କେଉଁ ଲୋକର ସତ୍ୟନିଷ୍ଠା, ଧର୍ମବିଶ୍ୱାସ ରହିପାରେ ? ଏହିପରି ସ୍ଥଳରେ ଲୋକେ ଧର୍ମଚ୍ୟୁତ, ସତ୍ୟଭ୍ରଷ୍ଟ ହୋଇଥା'ନ୍ତି । ସତ୍‌କାର୍ଯ୍ୟରେ ଉତ୍ତୀର୍ଣ୍ଣ ହେବାକୁ ହେଲେ ଏହିପରି କଠୋର ପରୀକ୍ଷାରେ ପଡ଼ିବାକୁ ହୁଏ । ଯେ ବିଶ୍ୱାସ ରଖି ଅଟଳ ଭାବରେ ଧର୍ମ ଏବଂ ନ୍ୟାୟରୁ ବିଚ୍ୟୁତ ନ ହୁଅନ୍ତି, ସେହିମାନେ ହିଁ ଅଖଣ୍ଡ ବୈକୁଣ୍ଠ ସୁଖର ଅଧିକାରୀ ହୁଅନ୍ତି ।

ମାଆ ମାତ୍ରକେ ବିଳାସିନୀ ନୁହନ୍ତି, ତପସ୍ୱିନୀ । ସନ୍ତାନ ପାଇବା ପାଇଁ ମାଆ ଯେ କଷ୍ଟ ପାଏ, ପୁଣି ସନ୍ତାନ ପାଳିବା ପାଇଁ ସେ ଯେ ତପସ୍ୟା

କରେ, ତାହା କଳି ହେବ ନାହିଁ । ସନ୍ତାନ ବାତ୍ସଲ୍ୟ ଯୋଗେ ମାଆ ମର୍ତ୍ତ୍ୟରେ ଦେବୀ । ବାତ୍ସଲ୍ୟ ତାହାର ବସନ ଭୂଷଣ, ସେ ହିଁ ତାହାର ପ୍ରାଣ । ସେଥିରେ ସେ ସ୍ୱର୍ଗସୁଖ ଭୋଗ କରିଥାଏ । ତହିଁରୁ ସେ ଯେ ସୁଖ ଏବଂ ଶାନ୍ତି ଲାଭ କରେ, କୌଣସି ପାର୍ଥିବ ପଦାର୍ଥ ତାହା ଦେଇପାରେ ନାହିଁ । ଏଥିଯୋଗୁଁ ମାଆ ଆହାର, ନିଦ୍ରା, ଏପରିକି ନିଜ ଜୀବନକୁ ସୁଦ୍ଧା ବଡ଼ ମନେ କରେ ନାହିଁ । ସୁନୀତି ସେହି ଅନ୍ଧକାର ରାତ୍ରିରେ ଘରେ ବାହାରେ ଚାରିଆଡ଼େ ଧ୍ରୁବକୁ ଖୋଜି ନ ପାଇବାରୁ ଅଧିକ ଅଧୀର ହୋଇପଡ଼ିଲେ । ପୁଅ କାଳେ ରାଜନବରକୁ ଯାଇଥିବ; ଏହା ଭାବି ଦୁଃଖିନୀ ସୁନୀତି ସେହି ଗାଢ଼ ଅନ୍ଧକାରରେ ଏକାକିନୀ ନବରଆଡ଼କୁ ଗମନ କଲେ । ସେତେବେଳେ ସମସ୍ତେ ଗାଢ଼ ନିଦ୍ରାରେ ନିଦ୍ରିତ । ସୁନୀତି କାହାରିକୁ ଦେଖିବାକୁ ନ ପାଇ ଦାସୀମାନଙ୍କର ନାମ ଧରି ଡାକିବାକୁ ଲାଗିଲେ । ଦାସମାନଙ୍କ ମଧ୍ୟରୁ କେହି ବା ଡାକ ଶୁଣି ନ ଶୁଣିଲା, କେହି ଅବା କିଏ ଡାକୁଛ କହି ପୁଣି ପୂର୍ବପରି ନିଦ୍ରିତ ହେଲା । ସେମାନେ ଜାଣୁଛନ୍ତି ଏ କଣ୍ଠସ୍ୱର ସୁନୀତିଙ୍କର; କିନ୍ତୁ ସୁରୁଚି ରାଣୀଙ୍କ ଭୟରେ କେହି ସାହସ କରି ଉତ୍ତର ଦେଉନାହିଁ ବା କବାଟ ଫିଟାଇ ନାହିଁ । ଏଣେ ସୁନୀତିଙ୍କର ଆବେଗ ବେଳୁଁବେଳ ବଢୁଛି । ତେଣୁ କ୍ରମେ କ୍ରମେ ତାଙ୍କର ଡାକ ଉଚ୍ଚ ହେଉଛି । ଶେଷକୁ ଜଣେ ବୃଦ୍ଧା ଦାସୀ ଦୂରରୁ ଡାକ ଶୁଣିପାରି ଶୀଘ୍ର ଆସି ଦୁଆର ଫିଟାଇ ଦେଖେ ତ ଅନ୍ନଦାତ୍ରୀ ପାଟମହିଷୀ । ତହୁଁ ସେ ପାଦତଳେ ପ୍ରଣାମ କରି ହାତଯୋଡ଼ି ଜଣାଇଲେ – "ଏ କି ସର୍ବନାଶ ! ଶ୍ରୀଛାମୁ କାହିଁକି ଏ ଅବସ୍ଥାରେ ।"

ସୁନୀତି କହିଲେ, "ସତ୍ୟ, ସତ୍ୟ ମୋର ବର୍ତ୍ତମାନ ସର୍ବନାଶ । ପ୍ରାଣର ଧନ ଧ୍ରୁବ ଏବେ ଶଯ୍ୟାରୁ କାହିଁ ଚାଲିଯାଇଛି । ଏ ସମ୍ବାଦ ଶୀଘ୍ର ମହାରାଜାଙ୍କୁ ଜଣାଇବା ଆବଶ୍ୟକ । ଅନନ୍ତରେ ସୁନୀତି ଦାସୀ ସହ ରାଜାଙ୍କର ଶୟନ ଗୃହ ନିକଟକୁ ଯାଇ ରାଜାଙ୍କର ନିଦ୍ରାଭଙ୍ଗ କଲେ । ରାଜା ଶଯ୍ୟା ତ୍ୟାଗ କରି ସୁନୀତିଙ୍କୁ ଦୈବାତ୍ ଏପରି ଏକାକିନୀ ଆସିବାର ଦେଖି ସ୍ତମ୍ଭିତ ହୋଇଗଲେ । ଦେଖୁ ଦେଖୁ ସୁନୀତିଙ୍କର ଶୋକର ସିନ୍ଧୁ

ଉଛୁଳି ପଡ଼ିଲା । ସେ ଅତି କଷ୍ଟରେ ଜଣାଇଲେ – "ମହାରାଜ ! ଜୀବନର ସଙ୍ଖାଳି ଧ୍ରୁବ ଶଯ୍ୟାରୁ କେଉଁଆଡ଼େ ଚାଲିଯାଇଛି । ଚାରିଆଡ଼ ଅନେକ ଖୋଜିଲିଣି, କିନ୍ତୁ କାହିଁ ପାଇଲି ନାହିଁ ।" ଏ ସମ୍ବାଦରେ ଉତ୍ତାନପାଦ ରାଜା ଅତିଶୟ ସ୍ତମ୍ଭିତ ହୋଇଗଲେ । ମୁଣ୍ଡରେ ଯେପରି ବଜ୍ରପାତ ହୋଇଗଲା । ଉତ୍ତାନପାଦ ପିତା, ଧ୍ରୁବ ତାଙ୍କର ଔରସ ପୁତ୍ର, ସେ ତାକୁ ପ୍ରାଣପରି ଭଲ ପାଆନ୍ତି । ସେ କେବଳ ସୁରୁଚି ଭୟରେ ଧ୍ରୁବ ପ୍ରତି ସ୍ନେହ ଦେଖାଇ ପାରନ୍ତି ନାହିଁ । ନଚେତ୍ ପୁତ୍ରପ୍ରତି କେଉଁ ପିତାର ସ୍ନେହ ନ ଥାଏ । ଗୁଣ ଯୋଗେ ଶତ୍ରୁ ସୁଦ୍ଧା ଧ୍ରୁବକୁ ଭଲ ପାଏ । ପିତା ଉତ୍ତାନପାଦ ଧ୍ରୁବଭଳି ପୁତ୍ରକୁ ବିଶେଷ ଭାବରେ ଭଲ ନ ପାଇ ରହି ପାରିବେ କି । ସେହି ରାତି ନ ପାହୁଣୁ ରାଜା ଧ୍ରୁବକୁ ଖୋଜିବା ନିମନ୍ତେ ଚାରିଆଡ଼େ ଅଶ୍ୱାରୋହୀ ସୈନ୍ୟ ପଠାଇଲେ । ନଗରର ସର୍ବତ୍ର ଖୋଜା ହୋଇଗଲା; ମାତ୍ର ଧ୍ରୁବ ମିଳିଲା ନାହିଁ । ସୁନୀତି ଏଥିରେ ହତାଶ ହୋଇ କେତେ ଦେବଦେବୀଙ୍କୁ ଡାକିବାକୁ ଲାଗିଲେ । ନଗରରେ ଧ୍ରୁବ ଘେନି କୋଳାହଳ ପଡ଼ିଗଲା । ପ୍ରଜାମାନେ ହାହାକାର କରିବାକୁ ଲାଗିଲେ । ଲୋକେ ଧ୍ରୁବ ଉଦ୍ଦେଶ୍ୟରେ ଦେବ ମନ୍ଦିରମାନଙ୍କର ସ୍ତୁତିପାଠରେ ନିଯୁକ୍ତ ହେଲେ ।

ସୁନୀତି କୌଣସି ପ୍ରକାରେ ଠାବ ନ ପାଇ ନିଜ କୁଟୀରରେ ବସି ପ୍ରଭୁଙ୍କୁ ଡାକି ଡାକି ଶୋକ କରିବାକୁ ଲାଗିଲେ । ସେ ଶୋକ କ୍ରମେ ଶ୍ଳୋକରେ ପରିଣତ ହୋଇ ଶୁଣାଗଲା –

କି ହେଲା କି କଲି କେଣେ ହରାଇଲି ପରାଣ-ପରମ-ପ୍ରୀତିଧନେ,  
କାହିଁକି କେସନ ଏ ଶୂନ୍ୟ ଜୀବନ ରହିବ ଏ ପିଣ୍ଡ ଅକାରଣେ,  
ଜନନୀଏ ସିନା,  
ପୁତ୍ର ଲାଗି ହୋଇଥାଆନ୍ତି ଧନ୍ୟା ।୧।

ଜନନୀ ଜନମ ଜଗତେ ପରମ ଭୋଗ ପାଇଁ ନୁହେଁ ଏ ମରମ,  
ସତତ ସନ୍ତାନ ସୁଖେ ତନମନ ଯୋଗ ହିଁ ଜୀବନେ ତା ଧରମ,  
ତୁଳ ନାହିଁ ତାର,  
ଯୋଗାଯୋଗ କିବା ତହିଁ ଛାର ।୨।

ଦେବଦେବୀ ପୂଜି ବହୁ ବ୍ରତ ଭଜି ଆଶା ସୁଖେ ହୋଇ ନିମଗନ,
ଆହାର ବିହାର ସୁଖ ସମାଚାର ତେଜି ସିନା ଲଭେ ପୁତ୍ର ରତ୍ନ,
ମାତୃ ପ୍ରାଣ ପ୍ରାସ,
ତା ବିନା ଆନ କି ବୁଝେ ଲେଶ ।୩।

ନିଦାଘ ମଧ୍ୟାହ୍ନ-ତପନ କିରଣ ପ୍ରବଳ ପ୍ରାବୃଟ ବୃଷ୍ଟିଧାର,
ଶିଶିର ନିଶୀଥ ନିଦାରୁଣ ଶୀତ ସହେ ମାତା ହୋଇ ଅକାତର,
କେତେ ଅନାହାର,
ନ କରେ ସନ୍ତାନ ଲାଗି ତାର ।୪।

ହେଲେ ସେ ଅନ୍ତର କ୍ଷଣକ ମାତର ଚଉଦିଗେ ଘୋଟେ ଅନ୍ଧକାର,
ନ ରୁଚେ ଆହାର ନ ରୁଚେ ବିହାର ବିଷ ସମ ଲାଗେ ଏ ସଂସାର,
ସେ ତା ଗଣ୍ଠିଧନ,
ଧରେ କି ତା ବିନା ସେ ପରାଣ ।୫।

ଶାରଦ ଚନ୍ଦ୍ରମା ମଧୁରସୁଷମା ପୁତ୍ରମୁଖ ସଙ୍ଗେ ନୋହେ ସରି,
ମଳୟ ମରୁତ ନୋହେ କଦାଚିତ ପୁତ୍ରତନୁ ସ୍ପର୍ଶସୁଖ ପରି,
ପିକ କଳତାନ,
ପୁତ୍ରକଣ୍ଠସ୍ୱନୁଁ ହୁଏ ହୀନ ।୬।

ଛାୟା କାୟା ସରି ପିଣ୍ଡପ୍ରାଣ ପରି ମାତାପୁତ୍ର ଭାବ କି ଅଭିନ୍ନ,
ଅନ୍ତରେ ଅନ୍ତରେ କି ଗୂଢ଼ ମନ୍ତ୍ରରେ ପିହିତ ପରାଣ, ନୁହେଁ ଭିନ୍ନ,
ଦିଏ ଧରାଧାମେ,
ଦିବ୍ୟ ଦେବଭାଗ ସେ ମରମେ ।୭।

କିଏ ସେ କିପରି କାହିଁକି ଏପରି ଲଗାଇ ମୋହନ ମୋହପାଶ,
ପରାଣି ନିକରେ ସୁଖ ପାରାବାରେ ମଜାଇ ହଜାଏ ସେ ହରଷ,
ତାହା ତାଙ୍କୁ ଜଣା,
ଚିନ୍ତି ମତି ହୁଏ ତହିଁ ବଣା ।୮।

ସୁନୀତି ଆହାର ନିଦ୍ରା ତ୍ୟାଗ କରି ଅହୋରାତ୍ର ପରେ ଅହୋରାତ୍ର ଚିନ୍ତା କରିବାକୁ ଲାଗିଲେ । ତାହାଙ୍କର ଚକ୍ଷୁରୁ ଅଜସ୍ର ଲୋତକଧାର ବହିବାକୁ ଲାଗିଲା । ପଲ୍ଲୀବାସୀମାନେ ସୁନୀତିଙ୍କର ଦୁଃଖରେ ଅଧୀର ହୋଇ ନିଜର ସକଳ କର୍ମ ତ୍ୟାଗ କରି ସୁନୀତିଙ୍କୁ ନାନା ସାନ୍ତ୍ୱନା ଦେବାକୁ ଲାଗିଲେ; କିନ୍ତୁ ସେ ଦୁଃଖ କି କଥାରେ ଘୁଞ୍ଚିପାରେ ? ବରଂ ବିଦ୍ୟୁଦଗ୍ନି ପ୍ରବଳ ବୃଷ୍ଟିରେ ଅଧିକ ବୃଦ୍ଧି ପାଇଲା ପରି ଲୋକ ସାନ୍ତ୍ୱନାରେ ଅଧିକ ବଢ଼ିଗଲା । ପ୍ରାଣୋପମ ପୁତ୍ରର ବିଚ୍ଛେଦରେ ଯେଉଁ ପ୍ରାଣ ଅଧୀର ହୋଇଥାଏ, ସେହି ପୁତ୍ର ବ୍ୟତୀତ ଅନ୍ୟ କେହି ଲୋକ ଅଥବା କୌଣସି ପଦାର୍ଥ ତାହାର ଶାନ୍ତି ବିଧାନ କରି ନ ପାରେ । ମାତା ପୁତ୍ର ସମ୍ବନ୍ଧ ଅତି ଅନିର୍ବଚନୀୟ ସମ୍ବନ୍ଧ । ପୁତ୍ରବାନ ପିତା ବା ପୁତ୍ରବତୀ ମାତା ବ୍ୟତୀତ ଅନ୍ୟ କାହାରି ସେ ସମ୍ବନ୍ଧର ମୂଲ୍ୟ ଜାଣିବା ଅସମ୍ଭବ ।

ଦୁଃଖ ବା ଶୋକର ମାତ୍ରା ଅତ୍ୟଧିକ ହୋଇପଡ଼ିଲେ ଲୋକର ପ୍ରାଣ ରହିବା ଅସମ୍ଭବ ହୋଇପଡ଼େ । ସୁନୀତିଙ୍କର ଦୁଃଖର ଆବେଗ ଯେପରି ବଢ଼ିବାକୁ ଲାଗିଲା, ସେଥିରୁ ଜଣାଗଲା, ତାହା ଆଉ ଅଳ୍ପ ବଢ଼ିଗଲେ ସୁନୀତିଙ୍କର ବଞ୍ଚିବା ଅସମ୍ଭବ ହେବ; କିନ୍ତୁ ବିଚିତ୍ରକର୍ମୀ ଦୟାସିନ୍ଧୁ ପରମେଶ୍ୱରଙ୍କର ମହିମା ଅପାର । ସେ ପ୍ରାଣୀକୁ ନାନା ପରୀକ୍ଷାରେ ପକାନ୍ତି, ସତ୍ୟ; କିନ୍ତୁ ପ୍ରେମରେ, ଦୟାରେ ତାକୁ ପାଖେ ପାଖେ ଜଗିଥା'ନ୍ତି, ସେଥିପାଇଁ ସେ ପ୍ରଭୁ ଦୀନବନ୍ଧୁ, କୃପାସିନ୍ଧୁ । ସୁନୀତିଙ୍କର ଜୀବନ ସଙ୍କଟ ହୋଇ ଆସୁଅଛି, ଏମନ୍ତ ସମୟରେ ହଠାତ୍ କାହୁଁ ମୃତ୍ୟୁସଞ୍ଜୀବନୀ ମନ୍ତ୍ରବତ୍ ଅମୃତମୟ ମଧୁର ସଙ୍ଗୀତ ତାହାଙ୍କର କର୍ଣ୍ଣଗୋଚର ହେଲା । ତହୁଁ ସୁନୀତି ଧୀର ନିଷ୍ପନ୍ଦଭାବରେ ସେହି ଦିବ୍ୟ ସଙ୍ଗୀତ ଶୁଣିବାକୁ ଲାଗିଲେ । ଶୁଣାଗଲା –

## ସଙ୍ଗୀତ

କାହିଁକିରେ ମନ, ହେଉ ତନମନ,
ରହିବୁ କି ଭବେ ତୁହି ଚିରଦିନ ।ଘୋଷା।
ନ ଭୁଲ ନ ଭୁଲ ସଂସାର କାନ୍ତାରେ, ପଡ଼ି ଘନଘୋର ଅଜ୍ଞାନ-ଅନ୍ଧାରେ
ବୁଡ଼ିଯିବ ଜ୍ଞାନ, ଛିଡ଼ିଯିବ ଧ୍ୟାନ, ଉଡ଼ିଯିବ ସୁଖ ସପନ ।୧।

କାହିଁ ନାହିଁ ତୋର ନିଜ ଅଧିକାର, ସକଳ ନଶ୍ୱର, ଅଧୀନ କାଳର,
ବୃଥା ମୋର ମୋର କରି ଛାର ନର, ଲଭେ ହାହାକାର କଷଣ ।୨।
ରହିବ କି ତୋର ମଧୁର ଶୈଶବ, ଉଦ୍ଦାମ ଉତ୍ସାହଭରା ଯୁବଭାବ,
ଦିନେ ଏହିପରି ତନୁ ତନୁଶୀରି କାହିଁ ଚାଲିଯିବ ବହନ ।୩।
କାଳବଳେ ତୁଙ୍ଗତରୁ ଗିରିବର, ପଲକେ ପାଲଟେ ଅତଳ ସାଗର,
ଅତଳ ସଲିଳ ପାଲଟେ ଅଚଳ ନଶ୍ୱରତା ବିଶ୍ୱ ଭୂଷଣ ।୪।
ଧନ ଦାରା ସୁତ ଆତ୍ମୀୟ ବାନ୍ଧବ ମମତା ମନ୍ତ୍ରରେ ପରାଣ ବିଭବ,
ଗୋଟି ଗୋଟି ହୋଇ ଯିବେଟି ଉଭେଇ, ସ୍ଥିର ଏ ସଂସାର ମରଣ ।୫।
ପ୍ରଭୁ ପରାତ୍ପର ବ୍ରହ୍ମାଣ୍ଡ ଆଧାର, ଅନନ୍ତ ଅଖଣ୍ଡ ସୁଖର ଭଣ୍ଡାର,
ଭଜ ନିଶିଦିନ, ହେବେ ପରସନ, ଦେବେ ସୁଖଶାନ୍ତି ରତନ ।୬।

ସୁନୀତି ମଧୁର ସଙ୍ଗୀତରେ ଆଶ୍ୱସ୍ତ ହୋଇ ଘରୁ ବାହାରକୁ ବାହାରି ଦେଖନ୍ତି ତ ଦେବର୍ଷି ନାରଦ ବୀଣାବଜାଇ ମଧୁର ସଙ୍ଗୀତ ଗାଇ ଗାଇ କୁଟୀର ଆଡ଼କୁ ଆସୁଅଛନ୍ତି । ନାରଦ ନିକଟରେ ଉପସ୍ଥିତ ହେବାରୁ ସୁନୀତି ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କରି ଜଣାଇଲେ – "ପ୍ରଭୋ ! ଆପଣ ତ ବ୍ରହ୍ମାଣ୍ଡ ଭ୍ରମଣ କରନ୍ତି, ବିଶେଷରେ ଆପଣ ତ୍ରିକାଳଦର୍ଶୀ। ମୋର ଜୀବନର ସଂଖାଳି, ଦୁଃଖିନୀର ଧନ ଧ୍ରୁବକୁ କେଉଁଠାରେ ଦେଖି ଅଛନ୍ତି କି ? ତାହାର ବିରହରେ ପ୍ରାଣପିଣ୍ଡର ମାୟା ଛାଡ଼ିବାକୁ ବସିଲାଣି, ଚତୁର୍ଦ୍ଦିଗ ଅନ୍ଧକାରମୟ ଦିଶିଲାଣି । ପ୍ରଭୋ ! ଜଣାଥିଲେ ଏ ଦୁଃଖିନୀକୁ ଦୟାକରି କହନ୍ତୁ ।"

ନାରଦ କହିଲେ – "ଭାଗ୍ୟବତି ! ଅଧୀର ହୁଅ ନାହିଁ । ଆମ୍ଭେ ସ୍ୱଚକ୍ଷୁରେ ବାଳକ ଧ୍ରୁବକୁ ଦେଖିଅଛୁଁ । ସେ ବର୍ତ୍ତମାନ ଘୋର ବନରେ ହରିଙ୍କି ଖୋଜି ବୁଲୁଛି । ଆମ୍ଭେ ତାହାକୁ ଦୀକ୍ଷା ଦେଇଅଛୁଁ । ତାହାର ଅବଶ୍ୟ ମଙ୍ଗଳ ହେବ, ତୁମ୍ଭେ ଆଉ ଶୋକ କର ନାହିଁ । ତୁମ୍ଭେ ଅଧୀର ହେଉଥିବା ଜାଣି ଆମ୍ଭେ ତୁମ୍ଭଙ୍କୁ ସାନ୍ତ୍ୱନା ଦେବାକୁ ଆସିଅଛୁଁ । ନଚେତ୍ ଏଠାକୁ ଆସିବାର ଅନ୍ୟ କାରଣ ନାହିଁ ।

ସୁନୀତି କହିଲେ – "ପ୍ରଭୋ ! ଧ୍ରୁବ ସରଳ ଶିଶୁ, ସେ ଏକାକୀ କିପରି ଘାର ବନରେ ଶୁଭରେ ରହିବ ? ସେଠାରେ କେତେ ହିଂସ୍ରଜୀବ ଥିବେ, କିଏ ତାକୁ ସେମାନଙ୍କ ଭୟରୁ ରକ୍ଷା କରିବ ?"

"ଧର୍ମଶୀଳେ ! ହରିଭକ୍ତର କେହି ଅନିଷ୍ଟ କରିପାରେ ନାହିଁ । ସେହି ଜଗତ୍‌ପିତା ଦୟାସାଗର ଭକ୍ତର ସଙ୍ଗେସଙ୍ଗେ ଥା'ନ୍ତି । ଧ୍ରୁବ ସେ ପ୍ରଭୁଙ୍କଠାରେ ମନପ୍ରାଣ ଢାଳି ଦେଇଛି । ସେ ପ୍ରଭୁ ଅବଶ୍ୟ ଦୟା କରିବେ । ତୁମ୍ଭର ଏ ଦୁଃଖ ରହିବ ନାହିଁ । ତୁମ୍ଭେ ଜଗତରେ ଧନ୍ୟ ହେବ । ଏ ରାଜ୍ୟ, ଏ ରାଜକୁଳ ତୁମ୍ଭଯୋଗୁଁ ଯୁଗେ ଯୁଗେ ଧନ୍ୟ ହେବ । ଧ୍ରୁବ ନାମ ଭଳି ଲୋକେ ପବିତ୍ର ହେବେ । ତୁମ୍ଭେ ମନରୁ ଦୁଶ୍ଚିନ୍ତା ତ୍ୟାଗ କର । ଧ୍ରୁବର ମଙ୍ଗଳ ଚିନ୍ତା କର, ମନୋରଥ ଅବଶ୍ୟ ପୂର୍ଣ୍ଣ ହେବ ।"

ସୁନୀତି କହିଲେ – "ପ୍ରଭୋ ! ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ କଲି । ଆଶୀର୍ବାଦ କରନ୍ତୁ, ମୋ ଧ୍ରୁବ ଶୀଘ୍ର ଶୁଭରେ ଫେରି ଆସୁ ।" ସୁନୀତି ଏହା କହି ଦେବର୍ଷିଙ୍କ ପାଦତଳେ ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କଲେ । ନାରଦ ଆଶୀର୍ବାଦ କରି ରାଜନବର ଆଡ଼କୁ ଅଗ୍ରସର ହେଲେ ।

ଉତ୍ତାନପାଦ ଧ୍ରୁବର ଚିନ୍ତାରେ ପାନାହାର ତ୍ୟାଗକରି ଦିନୁଦିନ କ୍ଷୀଣ ହେଉଥା'ନ୍ତି। ମନ୍ତ୍ରୀମାନେ ରାଜାଙ୍କର ଏ ଦୁର୍ଗତି ଦେଖି ଅତ୍ୟନ୍ତ ଚିନ୍ତାକୁଳ ହେଲେ। କୌଣସି ପ୍ରକାରେ ସାନ୍ତ୍ୱନାରେ ରାଜାଙ୍କର ମନର ଗତି ପରିବର୍ତ୍ତିତ ହେଲା ନାହିଁ। ରାଜକାର୍ଯ୍ୟରେ କ୍ରମେ ବିଶୃଙ୍ଖଳା ଉପସ୍ଥିତ ହେଲା। ରାଜାଙ୍କର ମନର ପରିବର୍ତ୍ତନ ନିମନ୍ତେ କୌଣସି ଉପାୟ ସ୍ଥିର ହୋଇପାରିଲା ନାହିଁ। ଏହିପରି ଭାବରେ ଦିନ ପରେ ଦିନ ଅତିବାହିତ ହେବାକୁ ଲାଗିଲା; କିନ୍ତୁ ସଂସାରରେ ସବୁଦିନ ସମାନ ଭାବରେ ଯାଏ ନାହିଁ। ଏ ମୁହୂର୍ତ୍ତରେ, ଏ ଦିନର କଥା ଅନ୍ୟ ଦିନରେ ଏ ବର୍ଷର କଥା ଅପର ବର୍ଷରେ ଭିନ୍ନ ପ୍ରକାରେ ହୋଇଥାଏ। ଏ ସବୁ ଦେଖିଲେ ବୁଝାଯାଏ ଯେ ପରିବର୍ତ୍ତନ ଜଗତର ପ୍ରକୃତି। ସୁତରାଂ ଉତ୍ତାନପାଦଙ୍କର କଥଞ୍ଚିତ୍ ସାନ୍ତ୍ୱନାର ସମୟ ଆସିଗଲା । ହଠାତ୍ ରାଜ୍ୟ ମଧ୍ୟରେ ପ୍ରଚାରିତ ହୋଇଗଲା ଯେ ଦେବର୍ଷି ନାରଦଙ୍କର ଶୁଭାଗମନ ହୋଇଅଛି । ରାଜା ଏ ସମ୍ବାଦ ଶୁଣି ଉତ୍ସାହିତ ହୋଇ ଉଠିଲେ । ଦେଖୁ ଦେଖୁ ଦେବର୍ଷି ସିଂହଦ୍ୱାରରେ ଉପସ୍ଥିତ ହେଲେ । ଉତ୍ତାନପାଦ ନାରଦଙ୍କର ଉପସ୍ଥିତି ଜାଣି କ୍ଷଣ ବିଳମ୍ବ ନ କରି ପାଛୋଟି ଯାଇ ନାରଦଙ୍କର ପାଦତଳେ ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କରି

କହିଲେ – "ପ୍ରଭୋ ! ଆଜି ମୋର କି ଭାଗ୍ୟ ! ଆପଣଙ୍କର ଏ କି ଦୟା ! ମୋର ସମସ୍ତ ତପସ୍ୟାର ଫଳ ଆଜି ମୁଁ ପାଇଲି କି ? ପ୍ରଭୋ ! ମୁଁ ମହାପାପୀ, ସୁରୁଚି କଥାରେ ଭୁଲି ସୁନୀତି ଭଳି ଦେବୀଙ୍କୁ ବନବାସିନୀ କରିଅଛି, ପୁଣି ସେହି ସୁରୁଚି କୋପକୁ ଡରି ପ୍ରାଣର ପ୍ରାଣ ଧ୍ରୁବକୁ ହରାଇ ବସିଛି । ପ୍ରଭୋ ! ଏ ମହାପାପର ପ୍ରାୟଶ୍ଚିତ ଅଛି କି ? ଦେବର୍ଷି ! ଏ ଅନୁତାପରୁ ଉଦ୍ଧାର ପାଇବାର ଉପାୟ ଅଛି କି ? ଦୁଃଖରେ ଛାତି ଫାଟି ଯାଉଛି, ଆଉ ସହି ହେଉନାହିଁ । ଦୟାକରି ଉପାୟ ବତାଇ ଦିଅନ୍ତୁ ।"

ନାରଦ କହିଲେ – "ରାଜନ୍ ! ଧୈର୍ଯ୍ୟଧର, ଅଧୀର ହୁଅନାହିଁ । ବିପଦରେ ଅଧୀର ହେବା କାପୁରୁଷ ଲକ୍ଷଣ । କର୍ମର ଫଳ ଅବଶ୍ୟ ଭୋଗିବାକୁ ହେବ, କେହି ତାହାର ଅନ୍ୟଥା କରିପାରିବ ନାହିଁ । ଯେ ଯେପରି କର୍ମ କରିବ, ସେ ସେହିପରି ଫଳ ପାଇବ । କେହି କେବେ ମନ୍ଦ କାର୍ଯ୍ୟ କରି ଭଲ ଫଳ ପାଇନାହିଁ କିମ୍ବା ଭଲ କାର୍ଯ୍ୟ କରି ଦଣ୍ଡ ଭୋଗିନାହିଁ । ସେଥିପାଇଁ ଲୋକେ ମନ୍ଦ କାର୍ଯ୍ୟର କ୍ଷଣିକ ସୁଖରେ ନ ଭୁଲି ପ୍ରାଣପଣ ଯତ୍ନ କରି ଭଲ କାର୍ଯ୍ୟ କରିଥା'ନ୍ତି । ନ ହେଲେ ବିଶୁଦ୍ଧ ଶାନ୍ତିପୂର୍ଣ୍ଣ ସୁଖ ମିଳିବା ଅସମ୍ଭବ । ସେଥିପାଇଁ ଲୋକେ ଧନରତ୍ନ ପ୍ରତି ଦୃଷ୍ଟି ନ ଦେଇ ବିଳାସ ବ୍ୟସନର ମୋହରେ ନ ପଡ଼ି, ସଦ୍‌ଗୁରୁଙ୍କର ସଦୁପଦେଶ ବଳରେ ସତ୍‌କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି । ସଂସାର ବନ ବିଷମ ସ୍ଥାନ । ବିଦ୍ୟା ଏବଂ ଜ୍ଞାନ ନ ଥିଲେ ସେଥିରୁ ଉତୁରିବା ସହଜ ନୁହେଁ । ସେ ସବୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇପାରିଲେ ଆଉ ଦୁଃଖ ରହେ ନାହିଁ । ଯେଉଁମାନେ ଲୋଭରେ ବା ମୋହରେ ପଡ଼ି ସତକୁ ଛାଡ଼ି ଅସତ୍‌ରେ ମାତନ୍ତି, ସେମାନଙ୍କର ଇହକାଳ ଓ ପରକାଳ ଉଭୟ ଦୁଃଖମୟ ହୁଏ । ଆପଣ ସାମାନ୍ୟ ଭ୍ରମରେ ପଡ଼ି କି ସନ୍ତାପ ଭୋଗ କରୁଛନ୍ତି, ତାହା ଜାଣି ପାରୁଛନ୍ତି, ଆଉ ବିଶେଷ କ'ଣ କହିବି ? ସେ ଯାହା ହେବାର ତାହା ହୋଇ ଯାଇଅଛି । ଆପଣ ଅନେକ ପୁଣ୍ୟ କରିଅଛନ୍ତି । ସୁତରାଂ ତାହାରି ବଳରେ ଧ୍ରୁବର ଆଜି କୁଶଳରେ ଅଛି, ଧ୍ରୁବ ଆଜି ତାହାର ବଳରେ ଦୟାମୟ ହରିଙ୍କି ଖୋଜି ବୁଲୁଛି । ତାହାର ନିଶ୍ଚୟ ମଙ୍ଗଳ ହେବ । ତାହାଯୋଗେ ଆପଣ କୃତାର୍ଥ ହେବେ ଏବଂ ଆପଣଙ୍କର ଏ ରାଜବଂଶ ପୃଥିବୀରେ ଯୁଗେ ଯୁଗେ ଧନ୍ୟ ହେବ ।

ଆଉ ଅଧୀର ହୁଅନ୍ତୁ ନାହିଁ । ଏଣିକି ଆଉ ସୁରୁଚିର କୁଟିଳ କଥାରେ ଭୁଲନ୍ତୁ ନାହିଁ । ସୁନୀତି ଉପରେ ସ୍ନେହ ଦୃଷ୍ଟି ରଖି ରାଜକାର୍ଯ୍ୟରେ ମନଯୋଗ କରନ୍ତୁ । ଏଣିକି ସୁଖରେ, ଶୁଭରେ ଦିନ ଯିବ । ଆମ୍ଭେ ବର୍ତ୍ତମାନ ବିଦାୟ ନେଉଅଛୁ ।"

ଦେବର୍ଷି ନାରଦଙ୍କ କଥାରେ ଉତ୍ତାନପାଦଙ୍କର ଦଗ୍ଧପ୍ରାଣ ଅଙ୍କୁରିତ ହୋଇ ଆସିଲା । ନାରଦଙ୍କର ଉପଦେଶରେ ଉତ୍ତାନପାଦଙ୍କର ମୋହନିଦ୍ରା ଅପସାରିତ ହୋଇଗଲା ଏବଂ ସାନ୍ତ୍ୱନାରେ ପ୍ରାଣରେ ଉତ୍ସାହର ସ୍ପନ୍ଦନ ହେଲା । ରାଜା କୃତାର୍ଥ ହୋଇ ଦେବର୍ଷିଙ୍କ ପାଦତଳେ ଭକ୍ତି ଗଦ୍‌ଗଦ୍ ହୋଇ ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କରି ଦେବର୍ଷିଙ୍କୁ ବିଦାୟ ଦେଇ ରାଜକାର୍ଯ୍ୟରେ ନିଯୁକ୍ତ ହେଲେ ।

# ଚତୁର୍ଥ ପରିଚ୍ଛେଦ

ଯାହାର ହୃଦୟ ପବିତ୍ର, ମନ ନିର୍ମଳ, ଉଦ୍ଦେଶ୍ୟ ସାଧୁ, ପକେଟ ଖାଲି ଭଗବାନ ତାହାର ସହାୟ । ଖଳ, ଖଣ୍ଡ, ଦୁଷ୍ଟ, ନଷ୍ଟ, ହିଂସ୍ର କେହି ତାହାର ଅନିଷ୍ଟ କରିପାରନ୍ତି ନାହିଁ । ଧ୍ରୁବ ନାରଦଙ୍କଠାରୁ ବିଦାୟ ନେଇ ସେହି ଦେବର୍ଷିଙ୍କ ପ୍ରଦତ୍ତ ମନ୍ତ୍ର ଜପି ଜପି କ୍ରମେ ଜଙ୍ଗଲ ପରେ ଜଙ୍ଗଲ ପାର ହେଲେ । ତାହାଙ୍କର ଲକ୍ଷ୍ୟ କେବଳ ସେହି ମଧୁବନର କାଳିନ୍ଦୀତୀର; କିନ୍ତୁ ମଧୁବନ କିଏ ବା ଯମୁନା କେଉଁଠାରେ, ଶିଶୁ ଧ୍ରୁବ ଜାଣନ୍ତି ନାହିଁ । କେବଳ ଯମୁନାର ଜଳ ନୀଳ, ଏତିକିମାତ୍ର ସଙ୍କେତ ନାରଦଙ୍କଠାରୁ ଜାଣିଛନ୍ତି । ଦେଖୁ ଦେଖୁ ଧ୍ରୁବ ମଧୁବନରେ ଉପସ୍ଥିତ ହେଲେ । ମାର୍ଗରେ କୌଣସି ଭୟ ବା ବିପଦ ପଡ଼ି ନାହିଁ । ଏମନ୍ତ କି ସେ ଘନ ଅରଣ୍ୟରେ ପାଦରେ କଣ୍ଟାଟିଏ ସୁଦ୍ଧା ଫୁଟି ନାହିଁ । ଏହା ଯେ ପ୍ରଭୁଙ୍କ କୃପାର ନିଦର୍ଶନ, ଏଥିରେ ସନ୍ଦେହ କ'ଣ ଅଛି ?

ମଧୁବନ ବେଣୁଧର ଶ୍ୟାମସୁନ୍ଦରଙ୍କର ଲୀଳାକ୍ଷେତ୍ର । ସେଠାରେ ନିତ୍ୟବସନ୍ତ ବିରାଜିତ । ବୃକ୍ଷଲତାମାନ ପତ୍ରପୁଷ୍ପରେ ସୁସଜ୍ଜିତ, ସୁନ୍ଦର ଏବଂ ମଧୁର । କୋଇଲି, କଜଳପାତି ପ୍ରଭୃତିଙ୍କର ପବିତ୍ର ମଧୁର ସଙ୍ଗୀତରେ ବନସ୍ଥଳୀ ମୁଖରିତ । ସତତ ନର୍ତ୍ତରତ ମୟୂରପୁଚ୍ଛରେ ସେ ବନ ସୁଚିତ୍ରିତ । ଯମୁନାର ନୀଳକମଳ ସୌରଭରେ ଦିଗବିଦିଗ ଆମୋଦିତ । ମନ୍ଦ ମଧୁର ମଳୟାନିଳରେ ପ୍ରାଣ ହିଲ୍ଲୋଳିତ । ଧ୍ରୁବ ଏ ପବିତ୍ର ମଧୁର ସୁନ୍ଦର ସ୍ଥଳରେ ପ୍ରବେଶ କଲାକ୍ଷଣି ଅପୂର୍ବ ବିଭୁପ୍ରେମରେ ମୁଗ୍ଧ ହୋଇଗଲେ । ସେ ସେହି କାଳିନ୍ଦୀତୀରରେ ଏକାସନରେ ଅର୍ଦ୍ଧମୁଦ୍ରିତ ନୟନରେ ବସି 'ଓଁ ନମୋ ଭଗବତେ ବାସୁଦେବାୟ' ମନ୍ତ୍ର ଜପ କରିବାକୁ ଲାଗିଲେ । ପାନାହାର

ତ୍ୟାଗକରି ଧ୍ରୁବ ଘୋର ତପସ୍ୟାରେ ମଗ୍ନ ହେଲେ । ତାଙ୍କୁ ଆଉ ଚନ୍ଦ୍ର ସୂର୍ଯ୍ୟଙ୍କର ଉଦୟାସ୍ତ ଜଣାଗଲା ନାହିଁ । ଯୋଗିଋଷିମାନେ ଧ୍ରୁବଙ୍କର ତପସ୍ୟାରେ ଅଭିଭୂତ ହୋଇଗଲେ । ଶିଶୁଯୋଗୀଙ୍କର କଠୋର ତପସ୍ୟା ବିଷୟ କ୍ରମେ ତିନିପୁରରେ ପ୍ରଚାରିତ ହୋଇଗଲା ।

ଜଗତରେ ଦେବତାମାନଙ୍କର ମାହାତ୍ମ୍ୟ ଅଧିକ । ସେମାନେ ସ୍ୱର୍ଗରେ ବାସ କରନ୍ତି । ଇନ୍ଦ୍ର ପୁଣି ଦେବତାମାନଙ୍କ ମଧ୍ୟରେ ରାଜା । ଏଥିପାଇଁ ତାହାଙ୍କର ନାମ ଦେବରାଜ । ଅତି କଠୋର ତପସ୍ୟା କରିପାରିଲେ ଇନ୍ଦ୍ରପଦ ମିଳିଥାଏ । କେବେ କେହି ଘୋର ତପସ୍ୟା କଲେ କାଳେ ନିଜର ଅଧିକାର ଚାଲିଯିବ ଭାବି ଇନ୍ଦ୍ରଙ୍କର ଅତ୍ୟନ୍ତ ଆତଙ୍କ ହୋଇଥାଏ । ବର୍ତ୍ତମାନ ଶିଶୁ ଧ୍ରୁବର କଠୋର ତପସ୍ୟା ଦେଖି ଇନ୍ଦ୍ର ଆଶଙ୍କାରେ ଅସ୍ଥିର ହୋଇଗଲେ । ସେ ଆଶଙ୍କାରୁ ରକ୍ଷାପାଇବା ନିମନ୍ତେ ନିଜେ କିଛି ଉପାୟ ସ୍ଥିର କରି ନ ପାରି ଦେବତାମାନଙ୍କୁ ଡକାଇଲେ । ଯଥା ସମୟରେ ସୁଧର୍ମା ସଭା ବସିଗଲା । ଇନ୍ଦ୍ର, ଅଗ୍ନି, ବରୁଣ ପ୍ରଭୃତି ତେତିଶକୋଟି ଦେବତା ସଭାରେ ଉପସ୍ଥିତ ହେଲେ । ଧ୍ରୁବର ତପସ୍ୟା ଭଙ୍ଗ ବିଷୟରେ ସଭାରେ ନାନା ମନ୍ତ୍ରଣା ହେଲା । ଛଳେ, ବଳେ, କୌଶଳେ ଯେ କୌଣସି ଉପାୟରେ ଧ୍ରୁବର ତପସ୍ୟା ଭଙ୍ଗ କରିବା ନିମନ୍ତେ ସଭାରେ ସ୍ଥିର ହେଲା । ତହୁଁ ଦେବତାମାନେ ଆଉ ବିଳମ୍ବ ନ କରି ଇନ୍ଦ୍ରଙ୍କ ସଙ୍ଗେ ଧ୍ରୁବଙ୍କ ନିକଟକୁ ବାହାରିଲେ । ସେମାନେ ବନ ମଧ୍ୟରେ ଲୁଚିରହି ଗୋଟିଏ ପରେ ଗୋଟିଏ କପଟରୂପ ଧରି ଧ୍ରୁବର ତପୋଭଙ୍ଗ ନିମନ୍ତେ ବାହାରିଲେ । ଦେବତାମାନେ ଭାବିଲେ ଧ୍ରୁବ ଶିଶୁଟାଏ, ତାକୁ ଭୁଲାଇବା କଷ୍ଟକର ନୁହେଁ । ଏଣୁ ଯେ ଯେତେବେଳେ ଯେଉଁରୂପ ଧରିଯା'ନ୍ତି, ସେ ସେତେବେଳେ ଭାବନ୍ତି ଏବଂ କହନ୍ତି – "ଏଇଥର ଧ୍ରୁବର ସବୁ ତପସ୍ୟା ଗଲା ।" କିନ୍ତୁ ଫଳରେ ଧ୍ରୁବ ଅଟଳ, ଅଚଳ ।

ପ୍ରଥମରୁ କେହି ଦେବତା ଧ୍ରୁବର ମା ସୁନୀତି ବେଶରେ ଧ୍ରୁବ ନିକଟରେ ପହଞ୍ଚି ହଠାତ୍ ଛାତିରେ ହାତ ବାଡ଼େଇ ବାତ୍ସଲ୍ୟରେ ବିକଳ ହୋଇ କହିଲେ – "ବାପରେ ! ଧନରେ ! ବିଧାତା ମୋ କପାଳରେ

କ'ଣ ଏହା ଲେଖିଥିଲା ? ରାଜରାଣୀ ହୋଇଥିଲି, ଭିକାରୁଣୀ ପରି ବନରେ ରହିଲି, ରାଜଭୋଗ ଛାଡ଼ି ବନ ଫଳମୂଳରେ ଚଳିଲି । ଧନରେ ! ସେଥିପାଇଁ ଦିନେ ଟୋପାଏ ସୁଦ୍ଧା ଲୁହ ଗଡ଼ାଇ ନ ଥିଲି । ତୋ ଚନ୍ଦ୍ରମୁଖ ଦେଖି ସବୁ ପାସୋରି ପକାଉଥିଲି, ତୋ ଘେନି ସିନା ମର୍ତ୍ତ୍ୟରେ ସ୍ୱର୍ଗସୁଖ ଭୋଗୁଥିଲି ? ଏତେ ଦୁଃଖର, ଏତେ ବିପଦର ଧନ ତୁ, ତୋତେ ଛାଡ଼ି ମୁଁ ଯାହା ବଞ୍ଚିଛି । ଜାଣି ନ ଥିଲି ବାବୁ ଏ ପ୍ରାଣ ଏଡ଼େ କଠୋର ବୋଲି । ବାବୁରେ । କଥା କହୁନାହୁଁ କିଆଁ ? ତୁ ଏ ବାଘଭାଲୁ ଜଙ୍ଗଲରେ ନ ଖାଇ ନ ପିଇ ଏକାକୀ ଏପରି କଷ୍ଟ ପାଇବୁ, ମୁଁ ଏହା ପୁଣି ଦେଖିବି ? ବାବୁରେ ! କେବେ ତ କୌଣସି କଥାରେ ଅମାନିଆ ହୋଇନାହୁଁ, ଏବେ ଏ ଦୁଃଖିନୀର କଥା ଶୁଣୁନାହୁଁ କିଆଁ ? ଥରେ ତୋତେ ଆଲିଙ୍ଗନ କରି ମନଃପ୍ରାଣ ଶୀତଳ କରେ ।"

ମାୟା ସୁନୀତି ଏହିପରି ବହୁତ କପଟ ସ୍ନେହ ଦେଖାଇଲେ ହେଁ ଧ୍ରୁବକୁ ତିଳେମାତ୍ର ବିଚଳିତ କରିପାରିଲା ନାହିଁ । ଧ୍ରୁବ ଜାଣିପାରିଛନ୍ତି ଏ ମୋ ମା' ନୁହଁନ୍ତି । ଏହା ମାୟା ରୂପ । ମା' ହୋଇଥିଲେ ସଙ୍ଗେ ସଙ୍ଗେ ଆଲିଙ୍ଗନ କରି ପକାଇଥା'ନ୍ତେ । ଦେବର୍ଷି ନାରଦ କହିଥିଲେ, ତପସ୍ୟାରେ ବହୁତ ମାୟାରୂପ ଦେଖାଯାଇଥାଏ । ଏହା ସେହି ମାୟା ଛଡ଼ା ଆଉ କିଛି ନୁହେଁ । ଧ୍ରୁବ ଏହିପରି ସିଦ୍ଧାନ୍ତ କରି ତପସ୍ୟାରୁ ବିଚଳିତ ନ ହେବାକୁ ମାୟା ସୁନୀତି ବିରସ ହୋଇ ଫେରି ଆସିଲା ।

ମାୟା ସୁନୀତିର ଗତିବିଧି ଦେଖି ଇନ୍ଦ୍ର ମନେ କରିଥିଲେ – ଏଥିରେ ନିଶ୍ଚୟ ଧ୍ରୁବର ତପୋଭଙ୍ଗ ହେବ; କିନ୍ତୁ କାର୍ଯ୍ୟରେ ତାହା ହେଲା ନାହିଁ । ତହୁଁ ଇନ୍ଦ୍ରଙ୍କର ମନ ଅଧିକ ବିରସ ହୋଇଗଲା । ଏହା ଦେଖି କେହି ଦେବତା ପ୍ରତିଜ୍ଞା କରି କହିଲେ – "ଦେବରାଜ ! ଆପଣ ଆଉ ଅଳ୍ପ ସମୟ ଅପେକ୍ଷା କରନ୍ତୁ । ମୁଁ ସୁରୁଚି ରୂପରେ ଧ୍ରୁବର ଯୋଗଭଙ୍ଗ କରିବି । ସେତେବେଳେ ଦେଖିବେ ମୋହର କି ପରାକ୍ରମ ଅଛି । ଧ୍ରୁବ ଛାର ଗୋଟାଏ ପଞ୍ଚମବର୍ଷୀୟ ଶିଶୁ । ସେ କ'ଣ ଆମ ମାୟାକୁ ବଳିଯିବ ?" ଏହା କହି ସେ ଦେବତା ମାୟା ସୁରୁଚି ରୂପରେ ଧ୍ରୁବ ନିକଟକୁ ଯାଇ

କହିଲେ – "ବତ୍ସ ଧ୍ରୁବ ! ମୁଁ ତୋହର ବିମାତା ସୁରୁଚି । ଅଜ୍ଞାନରେ ପଡ଼ି ତୋତେ କେତେ କଟୁକଥା କହି ପକାଇଛି । ବାବୁ ! ସେଗୁଡ଼ାକ ମୋହରି ଯୋଗୁଁ । ତୁ ଅଭିମାନରେ ପଡ଼ି ଏ ସୁକୁମାର ବୟସରେ ରାଜ୍ୟ ଛାଡ଼ି ଚାଲିଆସିଲୁ । ଏଥିରେ ରାଜ୍ୟର ପ୍ରଜାମାନେ ହାହାକାର କରୁଛନ୍ତି । ରାଜ୍ୟରେ ଆଉ କାହାରି ସୁଖଶାନ୍ତି ନାହିଁ । ମୋ ଘେନି ଏତେଗୁଡ଼ାଏ ପ୍ରଜା ଦୁଃଖକଷ୍ଟ ପାଇବାରୁ ମୋ ମନ ଥୟ ହେଲାନାହିଁ । ତେଣୁ ତୋତେ ନେବାଲାଗି ତୋ ପାଖକୁ ଦୌଡ଼ି ଆସିଛି । ବଡ଼ ହୁଏ, ସାନ ହୁଏ, ମୁଁ ତୋର ମା' । ମା' ହୋଇ ମଧ୍ୟ ମୋର ଦୋଷ ମାନୁଛି । ଯାହା ହେବାର ତାହା ହୋଇଛି । ଏବେ ମୋ କଥା ମାନି ଘରକୁ ଫେରି ଚାଲ । ମୁଁ ସତ୍ୟ ସତ୍ୟ ପ୍ରତିଜ୍ଞା କରିଛି – ଆଜିଠାରୁ ରାଜସିଂହାସନରେ ମୋର ପୁଅ ଉତ୍ତମର ଆଉ ଅଧିକାର ରହିବ ନାହିଁ । ତୁମ୍ଭେ ସେ ସିଂହାସନର ଅଧିକାରୀ ହେଲ । ଆସ ବାପା ! ଅଭିମାନ ଛାଡ଼ ।" ମାୟା ସୁରୁଚି ଏହିପରି ବହୁ କପଟ ସ୍ନେହ ଦେଖାଇଲେ ହେଁ ଧ୍ରୁବ ପୂର୍ବପରି ଅଟଳ ଭାବରେ ରହି କେବଳ 'ଓଁ ନମୋ ଭଗବତେ ବାସୁଦେବାୟ' ମନ୍ତ୍ର ଜପ କରିବାରେ ନିଯୁକ୍ତ ଥା'ନ୍ତି । ମାୟା ସୁରୁଚି କୌଣସି ପ୍ରକାରେ ସୁଫଳ ଲାଭ କରି ନ ପାରିବାରୁ ନିରାଶ ହୋଇ ଫେରିଗଲା ।

ଏହାପରେ ଦେବମଣ୍ଡଳୀ ମଧ୍ୟରେ ସ୍ଥିର ହେଲା, ପରୀକ୍ଷା କରି ତ ଦେଖାଗଲା – ଧ୍ରୁବ ସ୍ନେହମମତାରେ ବଶହେବାର ପାତ୍ର ନୁହେଁ । ସେ ଏ ଶିଶୁ ବୟସରେ ସ୍ନେହ ମମତା ବା କ'ଣ ବୁଝିବ । ଏଠାରେ ଭୟ ହିଁ ପ୍ରଧାନ ଅସ୍ତ୍ର । ଭୀଷଣ ରୂପରେ ଡରାଇଲେ ଧ୍ରୁବ ଏକାବେଳକେ ଏଠା ଛାଡ଼ି ଚାଲିଯିବ । ଆଉ ରହିବ ନା ତପସ୍ୟା କରିବ ? ଏକଥା ସମସ୍ତଙ୍କ ମନକୁ ପାଇବାରୁ କେତେକ ଦେବତା ଭୀଷଣ ରାକ୍ଷସ ରୂପ ଧରି ବାହାରିଲେ । ସେ ବିକଟ ବୀଭତ୍ସରୂପ ଦେଖିଲେ ପିଲାକଥା ଦୂରେ ଥାଉ, ସାହସୀ ବୀରପୁରୁଷର ସୁଦ୍ଧା ପ୍ରାଣ ଛାଡ଼ିଯିବ । ମାୟା ରାକ୍ଷସମାନେ ଭୀଷଣ ଚିତ୍କାର କରି ଧ୍ରୁବକୁ ନାନା ଭୟ ଦେଖାଇଲେ; କିନ୍ତୁ ସେଥିପ୍ରତି ଧ୍ରୁବର ଭ୍ରୂକ୍ଷେପ ନାହିଁ । ସେ ମଧୁମୟ ହରିକୀର୍ତ୍ତନ କରି ଆନନ୍ଦରେ ମଗ୍ନ । ମୁଖମଣ୍ଡଳର ଜ୍ୟୋତି କ୍ରମଶଃ ମନୋହର ହେଉଛି । ମାୟା ରାକ୍ଷସମାନେ

ଏ ସବୁ ଘଟଣା ଦେଖି ନିରାଶ ହୋଇ ଫେରି ଆସିଲେ । ତତ୍‌ପରେ ପୁଣି ଆହୁରି କେତେକ ଦେବତା ସିଂହ, ବ୍ୟାଘ୍ର, ଭଲ୍ଲୁକ, ସର୍ପ ପ୍ରଭୃତି ହିଂସ୍ରଜନ୍ତୁ ରୂପରେ ଧ୍ରୁବକୁ ନାନା ଭୟ ଦେଖାଇଲେ; କିନ୍ତୁ ସେଥିରେ କିଛି ଫଳ ହେଲା ନାହିଁ ।

ଜଗତରେ ଏକାଗ୍ରତା ଅମୋଘ ଅସ୍ତ୍ରର ସାହାଯ୍ୟ ନେଲେ ଆଉ ବିପଦର ଆଶଙ୍କା ନ ଥାଏ । ଏକାଗ୍ରତା ମନ୍ତ୍ରରେ ଦୀକ୍ଷିତ ହେଲେ କୌଣସି ଲୋଭନୀୟ ସୁନ୍ଦର ପଦାର୍ଥ ମନକୁ ଟଳାଇ ପାରେ ନାହିଁ କିମ୍ବା ବିଶ୍ୱପ୍ରଳୟ ମନରେ ଆଶଙ୍କା ଆଣିପାରେ ନାହିଁ । ଏକାଗ୍ରଲୋକ ହିଁ ଯୋଗୀ । ସେ ଯୋଗୀର ପାଦତଳେ ଦେବରାଜ ଇନ୍ଦ୍ରଙ୍କର ମୁକୁଟମଣ୍ଡିତ ମସ୍ତକ ଭୂଲୁଣ୍ଠିତ । ଶତ ସହସ୍ର କୁବେର ଭଣ୍ଡାରରେ ଧନରାଶି ତାହାଙ୍କର ଚରଣ ରେଣୁରୁ ହୀନ । ବିଭୁ କୃପାରୁ ଧ୍ରୁବ ଆଜି ଆନନ୍ଦମୟ ପ୍ରଭୁଙ୍କର ପାଦପଦ୍ମରେ ତଦ୍‌ଗତ ହୋଇପାରି ଅଛନ୍ତି । ତାହାଙ୍କର ଆଉ ଦୁଃଖ କ'ଣ । ବିପଦ ବା କିପରି ତାଙ୍କ ପାଖକୁ ଆସିବ । ସ୍ୱୟଂ ନିଖିଳବ୍ରହ୍ମାଣ୍ଡନାଥ ଧ୍ରୁବଙ୍କର ଭିତରେ, ବାହାରେ ବିରାଜମାନ । ସେଠାରେ ଦେବମାୟା, ଅସୁରମାୟା ଅଥବା ଅନ୍ୟ କୌଣସି ପ୍ରକାର ମାୟା ଅପ୍ରକାଶିତ ରହିପାରେ କି ? ଧନ୍ୟ ହେ ଶ୍ରଦ୍ଧାବୀର ! ଧନ୍ୟ ହେ ସୁନୀତିପୁଣ୍ୟପୁଞ୍ଜ ଶିଶୁଭକ୍ତ ଧ୍ରୁବ ! ତୁମ୍ଭେ ହିଁ ଜଗତରେ ଅଜେୟ ଅମର ବୀର ।

ଦେବତାମାନେ ନାନା ଉପାୟ କରି କାହିଁରେ ଜୟଲାଭ କରିପାରିଲେ ନାହିଁ । ତେଣୁ ଇନ୍ଦ୍ରଙ୍କର ଘୋର ଆତଙ୍କ ଉପସ୍ଥିତ ହେଲା । ସେ ଦୁଃଖରେ ଜଡ଼ ହୋଇଗଲେ । ସମସ୍ତଙ୍କ କଥା ତାଙ୍କୁ ବିଷ ପରି ଲାଗିଲା । ଦେବତାମାନେ ଏହା ଦେଖି କହିଲେ – "ଆଚ୍ଛା, ଏତେ ମାୟାର ଆବଶ୍ୟକତା କ'ଣ ? ଧ୍ରୁବ ଯେତେବେଳେ ଜାଣିଶୁଣି ଆମ୍ଭ ପ୍ରଭୁଙ୍କର କ୍ଷମତା ନଷ୍ଟ କରୁଛି, ସେତେବେଳେ ଆମ୍ଭେମାନେ କାହିଁକି ଜାଣିଶୁଣି ଅସ୍ତ୍ରପ୍ରୟୋଗ ନ କରିବା ? ତାହା ଯଦି ହୁଏ, ତେବେ ଗୋଟିଏ ଅସ୍ତ୍ରକୁ କୋଟି କୋଟି ଧ୍ରୁବର ଆୟୁଷ କେତେ ? କେତେ ଦୁର୍ଦ୍ଦାନ୍ତ ଅସୁର ତିନିପୁର ଛାରଖାର କରିପାରିବା ଭଳି ଶକ୍ତି ପାଇ ପୁଣି ଏହି ଦେବାସ୍ତ୍ରରେ ତ

ସବଂଶରେ ପ୍ରେତପୁର ଯାଇଛନ୍ତି । ଏହା ତ ଆପଣ ସ୍ୱୟଂ ଦେଖିଛନ୍ତି । ତେବେ ଭୟ କ'ଣ । ସୁତରାଂ ବିଳମ୍ବ ନ କରି ତାହା ହିଁ କରିବା, ତାହାହେଲେ କଣ୍ଟା ତୁଟିଯିବ ।"

ବ୍ରହ୍ମା ଦେବଗଣଙ୍କର ଏ ପ୍ରକାର ପରାମର୍ଶ ଶୁଣି ଉପହାସ କରି କହିଲେ – "ଦେବତାଗଣ । ଆପଣମାନେ ଧ୍ରୁବକୁ ବର୍ତ୍ତମାନ ସାମାନ୍ୟ ବାଳକ ମନେ କରିବେ ନାହିଁ । ସେ ବର୍ତ୍ତମାନ ବିଷ୍ଣୁତେଜରେ ତେଜସ୍ୱୀ । ପ୍ରଭୁଙ୍କର ସୁଦର୍ଶନ ଚକ୍ର ତାହାର ଚତୁର୍ଦ୍ଦିଗରେ ଅହରହ ବୁଲୁଛି । ଏ ଅବସ୍ଥାରେ ଧ୍ରୁବକୁ ହତ୍ୟା କରିବା ଦୂରେଥାଉ କେହି ତାକୁ ସ୍ପର୍ଶ ସୁଦ୍ଧା କରିପାରିବେ ନାହିଁ । ସ୍ୱୟଂ ଭଗବାନ ବିଷ୍ଣୁ ସୁଦ୍ଧା ଧ୍ୟାନମଗ୍ନ ବାଳକ ଧ୍ରୁବର କିଛି କ୍ଷତି କରିପାରିବେ ନାହିଁ । ସୁତରାଂ ଆପଣମାନେ ଧ୍ରୁବର ହତ୍ୟା କଥା ଆଉ ମୁହଁରେ ଧରିବେ ନାହିଁ ।

ବ୍ରହ୍ମାଙ୍କ କଥା ଶୁଣି ଇନ୍ଦ୍ର ଏକାବେଳକେ ହତାଶ ହୋଇଗଲେ । ତାଙ୍କର ମୁହଁ ଶୁଖିଗଲା, ତୁଣ୍ଡରୁ ଆଉ କଥା ବାହାରିଲା ନାହିଁ । ଦେବତାମାନେ ନିରୁପାୟ ହୋଇ ବ୍ରହ୍ମାଙ୍କୁ ପରାମର୍ଶ ମାଗିବାରୁ ବ୍ରହ୍ମା କହିଲେ – "ଏଥିପାଇଁ ସେପରି କୌଣସି ପ୍ରତିକାର ନାହିଁ; କେବଳ ଆମ୍ଭେମାନେ ମିଳିତ ହୋଇ ଭଗବାନ ନାରାୟଣଙ୍କୁ ଜଣାଇବା । ତେଣିକି ସେ ପରାତ୍ପର ଯେପରି ବିଚାର କରିବେ । ନଚେତ୍ ଅନ୍ୟ ଉପାୟ ନାହିଁ ।

ବର୍ତ୍ତମାନ ଶିଶୁସାଧକ ଧ୍ରୁବର ପରୀକ୍ଷା ଶେଷ । କେତେ ଭୀଷଣ ପରୀକ୍ଷା ହୋଇଗଲା । ସେ ପରୀକ୍ଷା ପୁଣି ତୁମ୍ଭ ଆମ୍ଭର କାର୍ଯ୍ୟ ନୁହେଁ । ଯେ ବିଚାରିଲେ ପ୍ରଳୟ କରିପାରନ୍ତି, ଏଭଳି ଦେବତାମାନେ ଅତି କଠୋର ପରୀକ୍ଷା କରିପାରେ; କିନ୍ତୁ ଫଳରେ ଧ୍ରୁବକୁ ତିଳେମାତ୍ର ଟଳାଇ ପାରିଲେ ନାହିଁ । ଧ୍ରୁବ ପଞ୍ଚମବର୍ଷୀୟ ଶିଶୁ, କିଏ ବିଶ୍ୱାସ କରିବ, ଶିଶୁ ପ୍ରତି ଏହା କରିପାରେ; କିନ୍ତୁ ପ୍ରଭୁଙ୍କର କୃପା ହେଲେ ଏ କଥା ଅଧିକ କ'ଣ, ଦୁବ ଦାରୁ ହୋଇଥାଏ; ସୁକୋମଳ ପୁଷ୍ପ ମଧ୍ୟ ବଜ୍ରର କାର୍ଯ୍ୟ କରିଥାଏ । ସେ ଶକ୍ତି ନିକଟରେ ଅସମ୍ଭବ କିଛି ନାହିଁ । ସେ ପ୍ରସାଦ ଲାଭ କରିବା ପାଇଁ ଧନ, ମାନ, ବଳ, କୁଳ, ବୟସ, ରୂପ ଏସବୁ କିଛି ଲୋଡ଼ା ହୁଏ ନାହିଁ ।

ସେଥିନିମନ୍ତେ କେବଳ ପବିତ୍ର ମନ ଏକାନ୍ତ ଲୋଡ଼ା । ଧ୍ରୁବ ତହିଁର ଜ୍ୱଳନ୍ତ ନିଦର୍ଶନ । ଧନ୍ୟ ଧ୍ରୁବ ଧନ୍ୟ ତୁମ୍ଭର ବିଶ୍ୱାସ ।

ଭଗବାନ ବ୍ରହ୍ମାଙ୍କ ପରାମର୍ଶ ଅନୁସାରେ ଦେବରାଜ ଇନ୍ଦ୍ର ଦେବତାମାନଙ୍କୁ ସଙ୍ଗରେ ଘେନି ସୃଷ୍ଟି-ସ୍ଥିତି-ପ୍ରଳୟ କାରଣ ବିଶ୍ୱବ୍ରହ୍ମାଣ୍ଡନାଥ ନାରାୟଣଙ୍କ ନିକଟକୁ ଯାତ୍ରା କଲେ । ସେତେବେଳେ ପ୍ରଭୁ ଅନନ୍ତ ଶଯ୍ୟାରେ ନିଦ୍ରିତ ଥିଲେ । ଏହା ଦେଖି ଦେବତାମାନେ ଦ୍ୱାରଦେଶରେ ଦଣ୍ଡାୟମାନ ରହି ହାତଯୋଡ଼ି ସମସ୍ୱରରେ ସ୍ତୁତିପାଠ କରିବାକୁ ଲାଗିଲେ ।

"ତ୍ୱମାଦିଦେବଃ ପୁରୁଷଃ ପୁରାଣ
ସ୍ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍,
ବେତ୍ତାସି ବେଦ୍ୟଂ ଚ ପରଂ ଚ ଧାମ
ତ୍ୱୟା ତତଂ ବିଶ୍ୱମନନ୍ତରୂପ ।
ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ
ନମୋସ୍ତୁ ତେ ସର୍ବତ୍ର ଏବ ସର୍ବ,
ଅନନ୍ତବୀର୍ଯ୍ୟାମିତବିକ୍ରମସ୍ତ୍ୱଂ
ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ ।
ପିତାସି ଲୋକସ୍ୟ ଚରାଚରସ୍ୟ
ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍,
ନ ତ୍ୱତ୍ସମୋଽସ୍ତ୍ୟଭ୍ୟଧିକଃ କୁତୋଽନ୍ୟୋ
ଲୋକତ୍ରୟେଽପ୍ୟପ୍ରତିମପ୍ରଭାବ ।
ତସ୍ମାତ୍ପ୍ରଣମ୍ୟ ପ୍ରଣିଧାୟ କାୟଂ
ପ୍ରସାଦୟେ ତ୍ୱାମହମୀଶମୀଡ଼୍ୟମ୍,
ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ
ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢୁମ୍ ।"

ଭଗବାନ ନାରାୟଣ ଦେବତାମାନଙ୍କର ସ୍ତୁତିରେ ସନ୍ତୁଷ୍ଟ ହୋଇ ଅନନ୍ତ ଶୟନରୁ ଉଠି ପଚାରିଲେ – "ଦେବଗଣ ! ଆପଣମାନଙ୍କର ଆଗମନର କାରଣ କ'ଣ ?" ତହୁଁ ବ୍ରହ୍ମା କହିଲେ "ପ୍ରଭୋ ! ବର୍ତ୍ତମାନ

ଉତ୍ତାନପାଦ ରାଜାଙ୍କର ପୁତ୍ର ପଞ୍ଚମବର୍ଷୀୟ ଶିଶୁ ଧ୍ରୁବ ମଧୁବନରେ ଘୋର ତପସ୍ୟାରେ ମଗ୍ନ । ଏଭଳି ଶିଶୁ କେବେ ଏପରି କଠୋର ତପସ୍ୟା କରିବାର ଦେଖା ନ ଥିଲା । ଏ ଶିଶୁର ତପସ୍ୟା ଦେଖି ଇନ୍ଦ୍ରପଦରେ ଆମ୍ଭମାନଙ୍କର ଆଶଙ୍କା ହେଉଅଛି । ସୁତରାଂ ତହିଁର ପ୍ରତିକାର ନିମନ୍ତେ ଶ୍ରୀଚରଣରେ ନିବେଦନ କରିବାକୁ ଆସିଅଛୁଁ ।"

ବିଷ୍ଣୁ କହିଲେ – "ଦେବତାମାନେ ! ମୁଁ ଜାଣେ ଧ୍ରୁବ ନିତାନ୍ତ ଶିଶୁ, ତାହାର ତପସ୍ୟା ଅତି କଠୋର । ପ୍ରକୃତରେ ଏପରି କୌଣସି ଶିଶୁ ଏଭଳି ତପସ୍ୟା କରି ନ ଥିଲା । ଧ୍ରୁବ ଅବଶ୍ୟ ତାହାର ତପସ୍ୟାର ଉପଯୁକ୍ତ ଫଳ ପାଇବ । ମୁଁ ବର୍ତ୍ତମାନ ଧ୍ରୁବକୁ ବାହାରେ, ଭିତରେ ଜଗି ରଖିଛି । ତାହାର କେହି କିଛି କ୍ଷତି କରିପାରିବେ ନାହିଁ । ଧ୍ରୁବ ଇନ୍ଦ୍ର ପଦଲାଗି ତପସ୍ୟା କରୁନାହିଁ । ସୁତରାଂ ସେଥିରେ ଆପଣମାନଙ୍କର ଭୟର କୌଣସି କାରଣ ନାହିଁ । ଆପଣମାନେ ନିଶ୍ଚିନ୍ତ ହୋଇ ନିଜ ନିଜ ଆସ୍ଥାନକୁ ବାହୁଡ଼ିଯା'ନ୍ତୁ ।"

ଦେବତାମାନେ ଭଗବାନ ବିଷ୍ଣୁଙ୍କ କଥାରେ ସାନ୍ତ୍ୱନା ପାଇ ନିଜ ନିଜ ଆସ୍ଥାନକୁ ବାହୁଡ଼ିଗଲେ । ତତ୍ପରେ ବ୍ରହ୍ମାଣ୍ଡନାଥ ପ୍ରଭୁ ଶିଶୁଭକ୍ତ ଧ୍ରୁବଙ୍କୁ ଦର୍ଶନ ଦେବାଲାଗି ଭୁବନମୋହନ ବେଶରେ ମଧୁବନ ଯାତ୍ରା କଲେ । ସମାଧିମଗ୍ନ ଧ୍ରୁବ ଏ ପର୍ଯ୍ୟନ୍ତ କେବଳ ସେହି ନାରଦଙ୍କ କଥିତ ପୀତକୌଷେୟବାସ, ଶ୍ରୀବତ୍ସାଙ୍କ, ନବୀନନୀରଦଶ୍ୟାମ ବେଣୁଧର ମୂର୍ତ୍ତି ଧ୍ୟାନଚକ୍ଷୁରେ ଦେଖୁଥିଲେ । ବର୍ତ୍ତମାନ ତପସ୍ୟା ସିଦ୍ଧ ହେବାରୁ ସେହି ତ୍ରିଭୁବନ କମନୀୟରୂପ ଚର୍ମଚକ୍ଷୁରେ ଦେଖିବାକୁ ପାଇଲେ । ଧ୍ରୁବ ସେ ଅମୃତମୟ, ସୁଖମୟ, ଶୁଭମୟ, ସୌନ୍ଦର୍ଯ୍ୟମୟ, ବ୍ରହ୍ମମୟ ରୂପ ଦେଖି ଆତ୍ମବିସ୍ମୃତ ହୋଇଗଲେ । ତାହାଙ୍କର ସମସ୍ତ ଶରୀର ରୋମାଞ୍ଚିତ ହୋଇଗଲା, ଚକ୍ଷୁରେ ଆଉ ପଲକପାତ ହେଲା ନାହିଁ । ଦୁଇ ଚକ୍ଷୁରୁ ପ୍ରେମାଶ୍ରୁ ସ୍ରୋତ ଅନନ୍ତ ହେବାକୁ ଲାଗିଲା । ଧ୍ରୁବ ପ୍ରଭୁଙ୍କର ପାଦପଦ୍ମରେ ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କରି ଶ୍ରୀମୁଖକୁ କେବଳ ଚାହିଁ ରହିଲେ । ପ୍ରବାହିତ ମହିମାର୍ଣ୍ଣବଙ୍କର ସ୍ତୁତି ନିମନ୍ତେ ଶିଶୁଭକ୍ତ ନିତାନ୍ତ ଅସ୍ଥିର ହେଲେ; କିନ୍ତୁ କେଉଁଆଡୁ କିପରି ସ୍ତୁତି କରିବେ, କିଛି ସ୍ଥିର କରିପାରିଲେ ନାହିଁ । ସ୍ତୁତି ପାଇଁ ମନ ବେଳୁଁ ବେଳ ଚଞ୍ଚଳ

ହେଲା । ପ୍ରଭୁ ଅନ୍ତର୍ଯ୍ୟାମୀ ବାଳକ ଭକ୍ତର ମନର ଆବେଶ ଜାଣିପାରି ତାହାଙ୍କର ମସ୍ତକକୁ ବେଦମୟ ଶଙ୍ଖରେ ସ୍ପର୍ଶ କରି ତାହାଙ୍କୁ ଦିବ୍ୟଜ୍ଞାନ ପ୍ରଦାନ କଲେ । ତାହୁଁ ଧ୍ରୁବଙ୍କର କୋମଳ କଣ୍ଠରୁ ସ୍ତୁତିର ଉତ୍ସ ନିର୍ଗତ ହେଲା –

### ସ୍ତବ

ନବ ନୀରଦ-ସନ୍ଦୁର-ରୂପଧରଂ
କଳକୋକିଳ-କୂଜିତ-ନିନ୍ଦିସ୍ୱରଂ,
ଛବି-ତର୍ଜିତ-ହାଟକ-ପୀତପଟଂ
ପ୍ରଣମାମି ହରିଂ ଭବ ପାପହରଂ ।।

ଶିଖି ପୁଚ୍ଛବିଶୋଭିତ ଚାରୁଶିଖଂ
ଚଳକୁଣ୍ଡଳମଣ୍ଡିତ ଚନ୍ଦ୍ର ମୁଖଂ
ମୃଦମଞ୍ଜୁଳ ମୋହନ ବେଣୁଧରଂ
ପ୍ରଣମାମି ହରଂ ଭବ ପାପହରଂ ।।

ବିଷଭୀଷଣକାଳୀୟଦର୍ପହୃତଂ
ମଧୁଦୈତ୍ୟ-ନିସୂଦନ-କର୍ମକୃତଂ
ଧରଧାରଣସୁନ୍ଦର ଶକ୍ତିଭୃତଂ
ପ୍ରଣମାମି ହରିଂ ଭବ ପାପହରଂ ।।

ଗଳଲମ୍ବିତତକୌସ୍ତୁଭଦିବ୍ୟପ୍ରଭଂ
ମଣିନୂପୁରରଞ୍ଜିତ ପାଦଯୁଗଂ
ଦଳମଞ୍ଜୁଳପୁଷ୍ପିତନାପଚରଂ
ପ୍ରଣମାମି ହରିଂ ଭବ ପାପହରଂ ।।

ବରବୈରିବିମର୍ଦ୍ଦନବାହୁଯୁତଂ
ନରନାଗସୁରାସୁରନିତ୍ୟନୂତଂ
ଭବସାଗର-ମନ୍ଥନ କ୍ଳେଶହରଂ
ପ୍ରଣମାମି ହରିଂ ଭବ ପାପହରଂ ।।

ଭଗବାନ ନାରାୟଣ ଧ୍ରୁବର ମଧୁର କୋମଳ ସ୍ତୁତିଧ୍ୱନିରେ ସନ୍ତୁଷ୍ଟ ହୋଇ କହିଲେ – "ବତ୍ସ ! ଆମ୍ଭେ ତୁମ୍ଭର ସ୍ତବରେ ସନ୍ତୁଷ୍ଟ ହୋଇଅଛୁଁ, କି ବର ପାଇବାକୁ ଇଚ୍ଛାକର, ପ୍ରକାଶ କଲେ ଆମ୍ଭେ ତାହା ଦେବାକୁ ପ୍ରସ୍ତୁତ ଅଛୁ ।"

ଧ୍ରୁବ ବର୍ତ୍ତମାନ ବ୍ରହ୍ମାନନ୍ଦରେ ନିମଗ୍ନ । ସେ ସାକ୍ଷାତ ନାରାୟଣ ଦର୍ଶନ ପାଇଛନ୍ତି । ଯୋଗିଋଷିଗଣ ନିରାହାର, ଅନାହାରରେ ସୁଦ୍ଧା ଜୀବନବ୍ୟାପୀ କଠୋର ତପସ୍ୟା କରି ଯାହା ପାଇ ପାରିନାହାନ୍ତି, ଶିଶୁ ଧ୍ରୁବ ଆଜି ତାହା ପାଇଅଛନ୍ତି । ସେ ଦର୍ଶନ ଆଗରେ ରାଜପଦ, ଇନ୍ଦ୍ରପଦ ଅବା କି ମୂଲ୍ୟବାନ ? ଧ୍ରୁବଙ୍କର ଆଉ ସେ ରାଜପଦ, ରାଜଅଧିକାର ପାଇବା ଅଭିଳାଷ ଅଛି କି ? ଧ୍ରୁବଙ୍କର ଆଉ ସେ ଅଭିମାନ, ସେ ଶିଶୁବୁଦ୍ଧି ଅଛି କି ? ପ୍ରଭୁଙ୍କର ଅନୁଗ୍ରହ ହେଲେ ଶିଶୁତ୍ୱ, ଦରିଦ୍ରର ଦରିଦ୍ରତା, ମୂର୍ଖର ମୂର୍ଖତା, ଦୁର୍ବଳର ଦୁର୍ବଳତା, କୁତ୍ସିତର କୁତ୍ସିତତା କାହିଁ ଉଭେଇ ଯାଏ, ଲୋକ ସକଳ ସୌଭାଗ୍ୟର ଅଧିକାରୀ ହୁଏ । ତେଣୁ ଧ୍ରୁବଙ୍କର ହୃଦୟ ଜ୍ଞାନଲୋକରେ ଆଲୋକିତ, ସେ ବ୍ରହ୍ମାନନ୍ଦ ସୁଖରେ ଭାସମାନ । ଧ୍ରୁବ କହିଲେ, ପ୍ରଭୋ ! ବ୍ରହ୍ମାଣ୍ଡନାଥ !

"ସ୍ଥାନାଭିଳାଷୀ ତପସି ସ୍ଥିତୋଽହଂ
ତ୍ୱାଂ ପ୍ରାପ୍ତବାନ ଦେବ । ମୁନୀନ୍ଦ୍ର ଗୁହ୍ୟଂ
କାଚଂ ବିଚିନ୍ୱାନପି ଦିବ୍ୟରୂପଂ
ସ୍ୱାମିନ୍‌କୃତାର୍ଥୋଽସ୍ମି ବରଂ ନୟାଚେ ।"

ଭଗବାନ ଧ୍ରୁବର ସ୍ତୁତିରେ ଏବଂ କଥାରେ ବେଲୁଁବେଲ ଅଧିକ ସନ୍ତୁଷ୍ଟ ହୋଇ ଧ୍ରୁବକୁ ଆଲିଙ୍ଗନ କରି କହିଲେ – "ବତ୍ସ ! ଆମ୍ଭେ ଭକ୍ତକୁ ଅଭୀଷ୍ଟ ଫଳ ଦାନ କରୁଁ । ଆମ୍ଭଠାରେ ଯେ ଯେରୂପ କାମନା କରେ, ଆମ୍ଭେ ତାହାର ସେ ବାଞ୍ଛା ଅବଶ୍ୟ ପୂର୍ଣ୍ଣ କରୁଁ । ଆମ୍ଭଠାରେ ଚିତ୍ତ ଦୃଢ଼ କରିବା ବଡ଼ କଠିନ । ଲୋକେ ଦିବ୍ୟ ସୁଖଶାନ୍ତି ପାଇବାକୁ ସର୍ବଦା ଚଞ୍ଚଳ; କିନ୍ତୁ ଇନ୍ଦ୍ରିୟମାନଙ୍କର ପ୍ରଲୋଭନରେ ପଡ଼ି କାମ କ୍ରୋଧ ପ୍ରଭୃତି ରିପୁମାନଙ୍କର ବଶବର୍ତ୍ତୀ ହୋଇ ସେ ଦୃଢ଼ତା ରଖିପାରନ୍ତି ନାହିଁ । ତେଣୁ

ସୁଫଳ ଲାଭ କରିପାରନ୍ତି ନାହିଁ । ଆମ୍ଭର ବାଳବୃଦ୍ଧ, ସ୍ତ୍ରୀ ପୁରୁଷ, ଧନୀ ନିର୍ଦ୍ଧନ, ସବଳ ଦୁର୍ବଳ, ସୁନ୍ଦର କୁତ୍ସିତ ଭେଦଜ୍ଞାନ ନାହିଁ । ଯେ ଆମ୍ଭଙ୍କୁ ଭଜି ପାରିଲା, ଆମ୍ଭେ ତାହାକୁ ସୁଫଳ ଦେଉଁ । ତୁମ୍ଭେ ନିତାନ୍ତ ସୁକୁମାର ଶିଶୁ; କିନ୍ତୁ ତୁମର ତପସ୍ୟା ଅତି କଠୋର । ତେଣୁ ତୁମ୍ଭେ ତାହାର ଯୋଗଫଳ ଅବଶ୍ୟ ପାଇବ । ଲୋକେ ଆମ୍ଭଙ୍କୁ ଭଜୁଭଜୁ ଅନେକ ପରୀକ୍ଷାରେ ପଡ଼ନ୍ତି । ଅନେକେ ସେ ପରୀକ୍ଷାରୁ ପାର ହୋଇପାରନ୍ତି ନାହିଁ । ତେଣୁ ମହାଫଳ ପାଇପାରନ୍ତି ନାହିଁ । ତେଣୁ ଏ କଥା ନିଶ୍ଚୟ ଜାଣିଥାଅ, ଯେ ଆମ୍ଭଠାରେ ଦୃଢ଼ତା ରଖି ଆମକୁ ଭଜେ, ଶତ ବାଧାବିଘ୍ନ ଆସିଲେ ସୁଦ୍ଧା ତାହାର କିଛି କ୍ଷତି କରିପାରିବେ ନାହିଁ । ଆମ୍ଭର ଦର୍ଶନ ତ ଦୂରର କଥା, ଯେ ବିପଦରେ ପଡ଼ି କେବଳ ଆମ ନାମ ଉଚ୍ଚାରଣ କରେ, ସେ ବିପଦରୁ ଉଦ୍ଧାର ଲାଭ କରେ । ତୁମ୍ଭେ ତ ପିତାମାତା ଛାଡ଼ି ହିଂସ୍ରଜନ୍ତୁପୂର୍ଣ୍ଣ ବନରେ ନ ଖାଇ ନ ପିଇ ନ ଶୋଇ ଜୀବନ ପ୍ରତି ଲୋଭ ନ ରଖି ଆମକୁ ଭଜିଛ, ତୁମେ ଅଭୀଷ୍ଟ ଫଳ ନ ପାଇବ ତ ଆଉ ପାଇବ କିଏ ? ଆମେ ମନର କଥା ଜାଣିପାରୁ, ଲୋକ ଯାହା ବିଚାରେ ତାହା ବୁଝିପାରୁ, ସେଥିପାଇଁ ଆମ୍ଭକୁ ଲୋକେ ଅନ୍ତର୍ଯ୍ୟାମୀ ବୋଲି କହନ୍ତି । ସଂସାରରେ ଆମର ଅଗୋଚର କିଛି ନାହିଁ । ଆମେ ତୁମ ମନର କଥା ଜାଣିଅଛୁଁ । ତମେ ପିତାଙ୍କର ସାମାନ୍ୟ ସିଂହାସନର ଅଧିକାରୀ ହେବାକୁ ଇଚ୍ଛା କରନାହିଁ । ତାହାଠାରୁ ଉଚ୍ଚସ୍ଥାନ ପାଇବାକୁ ତୁମେ ଅଭିଳାଷ କରିଅଛ । ଅବଶ୍ୟ ତାହା ପାଇବ । ଏଥିନିମନ୍ତେ ତୁମ୍ଭପାଇଁ ଆମ୍ଭେ ଏକ ନୂତନ ଜ୍ୟୋତିର୍ଲ୍ଲୋକ ସୃଷ୍ଟି କରିଅଛୁଁ । ତାହା ଚିରକାଳ ଧ୍ରୁବଲୋକ ବୋଲାଇବ । ତୁମ୍ଭେ ତହିଁରେ ଜରାମରଣବର୍ଜିତ ହୋଇ ମହା ସୁଖଶାନ୍ତିରେ ଅନନ୍ତକାଳ ବାସ କରିବ । ଏହାଛଡ଼ା ତୁମ୍ଭଲାଗି ତୁମ୍ଭର ପିତା ମାତା ପରମମୁକ୍ତି ଲାଭ କରିବେ । ବର୍ତ୍ତମାନ ତୁମେ ତୁମ ପିତାଙ୍କର ରାଜ୍ୟକୁ ଫେରିଯାଅ । ଅଳ୍ପଦିନ ପରେ ତୁମର ପିତା ବାନପ୍ରସ୍ଥ ବ୍ରତ ଧାରଣ କରି ବନବାସ କରିବେ । ତୁମର ଭାଇ ଉତ୍ତମ ମଧ୍ୟ ବନକୁ ମୃଗୟା କରିବାକୁ ଯାଇ ଆଉ ଫେରିବ ନାହିଁ । ତେଣୁ ତୁମେ ଅବାଧରେ ନିର୍ବିବାଦରେ ବହୁକାଳ ମର୍ତ୍ତ୍ୟରେ ରହି ରାଜତ୍ୱ କରିବ, ଏହା ଆମର ବିଧାନ । ଏଥିରେ ପରିବର୍ତ୍ତନ ହୋଇପାରିବ ନାହିଁ

କିମ୍ବା କେହି ଏହା ଅନ୍ୟଥା କରିପାରିବ ନାହିଁ । ବର୍ତ୍ତମାନ ଆମେ ବୈକୁଣ୍ଠ ଯାତ୍ରା କରିବୁ, ତୁମେ ତୁମର ରାଜ୍ୟକୁ ଫେରିଯାଅ ।" ଧ୍ରୁବ ପ୍ରଭୁଙ୍କର ଆଦେଶ ଶୁଣିବା ପରେ ପ୍ରଭୁଙ୍କ ପାଦପଦ୍ମ ତଳେ ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କରି କହିଲେ –

ହରେ ମୁରାରେ ମଧୁକୈଟଭାରେ<br>
ଗୋବିନ୍ଦ ଗୋପାଳ ମୁକୁନ୍ଦଶୌରେ ।<br>
ଯଜ୍ଞେଶ ନାରାୟଣ କୃଷ୍ଣ ବିଷ୍ଣୋ<br>
ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ ।

ଅନନ୍ତର ପ୍ରଭୁ ଚକ୍ରପାଣି ଗରୁଡ଼ବାହନରେ ଅନ୍ତର୍ହିତ ହୋଇଗଲେ । ପ୍ରଭାମୟ ଧ୍ରୁବ ପ୍ରଭୁଙ୍କର ଆଜ୍ଞାନୁସାରେ ସେହି ଗିରି, ନଦୀ, ଗହନ, କାନ୍ତାର ପାର ହୋଇ ନିଜ ରାଜ୍ୟକୁ ଗମନ କଲେ ।

# ପଞ୍ଚମ ପରିଚ୍ଛେଦ

ନାରଦଙ୍କଠାରୁ ସାନ୍ତ୍ୱନା ପାଇଲା ଦିନୁଁ ରାଜା ଉତ୍ତାନପାଦ ଆଉ ପୂର୍ବପରି ଅଧୀର ହେଉନଥିଲେ; କିନ୍ତୁ ପୁତ୍ରର ବିଚ୍ଛେଦରେ କୌଣସି ପିତା ଏକାବେଳକେ ନିଶ୍ଚିନ୍ତ ହୋଇ ନ ପାରେ । ପୁତ୍ର ପିତାର ଆତ୍ମଜ । ତେଣୁ ପୁତ୍ରବିଚ୍ଛେଦ ହୃଦୟକୁ ଘାଣ୍ଟି ପକାଏ । ଧ୍ରୁବର କଥା ମନେପଡ଼ିଗଲେ ଉତ୍ତାନପାଦ ବେଳେବେଳେ ବ୍ୟାକୁଳ ହୋଇଯାଉଥିଲେ । ଏବେ ସେ ବୁଝିପାରିଛନ୍ତି, ସୁରୁଚି ଏ ସମସ୍ତ ଦୁର୍ଘଟଣାର ମୂଳକାରଣ । ତେଣୁ ତାହା ଉପରେ ରାଜାଙ୍କର ଆଉ ପୂର୍ବ ଅନୁରାଗ ରହିଲା ନାହିଁ । ସେ ଭାବୁଥିଲେ – "ମୁଁ କେଡ଼େ ଅଜ୍ଞାନ । ସୁରୁଚିର ଛାର ରୂପରେ ଭାସିଯାଇ ସୁନୀତି ଭଳି ଦେବୀକୁ ଚିହ୍ନି ପାରିଲି ନାହିଁ ? ସୁରୁଚିର କୁଟିଳ କଥାରେ ପଡ଼ି ସୁନୀତିକି ପୁଣି ରାଜଭବନରୁ ତଡ଼ିଦେଇ ବନବାସରେ ରଖିଲି । କେବଳ ଏତିକି ନୁହେଁ, ସେହି ସୁରୁଚି ଭୟରେ ପୁଣି ପ୍ରାଣୋପମ ସୁକୁମାର ଧ୍ରୁବକୁ ଟିକିଏ ଆଲିଙ୍ଗନ କରିବାକୁ ସାହସ ସୁଦ୍ଧା କରିପାରିଲି ନାହିଁ । ସେ ଦୁଷ୍ଟା ପୁଣି ମୋହରି ଆଗରେ ପ୍ରାଣର ସଂଖାଳୀ ଧ୍ରୁବକୁ କଠୋର ତିରସ୍କାର କଲା, ତାହା ମୁଁ ଶୁଣି ମଧ୍ୟ ପ୍ରତିକାର କରିପାରିଲି ନାହିଁ । ସେହି ତିରସ୍କାର ଯୋଗୁଁ ସିନା ଧ୍ରୁବ ଆଜି ହିଂସ୍ରଜନ୍ତୁପୂର୍ଣ୍ଣ ବନବାସ ଭୋଗୁଛି ? ଏହାକୁ ବଳି ମୁଁ ଆଉ କି ନିଷ୍ଠୁର କାର୍ଯ୍ୟ କରିପାରେ ? ଏହା ଦେଖି, ଭୋଗି ସୁଦ୍ଧା ଏ ନିର୍ଲ୍ଲଜ ପ୍ରାଣ ଏତେ ଦିନଯାଏ ରହିଛି । ଲୋକେ ଏହିପରି ସିନା ରୂପ ଫାନ୍ଦରେ ପଡ଼ି ଜୀବନଟାକୁ ଦୁଃଖମୟ କରନ୍ତି । ଧନ୍ୟରେ ରୂପ । କାହିଁ, ସେ ରୂପ

ତ ଏତେବେଳେ ଶାନ୍ତି ଦେଉ ନାହିଁ ? କାହିଁ ଆଉ ସେ ରୂପକୁ ଚାହିଁବାକୁ ଇଚ୍ଛା ହେଉ ନାହିଁ ? ପ୍ରାଣର ସର୍ବସ୍ୱ ବତ୍ସ ଧ୍ରୁବ । ମୁଁ ତୋହର ଅଧମ ପିତା । ଏ ଅଧମ ପିତାର କୋଳରେ ବସିବ ବୋଲି ବାପା, ବାପା କହି କେତେ ଅଳି କଲ; କିନ୍ତୁ ମୁଁ ସେ ରାକ୍ଷସୀ ସୁରୁଚିର ଭୟରେ ସେ ସୌଭାଗ୍ୟ ଲାଭ କରିପାରିଲି ନାହିଁ । ଏତିକିରେ ବତ୍ସ ମୋର ଅଭିମାନରେ ବୁଡ଼ିଯାଇଥିଲା, ସେଥିରେ ପୁଣି ସେହି ଦୁଷ୍ଟା ରାକ୍ଷସୀ ବିମାତା କଠୋର ତିରସ୍କାର ବର୍ଷଣ କରି ଏ ବିପଦ ଘଟାଇଲା । ମୁଁ ପୁଣି ସେ ତିରସ୍କାର ଶୁଣି ତୁନି ହୋଇ ରହିଲି । ଦୁଃଖରେ ଅଭିମାନରେ ମୋର ପ୍ରାଣପିତୁଳା ଧ୍ରୁବ ହିଂସ୍ରଜନ୍ତୁ ପୂର୍ଣ୍ଣ ବନବାସ କଲା । ଦୁଃଖିନୀ ସୁନୀତି ଧ୍ରୁବକୁ ହରାଇ ହାହା କରି ଦୁଃଖରେ ସଢୁଛି, ଏହା ପୁଣି ମୁଁ ଦେଖୁଛି, ଜାଣୁଛି, ତଥାପି ବଞ୍ଚି ରହିଛି । ଧନ୍ୟରେ ନିର୍ଲଜ ପ୍ରାଣ । ସଂସାରରେ ତୋର ଆଉ ପୁଣି କି ମାୟା ମମତା ଅଛି, ଜାଣିପାରୁ ନାହିଁ ? ସତେ ମୋର ଜୀବନସର୍ବସ୍ୱ ଧ୍ରୁବ ସିଂହବ୍ୟାଘ୍ର କବଳରୁ ଫେରି ଆସିବ ? ସତେ କ'ଣ ଏ ଚର୍ମଚକ୍ଷୁ ତାକୁ ଦେଖି ପବିତ୍ର ହେବ ? ହଁ, ଭଗବାନ, ତୁମ୍ଭେ ହିଁ ଭରସା ।" ଏହିପରି ନାନା ଚିନ୍ତା କରି ସେ ବ୍ୟାକୁଳ ହେଉଥା'ନ୍ତି ।

ରାଜା ଉତ୍ତାନପାଦଙ୍କର ଏହିପରି ଦୁଃଖରେ କେତେଦିନ, କେତେ ରାତି ଅତିବାହିତ ହୋଇଗଲା । ଦିନେ ଦୈବାତ୍ ଶୁଣାଗଲା ମହାତ୍ମା ଧ୍ରୁବ ରାଜ୍ୟକୁ ଫେରି ଆସୁଅଛନ୍ତି । ପିତା ଉତ୍ତାନପାଦ ଏ ସମ୍ବାଦ ଶୁଣିଲା ମାତ୍ରକେ ଅଧୀର ହୋଇ ପଡ଼ିଲେ । ମାତା ସୁନୀତିଙ୍କର ପିଣ୍ଡରେ ପ୍ରାଣ ପଶିଲା, ରାଜ୍ୟର ପ୍ରଜାବୃନ୍ଦ ଆନନ୍ଦରେ ଭୋଳ ହୋଇଗଲେ । ରାଜଭଣ୍ଡାରରୁ ବହୁ ସୁବର୍ଣ୍ଣ, ମଣିମାଣିକ୍ୟ ବିତରିତ ହେଲା । ଦେଖୁଦେଖୁ ଚାରିଆଡ଼େ ଉତ୍ସାହର ବିଜୁଳି ଖେଳିଗଲା । ଲୋକେ ରାଜନବର ଆଡ଼କୁ ଧାଇଁଆସି ଗୁଣ୍ଡ ହେଲେ । ଶଙ୍ଖ, ତୁରୀ, ମୃଦଙ୍ଗ ନାଦରେ ଚତୁର୍ଦ୍ଦିଗ ବିକମ୍ପିତ ହେଲା । ବିବିଧ ବର୍ଣ୍ଣର ପତାକାମାନଙ୍କରେ ଆକାଶ ମନୋହର ହେଲା । ଦେଖୁଦେଖୁ ରାଜା ଉତ୍ତାନପାଦ ସୁନୀତି ଏବଂ ସୁରୁଚିଙ୍କ ସହ ଯଥାଯୋଗ୍ୟ ଯାନ ଆରୋହଣ କରି ଅଗ୍ରସର ହେଲେ । ସଙ୍ଗରେ ପାତ୍ର ମନ୍ତ୍ରୀମାନେ ଏବଂ ପଛରେ ଲକ୍ଷ ଲକ୍ଷ ପ୍ରଜା ସ୍ରୋତଗତିରେ ଚାଲିଲେ ।

ନଗରର ଅଳ୍ପ ଦୂରରେ ଦେଖାଗଲା, ସମ୍ମୁଖରେ ଯେପରି ଗୋଟେ ଲୋକ ସମୁଦ୍ର ମାଡ଼ି ଆସୁଅଛି । ସେ ସମୁଦ୍ର ଆଗରେ ମଧୁର ସୁନ୍ଦର ପ୍ରଭାମୟ ଧ୍ରୁବ ଅତି ମନୋହର ଦେଖାଯାଉଅଛନ୍ତି । ଏ ଅପାର୍ଥିବ ଦୃଶ୍ୟ ଦେଖି ଚକ୍ଷୁ ପବିତ୍ର ହୋଇଗଲା । ଲୋକେ ବେଳୁବେଳ ଆନନ୍ଦରେ ଅଧୀର ହୋଇପଡ଼ିଲେ । ଧନ୍ୟ ଉତ୍ତାନପାଦ । ଧନ୍ୟ ସୁନୀତି । ଆଜି ତୁମ୍ଭରି ଯୋଗେ ମର୍ତ୍ତ୍ୟବୈକୁଣ୍ଠ ।

ଧ୍ରୁବ ବନ ପାର ହେବା ପରେ ଗ୍ରାମମାନଙ୍କରେ ଲୋକମାନେ ଯେ ଧ୍ରୁବଙ୍କୁ ଦେଖିଛନ୍ତି ସେ ତାଙ୍କ ପଛେ ପଛେ ଧାଇଁଛନ୍ତି । ଏହିପରି କ୍ରମରେ ଧ୍ରୁବଙ୍କ ପଛରେ ଲୋକସଂଖ୍ୟା ବଢ଼ିବାକୁ ଲାଗିଲା । କ୍ରମେ ଉଭୟ ପକ୍ଷର ଲୋକସମୁଦ୍ର ମିଳିତ ହେବାକୁ ଲାଗିଲା । ରଥ ଧ୍ରୁବଙ୍କର ନିକଟବର୍ତ୍ତୀ ନ ହେଉଣୁ ରାଜା ରଥରୁ ଓହ୍ଲାଇ ଦ୍ରୁତ ଗତିରେ ଯାଇ ଧ୍ରୁବଙ୍କୁ ଗାଢ଼ ଆଲିଙ୍ଗନ କଲେ । ସ୍ନେହରେ ପିତାଙ୍କର ଦୁଇ ଚକ୍ଷୁରୁ ଦୁଇଟି ପ୍ରେମାଶ୍ରୁଧାର ବହି ଧ୍ରୁବଙ୍କର ମସ୍ତକ ସିକ୍ତ କରିପକାଇଲା । ଧ୍ରୁବ ପିତାଙ୍କର ଚରଣରେଣୁ ବାରମ୍ବାର ମସ୍ତକରେ ଧାରଣ କଲେ । ଉତ୍ତାନପାଦ ଥରେ ମାତ୍ର ଆଲିଙ୍ଗନରେ ସନ୍ତୁଷ୍ଟ ନ ହୋଇ ଧ୍ରୁବକୁ ବାରମ୍ବାର ଆଲିଙ୍ଗନ କଲେ ଏବଂ ମସ୍ତକ ଆଘ୍ରାଣ କରିବାକୁ ଲାଗିଲେ ।

ଧ୍ରୁବ ପିତାଙ୍କୁ ପ୍ରଣାମ କରି ମାତାଙ୍କ ପାଦ ତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ମାତା ସୁନୀତି ଦେବୀ ପୁତ୍ରକୁ ଉଠାଇ ବାରମ୍ବାର ଆଲିଙ୍ଗନ କରି ପୁତ୍ରର ମସ୍ତକ ଆଘ୍ରାଣ କଲେ । ସୁନୀତିଙ୍କର ଦୁଇ ଚକ୍ଷୁରୁ ଅବିରଳ ପ୍ରେମାଶ୍ରୁଧାର ପ୍ରବାହିତ ହେବାକୁ ଲାଗିଲା । ସନ୍ତପ୍ତ ହୃଦୟ ଆଜି ସୁଶୀତଳ ହେଲା । ମାତା ପୁତ୍ରଙ୍କର ଏ ଅପୂର୍ବ ମିଳନ ଦେଖି ଲୋକେ ପୁଲକିତ ହୋଇ ହରିବୋଲ ଧ୍ୱନିରେ ମେଦିନୀ କମ୍ପାଇ ଦେଲେ । ଧନ୍ୟ ସୁନୀତି । ଧନ୍ୟ ତୁମର ତପସ୍ୟା । ଆଜି ତୁମ୍ଭ ଯୋଗେ ଲୋକେ କୃତାର୍ଥ, ପୃଥିବୀ ପବିତ୍ର ।

ଧ୍ରୁବ ମାତାଙ୍କ ନିକଟରୁ ବିଦାୟ ଘେନି ବିମାତା ସୁରୁଚିଙ୍କ ପାଦ ତଳେ ସାଷ୍ଟାଙ୍ଗ ଦଣ୍ଡପ୍ରଣାମ କଲେ । ସୁରୁଚି ଆଶୀର୍ବାଦ କରି ଧ୍ରୁବଙ୍କୁ ଉଠାଇ

ଦୁଃଖରେ, ଲଜ୍ଜାରେ କହିଲେ – "ବତ୍ସ ! ମୁଁ ତୋ ପ୍ରତି ରାକ୍ଷସୀ ପରି ବ୍ୟବହାର କରିଛି । ତେଣୁ ତୋର ମା' ବୋଲାଇବାକୁ ଅଯୋଗ୍ୟ । ଲଜ୍ଜାରେ ତୋତେ ଚାହିଁ ହେଉନାହିଁ । ରାକ୍ଷସୀ ହୋଇ ବତ୍ସ ବୋଲି ଅବା କିପରି ଡାକିବି ?"

ଧ୍ରୁବ କହିଲେ – "ମା' ! ପିତାମାତା ପୁତ୍ରର ଦେବତା । ତାଙ୍କର ଆଶୀର୍ବାଦରେ ଯେ ଫଳ, ତିରସ୍କାରରେ ମଧ୍ୟ ସେହି ଫଳ । ମା' ! ଆପଣଙ୍କ ଯୋଗୁଁ ଆଜି ସିନା ମୁଁ ମହାଧନ ହରିଙ୍କି ପାଇଲି । ତେଣୁ ଯୁଗେ ଯୁଗେ ଆପଣମାନଙ୍କ ଚରଣରେ ଋଣୀ ହେଲି । ଯେତେବେଳେ ହେଲେ ଆପଣ ମୋର ମା', ମୁଁ ଆପଣଙ୍କର ପୁଅ ।"

ଅନନ୍ତର ଧ୍ରୁବ ଭ୍ରାତା ଉତ୍ତମକୁ ଆଲିଙ୍ଗନ କରି ପ୍ରଜାମାନଙ୍କର ଶତ ଶତ ପ୍ରଣାମ ଗ୍ରହଣ କଲେ । ମିଳନରେ କିଛିକ୍ଷଣ ଅତିବାହିତ ହେବା ପରେ ଉତ୍ତାନପାଦ ଧ୍ରୁବ ଏବଂ ଉତ୍ତମକୁ ସଙ୍ଗରେ ନେଇ ସୁସଜ୍ଜିତ ରଥରେ ବସି ସେ ଜନସମୁଦ୍ର ସହ ଧୀରେଧୀରେ ନଗରକୁ ଅଗ୍ରସର ହେଲେ ।

ଏତଦ୍‌ପୂର୍ବରୁ ନଗର ପୂର୍ଣ୍ଣକୁମ୍ଭ, ତୋରଣ, ପତାକା ପ୍ରଭୃତିରେ ସୁସଜ୍ଜିତ ହୋଇ ଅଳକାପୁରୀର ସୌନ୍ଦର୍ଯ୍ୟ ଧାରଣ କରିଥିଲା । ଯହୁଁ ଧ୍ରୁବ ମହାସମାରୋହରେ ସେଥିରେ ପ୍ରବେଶ କଲେ, ତହୁଁ ନଗରରେ ଦୃଶ୍ୟ ବଚନାତୀତ ହୋଇଗଲା । ସେ ଦୃଶ୍ୟ ଯେଉଁମାନେ ଦେଖିଥିବେ, ଧନ୍ୟ ସେମାନଙ୍କର ଚକ୍ଷୁ । ଧ୍ରୁବଙ୍କର ଆଗମନରେ ନଗର ମଧ୍ୟରେ ଆନନ୍ଦ ଉତ୍ସବ ଦିନୁଁ ଦିନ ବଢ଼ିବାକୁ ଲାଗିଲା । ରାଜ୍ୟରେ ସର୍ବତ୍ର ସୁଖଶାନ୍ତି ବିରାଜିତ ହେଲା ।

ଅନନ୍ତର ମହାରାଜ ଉତ୍ତାନପାଦ ଶୁଭ ଦିନରେ, ଶୁଭ ବେଳାରେ ଧ୍ରୁବଙ୍କୁ ମହାସମାରୋହରେ ସିଂହାସନରେ ବସାଇ ସ୍ୱୟଂ ଅବସର ଗ୍ରହଣ କରି କିଛିକାଳ ମହାଶାନ୍ତିରେ ଦିନ ଯାପନ କଲେ । କ୍ରମେ ବୃଦ୍ଧ ରାଜାଙ୍କର ବୈରାଗ୍ୟ ଜାତ ହେବାରୁ ସେ ବାନପ୍ରସ୍ଥ ବ୍ରତ ଧାରଣ କରି ତପୋବନକୁ ପ୍ରସ୍ଥାନ କଲେ ।

ଧ୍ରୁବ ଭ୍ରାତା ଉତ୍ତମଙ୍କ ସହ ରାଜ୍ୟ ଶାସନ କରିବାକୁ ଲାଗିଲେ । କିଛିଦିନ ପରେ ଉତ୍ତମ ଦିନେ ମୃଗୟା ମାନସରେ ବନଗମନ କଲେ । ସେ ସେଠାରେ କୌଣସି ଯକ୍ଷକର୍ତ୍ତୃକ ଆକ୍ରାନ୍ତ ହୋଇ ନିହତ ହେଲେ ।

ଉତ୍ତମଙ୍କର ମାତା ସୁରୁଚି ପୁତ୍ରର ଆଗମନ ବିଳମ୍ବ ଦେଖି ଅନୁସନ୍ଧାନ ନିମନ୍ତେ ବନକୁ ଯାତ୍ରା କଲେ; ମାତ୍ର ପୁତ୍ରର କୌଣସି ସନ୍ଧାନ ନ ପାଇବାରୁ ଦାବାନଳରେ ପଡ଼ି ତନୁ ତ୍ୟାଗ କଲେ । ଏ ଦୁଃସମ୍ବାଦଦ୍ୱୟ ମହାରାଜା ଧ୍ରୁବଙ୍କର କର୍ଣ୍ଣଗୋଚର ହେବାରୁ ସେ କ୍ଷଣ ବିଳମ୍ବ ନ କରି ଏ ଅନିଷ୍ଟ ଦ୍ୱୟର ମୂଳ କାରଣ ଯକ୍ଷକୁ ପ୍ରତିଫଳ ଦେବା ମାନସରେ ସୈନ୍ୟସାମନ୍ତ ସହ ସ୍ୱୟଂ ବନଗମନ କଲେ । ସେଠାରେ ଯକ୍ଷ ସହିତ ଭୀଷଣ ଯୁଦ୍ଧ ହେଲା । ଧ୍ରୁବଙ୍କର ଭୀମ ପରାକ୍ରମରେ ଶତଶତ ଯକ୍ଷ ନିହତ ହେଲେ; କିନ୍ତୁ ଭ୍ରାତୃହନ୍ତା ଯକ୍ଷର ମୃତ୍ୟୁ ହେଲା ନାହିଁ । ତେଣୁ ଯୁଦ୍ଧର ଶାନ୍ତି ହେଲାନାହିଁ । ଧ୍ରୁବଙ୍କର ଅଟଳ ପ୍ରତିଜ୍ଞା ଏବଂ ଅବିରାମ ଯୁଦ୍ଧ ଦେଖି ଲୋକେ ସ୍ତମ୍ଭିତ ହୋଇଗଲେ; କିନ୍ତୁ ବିଧିର ବିଧାନ ଖଣ୍ଡନ କରିବା ମାନବ ପକ୍ଷରେ ଅସମ୍ଭବ । ତେଣୁ ଯୁଦ୍ଧର ଅବସାନ ହେଲା ନାହିଁ । ଏହା ଦେଖି ଧ୍ରୁବଙ୍କର ପିତାମହ ସ୍ୱାୟମ୍ଭୁବ ମନୁ ଧ୍ରୁବଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ – ବତ୍ସ ! ନିୟତିର ବଳ ଅଲଂଘ୍ୟ, କର୍ମଫଳ ଅବଶ୍ୟ ଭୋଗିବାକୁ ହେବ । ସେଥିରେ କାହାରି କିଛି ଚାରା ନାହିଁ । ସୁରୁଚି ଦୁଷ୍ଟା, ପରହିଂସାପ୍ରବୃତ୍ତି ତାଙ୍କ ହୃଦୟରେ ବଦ୍ଧମୂଳ ହୋଇଥିଲା । ତାଙ୍କରି ଦୁର୍ବ୍ୟବହାରରୁ ସିନା ସାଧ୍ୱୀ ସୁନୀତିଙ୍କର ନିର୍ବାସନ, ତାଙ୍କରି କଟୁକ୍ତି ଯୋଗେ ସିନା ତୁମ୍ଭର ବନଗମନ ଏବଂ ତୁମ୍ଭ ବିଚ୍ଛେଦ ଯୋଗୁଁ ସୁନୀତିଙ୍କର ଦୁର୍ବିସହ ମନସ୍ତାପ । ଏ ସମସ୍ତ ମନ୍ଦ କର୍ମର ଫଳ ଏହା ନ ହୋଇ ଆଉ କ'ଣ ହୁଅନ୍ତା ? ସେ ମନ୍ଦଫଳ ସେ ନ ଭୋଗି ଆଉ କିଏ ଭୋଗ କରନ୍ତା ? ସୁକୃତ ବଳରେ ଆଜି ତୁମ୍ଭେ ବିଶ୍ୱବନ୍ଦ୍ୟ, ତୁମ୍ଭର ଜନନୀ ଯୁଗେ ଯୁଗେ ଭାଗ୍ୟବତୀ । ପକ୍ଷାନ୍ତରେ ଦୁଷ୍କୃତ ହେତୁ ଆଜି ସୁରୁଚି ପୁତ୍ରଶୋକରେ ମର୍ମନ୍ତୁଦ ଯନ୍ତ୍ରଣାରେ ଦାବାଗ୍ନିରେ ଆତ୍ମହତ୍ୟା କରିବାକୁ ବାଧ୍ୟ । ଏଥିରେ ଯକ୍ଷର କିଛି ଦୋଷ ନାହିଁ । ବିଧାତାଙ୍କ ଆଦେଶରେ ଯକ୍ଷ ନିମିତ୍ତ ମାତ୍ର । ସେ ଅଲଂଘ୍ୟ ଆଦେଶ ଅବଶ୍ୟ ପ୍ରତିପାଳିତ ହେବ । କର୍ମଫଳର ଅନ୍ୟଥା ହେବ ନାହିଁ । ସୁତରାଂ

ତୁମ୍ଭେ ଯୁଦ୍ଧକାର୍ଯ୍ୟରେ ମତି ନ ବଳାଇ ରାଜଧାନୀକୁ ଫେରିଯାଇ ରାଜକାର୍ଯ୍ୟ ପରିଚାଳନା କର ।

ମହାରାଜ ଧ୍ରୁବ ପିତାମାତାଙ୍କୁ ପ୍ରଣାମ କରି ନିଜ ରାଜ୍ୟକୁ ପ୍ରତ୍ୟାଗମନ କଲେ । ରାଜକାର୍ଯ୍ୟ ପୂର୍ବପରି ଯଥାରୀତି ପରିଚାଳିତ ହେଲା । ପ୍ରଜାବର୍ଗ ଧର୍ମପ୍ରାଣ ହୋଇ ସୁଖ ଶାନ୍ତିରେ ଜୀବନ ଯାପନ କରିବାକୁ ଲାଗିଲେ । ବିଦ୍ୟା, ଧନ ଓ ଧର୍ମ ବିଷୟରେ ଧ୍ରୁବଙ୍କ ରାଜ୍ୟ ପୃଥିବୀରେ ବିଖ୍ୟାତ ହେଲା । କ୍ରମେ ଯଥା ସମୟରେ ଧ୍ରୁବଙ୍କର ତିନି ପୁତ୍ର ଏବଂ ଏକ କନ୍ୟା ଜାତ ହେଲେ । ସୁକୃତି ପିତାଙ୍କର ପୁତ୍ର କନ୍ୟାମାନେ ରୂପରେ ଗୁଣରେ ଜନମନ ହରଣ କଲେ । କାଳକ୍ରମେ ରାଜପୁତ୍ରମାନେ ପିତାଙ୍କ ଯତ୍ନରୁ ନାନା ବିଦ୍ୟାରେ ସୁପଣ୍ଡିତ ହୋଇଥିଲେ । ବୃଦ୍ଧ ପିତା ଧ୍ରୁବ ପୁତ୍ରମାନଙ୍କୁ ବୟଃପ୍ରାପ୍ତ ଏବଂ ସକଳ ରାଜଗୁଣପୂର୍ଣ୍ଣ ଦେଖି ସେମାନଙ୍କ ହସ୍ତରେ ଶାସନଭାଗ ଅର୍ପଣ କରି ବିଷ୍ଣୁପ୍ରାପ୍ତି ନିମନ୍ତେ ତପୋବନକୁ ଯାତ୍ରା କରି ପୁଣି କଠୋର ତପସ୍ୟାରେ ମଗ୍ନ ହେଲେ । ତପସ୍ୟା ଶେଷରେ ଦିନେ ଏକ ଜ୍ୟୋତିର୍ମୟ ବିମାନ ଧ୍ରୁବଙ୍କ ନିକଟରେ ଉପସ୍ଥିତ ହେଲା । ବିଷ୍ଣୁଦୂତମାନେ ବିମାନରୁ ଅବତରଣ କରି ମହାଯୋଗୀ ଧ୍ରୁବଙ୍କୁ ହାତଯୋଡ଼ି ଜଣାଇଲେ – "ମହର୍ଷେ ! ସ୍ୱୟଂ ଭଗବାନ୍ ନାରାୟଣ ଏ ବିମାନ ଆପଣଙ୍କ ନିମନ୍ତେ ପ୍ରେରଣ କରିଅଛନ୍ତି । ଆପଣଙ୍କ ନିମନ୍ତେ ଏକ ନୂତନ ଜ୍ୟୋତିର୍ଲ୍ଲୋକ ସୃଷ୍ଟି ହୋଇଅଛି । ବର୍ତ୍ତମାନ ଆପଣଙ୍କର ମର୍ତ୍ତ୍ୟଲୀଳା ଶେଷ ହୋଇଅଛି । ଆସନ୍ତୁ, ଏଥିରେ ଆରୋହଣ କରନ୍ତୁ । ଆମ୍ଭେମାନେ ଆପଣଙ୍କୁ ସେହି ନୂତନ ଲୋକକୁ ଘେନିଯିବୁ ।"

ମହର୍ଷି ଧ୍ରୁବ ବିଷ୍ଣୁଦୂତଙ୍କ କଥାରେ ବିମାନରେ ଆରୋହଣ କରନ୍ତେ ଆକାଶରୁ ଅଜସ୍ର ପୁଷ୍ପ ବୃଷ୍ଟି ହେଲା । କିନ୍ନରୀମାନଙ୍କର ସ୍ତୁତିସଙ୍ଗୀତରେ ଚତୁର୍ଦ୍ଦିଗ ମୁଖରିତ ହେଲା । ଦେଖୁଦେଖୁ ବିମାନ ଭୂତଳ ତ୍ୟାଗ କରି ଆକାଶରେ ମନୋହର ଦେଖାଗଲା । ମହର୍ଷି ଧ୍ରୁବ "ଓଁ ନମୋ ଭଗବତେ ବାସୁଦେବାୟ" ଏହି ମହାମନ୍ତ୍ର ଉଚ୍ଚାରଣ କରି କରି ନବନିର୍ମିତ ଜ୍ୟୋତିର୍ଲ୍ଲୋକକୁ ସ୍ୱଦେହରେ ପ୍ରସ୍ଥାନ କଲେ । ଧ୍ରୁବଙ୍କର ନାମାନୁସାରେ ସେ

ଲୋକ ଚିରକାଳ ଧ୍ରୁବଲୋକ ନାମରେ ଖ୍ୟାତ, ତାହା ଭଗବାନ୍ ବିଷ୍ଣୁଙ୍କର ଅଧିଷ୍ଠାନ ସ୍ଥଳ । ମହର୍ଷି ମରୀଚି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ବଶିଷ୍ଠ ଓ ଅତ୍ରି ଏହି ସପ୍ତର୍ଷି ସର୍ବଦା ସେଠାରେ ତପୋମଗ୍ନ । ସ୍ୱାଧ୍ୱୀ ସୁନୀତି ପୁତ୍ରର ତପଃପ୍ରଭାବରୁ ସର୍ବଦା ସେଠାରେ ରହି ଧ୍ରୁବଙ୍କର ମସ୍ତକରେ ଆଶୀର୍ବାଦ ବର୍ଷଣରେ ନିଯୁକ୍ତ । ଧ୍ରୁବଲୋକ ଜଗତରେ ଶ୍ରେଷ୍ଠ ସ୍ଥାନ । ସେ ଲୋକରୁ ବଳି ଆଉ ସ୍ଥାନ ନାହିଁ । ଧ୍ରୁବ ସେହି କାଳରୁ ଜାଜ୍ୱଲ୍ୟମାନ ଧ୍ରୁବତାରାରୂପେ ବିରାଜମାନ ରହି ବାଲ୍ୟକାଳରୁ ହରିଭକ୍ତି, ହରିଧ୍ୟାନ, ହରିଭଜନ କରିବାକୁ ପ୍ରତିମୁହୂର୍ତ୍ତରେ ଜଗତକୁ ଉପଦେଶ ଦେଉଅଛନ୍ତି । ସେହି ଜ୍ୟୋତିର୍ମୟ ଧ୍ରୁବ ନକ୍ଷତ୍ରକୁ ଚାହିଁ ସମସ୍ତେ ଏକସ୍ୱରରେ ବୋଲ –

## ଗୀତ

ଉଦ୍ଧବ ବିଶ୍ୱସୁନ୍ଦର ବର ମନ୍ଦରଧର ହେ ।
ସଞ୍ଚରି ସନ୍ତତ ଅନ୍ତରେ ଅନନ୍ତ ଅମୃତ ବିତର ହେ ।ଘୋଷା।

ଧ୍ୟାଇବି ତୁମ୍ଭରି ରୂପ ନିରନ୍ତରେ
ଗାଇବି ତୁମ୍ଭରି ମନ୍ତର ଅନ୍ତରେ
ପାଇବି ତୁମ୍ଭରି ନାମ ଅମୃତରେ
ଚାହିଁବି ରୂପ ତୁମ୍ଭର ହେ ।୧।

ଭଜିବି ଚରଣେ ଜୀବନେ ମରଣେ
ଶୟନେ ସ୍ୱପନେ କିବା ଜାଗରଣେ
ତେଜିବି ପ୍ରମାଦ ବିଷାଦ-କଷଣେ
ମଜ୍ଜିବି ପ୍ରେମେ ତୁମ୍ଭର ହେ ।୨।

କରିବି କରମ ଜନମନୋରମ
ବରିବି ସୁଜନ ସଙ୍ଗତ ଧରମ
ରସିବି ସଜ୍ଜନ ଭକତ ପରମ
ଭାଷିବି ଭାଷା ମଧୁର ହେ ।୩।

ଦେଖିବି ନୟନେ ଯାହା ଅନୁକ୍ଷଣେ
ଶୁଣିବି ଯେ ବାଣୀ ସଦା ଏ ଶ୍ରବଣେ
ଚାଖିବି ଯେ ସ୍ୱାଦ ରସନା ପ୍ରାଙ୍ଗଣେ
ଅର୍ପିବି ପଦେ ତୁମ୍ଭର ହେ ।୪।

ଶିଖିବି ଶିଖାଅ ଏ ଦିନୁଁ ଏ ରାତି
ଦେଖିବି ଦେଖାଅ ତବ ଦିବ୍ୟଜ୍ୟୋତି
ଭାସିବି ଆନନ୍ଦେ ଲଭି ବିଶ୍ୱପ୍ରୀତି
ତୋଷିବି ପ୍ରାଣ ମୋହର ହେ ।୫।

# ଭୂମିକା

ନବ ଶିକ୍ଷା-ପ୍ରଣାଳୀ ପ୍ରଚଳିତ ହେବା ଦିନୁ ବିଦ୍ୟାଳୟମାନଙ୍କରେ ଗଳ୍ପଶିକ୍ଷା ଦେବା ସକାଶେ କର୍ତ୍ତୃପକ୍ଷ ବାରମ୍ବାର ଅଭିମତ ପ୍ରକାଶ କରୁଛନ୍ତି । ମାତ୍ର ସେମାନଙ୍କର ଅଭିପ୍ରାୟାନୁଯାୟୀ ପୁସ୍ତକ ଉତ୍କଳ ସାହିତ୍ୟ-କ୍ଷେତ୍ରରେ ସମ୍ପୂର୍ଣ୍ଣ ବିରଳ । ଯେଉଁ କେତେ ଖଣ୍ଡି ଗଳ୍ପବହି ପ୍ରକାଶିତ ହୋଇଅଛି, ତହିଁରେ କେବଳ କେତେକ ପ୍ରାଚୀନ କାହାଣୀର ଉଲ୍ଲେଖ ଦେଖାଯାଏ । ସେହି ପ୍ରାଚୀନ କାହାଣୀଗୁଡ଼ିକ କେବଳ କଳ୍ପନା-ରାଜ୍ୟର ବିକ୍ଷିପ୍ତ ଉପାଦାନରେ ପରିପୂରିତ । ସେଗୁଡ଼ିକ ଯେ ଏକାବେଳକେ ତ୍ୟାଜ୍ୟ, ତାହା କୁହାଯାଉନାହିଁ । ମାତ୍ର ତତ୍ସଙ୍ଗେ ଯୁଗୋଚିତ କଳ୍ପନା-ରାଜ୍ୟର ସଂଯତ ନୀତିପ୍ରଦ ଉପାଦାନପୂର୍ଣ୍ଣ ଭାବନିବଦ୍ଧ ଗଳ୍ପ ଏକାନ୍ତ ଆବଶ୍ୟକ । ଉକ୍ତ ଭାବନାର ବଶବର୍ତ୍ତୀ ହୋଇ ଆମ୍ଭେ ବର୍ତ୍ତମାନ ଏହି ଗଳ୍ପକବି ଶିକ୍ଷାର ବିସ୍ତୃତି ନିମନ୍ତେ ପ୍ରକାଶ କଲୁ । ଏ ପୁସ୍ତକରେ ଚାରୋଟି ଭାଗ ପ୍ରଦତ୍ତ ହୋଇଅଛି । ପ୍ରଥମ ଭାଗରେ ଆଦିମ ଯୁଗର ସରଳ କାହାଣୀ, ଦ୍ୱିତୀୟ ଭାଗରେ ନାନାବିଧ ନୀତିଶିକ୍ଷା-ପ୍ରଣୋଦକ ଗଳ୍ପମାନ, ତୃତୀୟ ଭାଗରେ 'ରାମାୟଣ' 'ମହାଭାରତ'ର କତିପୟ ସରଳ ଉପାଖ୍ୟାନ ଓ ଚତୁର୍ଥ ଭାଗରେ ଆଧୁନିକ ଯୁଗର କର୍ମବୀରମାନଙ୍କ ଜୀବନର ଯେଉଁ ଅଂଶ ଶିକ୍ଷାକଲେ ଛାତ୍ରମାନଙ୍କର ନୈତିକ ଜୀବନ ଉନ୍ମେଷିତ ହେବ, ସେହି ଅଂଶ ସମ୍ବନ୍ଧୀୟ ବିବରଣୀମୂଳକ ଗଳ୍ପମାନ ପ୍ରଦତ୍ତ ହୋଇଅଛି । ସୁତରାଂ ଆଶା ଏହା ଅପେକ୍ଷାକୃତ ଅଧିକ ପ୍ରସାରଲାଭ କରିବ ।

ପ୍ରଣେତା

## ପ୍ରଥମ ଭାଗ

# କିମ୍ଭୀର ଓ ବିଲୁଆ କଥା

ଦିନେ ଗୋଟିଏ ନଈକୂଳରେ ଗୋଟେ କିମ୍ଭୀର ପାଣିରୁ ବାହାରି ଖରା ପୋଉଁଥିଲା । କୁଆଡୁ ଗୋଟେ ବିଲୁଆ ଆସି କିମ୍ଭୀର ପାଖରେ ପହଞ୍ଚିଲା । କିମ୍ଭୀର କହିଲା, ବିଲୁଆ ଭାଇ । କିପରି ଅଛୁ ? ଖାଇବା ପିଇବାକୁ ମିଳୁଚି ତ ? ବିଲୁଆ କହିଲା, ହଁ ଭାଇ । ମିଳୁଚି; ବଡ଼ କଷ୍ଟରେ ମିଳୁଚି । ତେବେ କିମ୍ଭୀର ଭାଇ । ତୋର ମୋର ଗୋଟେ ଚାଷବାସ କଲେ ଦିହେଁ ଖାଇପିଇ ମଉଜରେ ରହନ୍ତେଇଁ, ପିଲାଝିଲାଙ୍କ ପାଇଁ ଆଉ ଖରା, ବରଷା, ଶୀତ କାକରରେ ଏତେ ଖୋଜାଲୋଡ଼ା, ଦଉଡ଼ ଧାପଡ଼ ପଡ଼ନ୍ତା ନାହିଁ। କିମ୍ଭୀର କହିଲା, ବିଲୁଆ ଭାଇ । ମୁଁ ତ ଚାଷବାସ କଥା ଜାଣେ ନାହିଁ । ତୁ ଯେବେ କହୁଚୁ, କରିବା । ବହୁତ ବିଚାର ପରେ ବିଲାତିଆଳୁ ଚାଷ କରିବା କଥା ଠିକ୍ ହେଲା । ଦିହେଁ ବିଲାତିଆଳୁ ଲଗେଇଲେ । ଲୋକେ ଯିମିତି ବିଲାତିଆଳୁ ଆମଦାନୀର ବେଳା ହେଲାଣି ବୋଲି କହିଲେ, ଦିନେ କିମ୍ଭୀର କହିଲା, ବିଲୁଆ ଭାଇ । ମୁଁ ଗୋଟିଏ କଥା କହନ୍ତି । ବିଲୁଆ କହିଲା, କଅଣ କହୁଚ କହ । କିମ୍ଭୀର କହିଲା, ବିଲୁଆ ଭାଇ । ବିଲାତିଆଳୁର ଅଗ ମୋର, ମୂଳ ତୋର । କାହିଁକି ନା କିମ୍ଭୀର ଯେତେ ଗଛ ଦେଖିଛି, ଗଛ ଅଗରେ ଫଳ ଫଳେ, ମୂଳରେ ଫଳେ ନାହିଁ । ବିଲୁଆ ଖୁସିରେ କହିଲା, ହଉ ଭାଇ ତୋରି କଥା ହଉ । କିମ୍ଭୀର ବିଲାତିଆଳୁ ଗଛର ଅଗତକ କାଟିନେଲା । ବିଲୁଆ ଗଛର ମୂଳ ଖୋଳି ବିଲାତିଆଳୁ ଗାଡ଼ି ଗାଡ଼ି ନେଇ ଘରେ ରଖିଲା । ଭାରି ମଉଜ କରି ଖାଉଥାଏ । ଦିନେ କିମ୍ଭୀର ଆସି ଦେଖେ ତ ବିଲୁଆ ଘରେ ଢେର

ବିଲାତିଆଳୁ ଜମା ହୋଇଛି । ମନେ ମନେ ପାଞ୍ଚିଲା, ବିଲୁଆ ମତେ ଠକିଦେଲା; ହଉ, ଏଥର ବିଲୁଆକୁ ଜିଣିବି । କିମ୍ଭୀର କହିଲା, ବିଲୁଆ ଭାଇ । ଆସ ଧାନ ଫସଲ କରିବା । ବିଲୁଆ କହିଲା, ହଉ କରିବା ।

ଦିହେଁ ମିଶି ବିଲ ଚାଷ କଲେ; ଧାନ ବୁଣିଲେ । ଗଜା ଉଠିଲା । ଗଛରେ ଶାଗୁଆ ପତ୍ରମାନ ଯିମିତି ଦିଶିଚି, କିମ୍ଭୀର କହିଲା, ବିଲୁଆ ଭାଇ । ଏଥର ମୁଁ ମୂଳ ନେବି, ତୁ ଅଗ ନେବୁ । ବିଲୁଆ କହିଲା, ହଉ ଭାଇ । ତୋରି କଥା ହଉ । ଧାନ ପାଚିଲାମାତ୍ରେ ବିଲୁଆ ଅଗତକ କାଟିନେଲା, ଧାନ ଅମଳ କଲା । ଖାଇପିଇ ମଉଜ କରୁଥାଏ । କିମ୍ଭୀର ମୂଳ ଖୋଜି ଦେଖେ ତ ଧାନ ଫାନ କିଛି ନାହିଁ । ମନେ ମନେ ବିଲୁଆ ଉପରେ ଭାରି ରାଗିଗଲା । ଭାବିଲା, ବିଲୁଆଟା ମୋତେ ଦି'ଥର ଜିତିଗଲା, ଏଥର ମୁଁ ଆଉ ମୂଳ ନେବି ନାହିଁ; ସବୁ ଅଗଯାକ ନେବି । ଏକଥା ଭାଳି ଭାଳି ବିଲୁଆ ଘରଠେଇଁ ପହଞ୍ଚିଲା । ଦେଖେ ତ ବିଲୁଆ, ବିଲୁଆ ଭାରିଜା ମଉଜରେ ଅଛନ୍ତି । ବିଲାତିଆଳୁର ଝୋଳ, ଭଜା, ଚଟଣି, ଭରତା, ଆଳୁଦମ୍, ତା'ସଙ୍ଗେ ବେଶ୍ କୁନ୍ଦଫୁଲ, ମଲ୍ଲୀଫୁଲ ଭଳି ଧୋବ ଫରଫର ସରୁ ବାସନା ଭାତ ଖାଉଛନ୍ତି । ଯା' ଦେଖି କିମ୍ଭୀର ମନେ ମନେ ରାଗିଗଲା । ଆଉ କଅଣ କହିବ । ନିଜେ କହି କରି ତ ମୂଳ ନେଇଚି; "ଆପଣା କିଆକୁ ଇଲାଜ୍ କିଆଁ" । କହିଲା, ବିଲୁଆ ଭାଇ, ବେଶ୍ ଖୁସିରେ ଅଛୁ ? ବିଲୁଆ ହସି ହସି କହିଲା, ହଁ ଭାଇ ହଁ, ଭଲରେ ନାହିଁ, ଆଉ କ'ଣ ମନ୍ଦରେ ଅଛି ? କିମ୍ଭୀର କହିଲା, ବିଲୁଆ ଭାଇ, ଆଉ ଗୋଟେ ଚାଷ କରନ୍ତେଇଁ । ବିଲୁଆ କହିଲା, ହଉ କରିବା । କି ଚାଷ କରିବା ? କିମ୍ଭୀର କହିଲା, ଆଖୁଚାଷ । ବିଲୁଆ କହିଲା, ହଉ ଭାଇ, ହଉ । ଦିହେଁ ଆଖୁ କିଆରି ଚାଷ କଲେ, ପାଣି ବୋହିଲେ, ଆଖୁ ଲଗେଇଲେ । ଗଛ ଲଗାଯାଇ ଯିମିତି ନୂଆ ପତ୍ରମାନ କଅଁଳି ଆସିଲା, କିମ୍ଭୀର କହିଲା, ବିଲୁଆ ଭାଇ ! ଏଥର ମୁଁ ଗଛର ଅଗତକ ନେବି, ତୁ ମୂଳତକ ନେବୁ। ବିଲୁଆ କହିଲା, ହଉ ଭାଇ, ହଉ। ଯିମିତି ଗଛ ପାକଳ ହୋଇ ଆସିଲା, କିମ୍ଭୀର ଅଗଗୁଡ଼ିକ କାଟି ନେଲା । ବିଲୁଆ ମୂଳତକ କାଟି ନେଇ ଭାରି ମଉଜ କଲା । ବିଲୁଆ, ତା' ଭାରିଯା ଆଖୁ ଚୋବେଇ ଚୋବେଇ ଖଦା କୁଢ଼େଇ ଥାଆନ୍ତି । କିମ୍ଭୀର

ଦିନେ ପହଞ୍ଚି ଦେଖିଲା, ବିଲୁଆ ଘରେ ମହଣ ମହଣ ଆଳୁ, ଭରଣ ଭରଣ, ଶଗଡ଼ ଶଗଡ଼ ଧାନ ଚାଉଳ, ଆଖୁ ପର୍ବତ ସମାନ ଜମା ହୋଇଛି । ତହୁଁ ବିଲୁଆକୁ କହିଲା, ଆଉ ଚାଷବାସ କରି ପାରିବା ନାହିଁ । ତୁ ତ ଲେଖାପଢ଼ାରେ ଭାରି ଟାଣ, କାହିଁକି ନା ଚାଷ କାମରେ ତୁ ଭାରି ଧୁରନ୍ଧର । ଆଚ୍ଛା ମୋର ସାତଟି ପିଲା ଅଛନ୍ତି, ତାଙ୍କୁ ତୁ ଟିକିଏ ଭଲକରି ଲେଖାପଢ଼ା ଶିଖାଇ ଦେବୁ ? ବିଲୁଆ କହିଲା, ହଉ ଭାଇ, ହଉ । ସାତୁଟା ଦିନରେ ତୋ ସାତଟା ପିଲାଙ୍କୁ ତ ପଣ୍ଡିତ କରିଦେବି । କିମ୍ଭୀର ଖୁସିହୋଇ ଘରକୁ ଗଲା । ମନେ ମନେ ଭାବିଲା, ମୁଁ ମୂର୍ଖ ବୋଲି ସିନା ମୋତେ ବିଲୁଆଟା ଚାଷରେ ଠକିଦେଲା, ଏଥର ମୋ ପିଲେ ପାଠପଢ଼ି ପଣ୍ଡିତ ହୋଇଗଲେ, ମୁଁ ସାତ ଦୋପଟ ଠକିବି ।

କିମ୍ଭୀର ଗଲାରୁ ବିଲୁଆ ଆଉ ତା' ଭାରିଯା ଦିହେଁ ଭାରି ଖୁସି ହେଲେ । କୁହାକୁହି ହେଲେ, ଆଜି ଭଲ ମାଉଁସ ମିଳିଲାଣି, ଖାଇବା । ବିଲୁଆ ଗୋଟେ କିମ୍ଭୀର ଛୁଆ ଆଣି ପଢ଼ାଇବାକୁ ବସିଲା ।

ପଢ଼ ବାବା ଅ, ଆ
ମୋ ପାଟିରେ ପଡ଼ିଯା ।

ଏ କଥା କହି ଗୋଟିଏ ଛୁଆ ପାଟିରେ ପକାଇଲା । ବାକି ଛୁଆରୁ ତିନୋଟି ଆପେ ଖାଇ ବାକି ତିନୋଟି ଭାରିଯାକୁ ଦେଲା । ସାତଦିନ ବାଦ୍ କିମ୍ଭୀର ଆସିବାବେଳକୁ ବିଲୁଆ ଆଉ ତା' ଭାରିଯା ଦିହେଁ ଘରଦ୍ୱାର ଛାଡ଼ି ନଈ ଆଗପାରିକି ପଳେଇଥିଲେ । କିମ୍ଭୀର ବିଲୁଆକୁ ନ ଦେଖି ଡାକି ଡାକି ଭାରି ରାଗି ଫେରିଗଲା । ମନେ ମନେ ଭାବିଲା, ବିଲୁଆ ମତେ ଆଚ୍ଛା ପଟେ ଦେଲା । ଶେଷକୁ ପିଲାଗୁଡ଼ିକୁ ଖାଇଲା । କିମିତି ବିଲୁଆ ଆଉ ତା' ଭାରିଯାକୁ ମାରିବି । ଏହିପରି କେତେଦିନ ଗଲା ଉତ୍ତାରୁ ଦିନେ କିମ୍ଭୀର ବିଲୁଆକୁ ଦେଖିଲା । ଭାବିଲା, ଏଇଥର ଧରିବି । ଏହା ବିଚାରି ନଈକୂଳରେ ବିଲୁଆ ଯିବା ବାଟରେ ଗୋଡ଼ହାତ ଚାରିକାତ ଲମ୍ୱେଇ ମଲା ପରି ଶୋଇ ରହିଲା । ବିଲୁଆ ଭାରିଯା ବିଲୁଆକୁ କହିଲା, ହଇହେ । କିମ୍ଭୀରଟା ମରିଗଲାଣି, ଚାଲ ଖାଇବା । ବିଲୁଆ କହିଲା, ରହ ରହ,

କିମ୍ଭୀରଟା ବହୁତ ଦିନ ମଲାଣି, ଏଡ଼େ ପଚାସଢ଼ା ମାଂସ ଖାଇଲେ ଅସୁସ୍ଥ ହେବା; ଟିକିଏ ଟିକିଏ ବଞ୍ଚିଥିଲେ, ହାତଗୋଡ଼ ହଲାଉଥିଲେ ଖାଇବାଟା ଭଲ । କିମ୍ଭୀର ମନେ ମନେ ଭାବିଲା, ବିଲୁଆ ତ ମତେ ବେଶି ଦିନର ମଢ଼ା ବିଚାରି ବାହାରିଯିବ, ତେବେ କିମିତି ଧରିବ ? ହଉ ଟିକିଏ ଗୋଡ଼ହାତ ହଲାଏ । ଯା ଦେଖି ବିଲୁଆ ତା' ଭାରିଯାକୁ କହିଲା, ଦେଖିଲୁ ଲୋ । ଆମକୁ ଧରି ଖାଇବ ବୋଲି ମଲା ପରି କିମିତି ପଡ଼ିଥିଲା, ଏବେ ଗୋଡ଼ହାତ ହଲାଇଲାଣି, ଚାଲ ବାହାରିଯିବା । ଏକଥା କହି ଦୌଡ଼ି ଦୌଡ଼ି ଚାଲିଗଲେ । କିମ୍ଭୀର ଉଠି କହିଲା, ହଉ ହଉରେ ପୁଣି ତତେ ଦେଖିବି, କିମିତି ତୁ ଧରା ନ ଦେବୁ । ବିଲୁଆ ନଈରେ ଯେଉଁ ତୁଠରୁ ପାଣି ପିଏ, ଆଉ ଦିନେ କିମ୍ଭୀର ସେହିଠାରେ ପାଣି ଭିତରେ ଚୁପ୍ ହୋଇ ରହିଥାଏ । ଯେବେ ବିଲୁଆ ଆଉ ତା' ଭାରିଯା ପାଣି ପିଇବାକୁ ଆସିବେ, ଧରି ଖାଇବ, ଏଇକଥା ମନେ ମନେ ପାଞ୍ଚୁଥାଏ । ସତକୁ ସତ ଦିନ ଘଡ଼ିଏ ଅଛି, ବିଲୁଆ ଆଉ ତା' ଭାରିଯା ପାଣି ପିଇବାକୁ ସେଠିକି ଆସିଲେ । ବିଲୁଆ ସିଆଣିଆ, ଦେଖିଲା ତୁଠରେ ମାଛମାନେ ନାହାନ୍ତି; ପାଣିଟା ଭାରି ସଫା ହେଇଚି, ଟିକିଏ ଗୋଳିଆ ନ ହେଲେ ଇମିତି ସଫା ପାଣି ତ ଆମକୁ ଭଲ ଲାଗିବ ନାହିଁ । ଚାଲ ଆଉଠେ ଗୋଳିଆପାଣି ଦେଖି ପିଇବା । କିମ୍ଭୀର ପାଣି ଭିତରେ ରହି ସବୁ ଶୁଣୁଥାଏ । ମନେ ମନେ ଭାବିଲା, ଟିକିଏ ଗୋଳିଆ କରି ନ ଦେଲେ ବିଲୁଆ ତ ପଳେଇ ଯିବ, ଧରିବି କାହାକୁ ? ଏହା ଭାବି ଗୋଡ଼ ଆଉ ଖଗ ହଲେଇ ପାଣି ଗୋଳି କରିଦେଲା । ବିଲୁଆ ତା' ଭାରିଯାକୁ କହିଲା, ଦେଖ୍ ଦେଖ୍, ସେଇ କିମ୍ଭୀର ଏହି ପାଣି ଭିତରେ ଲୁଚିଚି ଆମକୁ ଖାଇବ ବୋଲି । ଆମେ ଗୋଳିଆ ପାଣି ପିଇବାକୁ କହିବାରୁ ଭିତରେ ରହି ପାଣି ଗୋଳିଆ କରୁଚି । ଚାଲ ଏଠୁଁ ବାହାରିଯିବା । ଯା କହି ହସି ହସି ଚାଲିଗଲେ । କିମ୍ଭୀର ଥରକୁ ଥର ହାରି ମନରେ ଦୁଃଖ କରି ନିରାଶ ହୋଇ ରହିଲା । ମୋ ବୋଲେ କଥା ସରିଲା; ମୁଁ ଗଲାରୁ ବିଲୁଆ କଥା ଟିକିଏ ସୁଦ୍ଧା କହିଲା ନାହିଁ ।

# ପତରମୂଷି କଥା

ଗୋଟିଏ ମାଈ ଛେଳି ଓ ଆଉ ଗୋଟିଏ ମାଈ ମାଙ୍କଡ଼ ଗୋଟିଏ ଥାନରେ ଘର କରିଥା'ନ୍ତି । ଦିହିଁଙ୍କର ଦୁଇଟି ପୁଅ ହେଲା । ପୁଅଯୋଡ଼ିକ କ୍ରମେ ବଡ଼ ହେଲେ । ଦିନେ ଛେଳି ମା', ଛେଳିକି କହିଲା, ହଇରେ ପୁଅ । ତୁ ତ ବଡ଼ ହୋଇଗଲୁଣି, ତୋର ମୁଣ୍ଡକୁ ହାତ ପାଇଗଲାଣି, ଏବେ ଦାଣ୍ଡରୁ ଦି' ପଇସା ରୋଜଗାର କରି ଆଣିଲେ ଖାଇବା । ମାଙ୍କଡ଼ ମା' କହିଲା ତୁ ମୋର ଗୋଟିଏ ବୋଲି ପୁଅ, ମୁଁ ଫଳମୂଳ ଏଣୁ ତେଣୁ ଆଣିବି । ମୋ ପୁଅ କୁଆଡ଼େ ଯିବ ନାହିଁ । ଛେଳି ନିଜ ମାଆକୁ କହିଲା, ମାଆ, ମୁଁ ରୋଜଗାର କରିଯିବି । ଯା କହି ଦୁଧଭାତ ଗଣ୍ଡିଏ ଖାଇ ରୋଜଗାର କରି ଗଲା । ଯାଉଯାଉ ବାଟରେ ଗୋଟେ ବଣ ପଡ଼ିଲା । ବଣ ଭିତରେ ପଶି ଦେଖେ ତ ଗୋଟେ ମହାବଳ ବାଘ ବାଟରେ ବସିଚି । ଛେଳିକି ଦେଖି ମହାବଳ କହିଲା, ମୁଁ ତୋତେ ଖାଇବି । ଛେଳି କହିଲା, ମୁଁ ତ କଅଁଳ ପିଲାଟେ, ମୋ ଦେହରେ ହାଡ଼ ଦି'ଖଣ୍ଡ, ଚମ ଟିକିଏ, ରକତ ମାଉଁସ କିଛି ନାହିଁ, ଯା ଖାଇ ତୁମ ପେଟ ପୂରିବ ନାହିଁ, ମୁଁ ମାମୁଁ ଘରକୁ ଯାଉଚି, ମାମୁଁ ଘରେ ବିଭାଘର । ବିଭାଘର କ୍ଷୀରୀପିଠା ଖାଇ ମୋଟାମୋଟି ଚିକ୍‌କଣ ବାକ୍‌କଣ ହୋଇ ଆସିଲେ ଖାଇବ, ଏଇଠି ବସିଥାଅ । ବାଘ କହିଲା, ତୁ ନିଶ୍ଚୟ ଆସିବୁ, ମୁଁ ଏଇଠି ତୋ ଅପେକ୍ଷାରେ ବସିଚି । ଛେଳି ପୁଣି କିଛିଦୂର ଯାଇଚି, ଦେଖେ ଗୋଟେ ଭାଲୁ ବାଟରେ ବସିଚି । ଭାଲୁ ଛେଳିକି ଦେଖି କହିଲା, ମୁଁ ତୋତେ ଖାଇବି । ଛେଳି କହିଲା, ଭାଲୁ ଭାଇ ! ମୋ ଦେହରେ ତ ଦିଖଣ୍ଡ ହାଡ଼, ଟିକିଏ ଚମ, ରକତ ମାଉଁସ କିଛି ନାହିଁ, ତୁ ମତେ ଖାଇ କଅଣ ସୁଆଦ ପାଇବୁ ? ମୁଁ

ମାମୁଁଘରକୁ ଯାଉଚି; ମାମୁଁ ଘରେ ବିଭାଘର; ବିଭାଘର କ୍ଷୀରୀପିଠା ଖାଇ ଚିକ୍‌କଣ ଚାକ୍‌କଣ ମୋଟାମୋଟି ହୋଇ ଆସିଲେ ଖାଇବୁ, ଏଠାରେ ବସିଥା । ଭାଲୁ କହିଲା, ମୁଁ ତତେ ଚାହିଁ ବସିଚି, ତୁ ନିଶ୍ଚେ ଆସିବୁ । ଭାଲୁକୁ ହଁ ବୋଲି କହି ଛେଳି ପୁଣି ଆଗକୁ ଚାଲିଲା । ବାଟରେ ଗୋଟେ ବିଲୁଆ ଦେଖି କହିଲା, ଛେଳି, ମୁଁ ତତେ ଖାଇବି । ଛେଳି କହିଲା – ବିଲୁଆ ଭାଇ ! ମୁଁ ତ ପିଲାଟେ, ମୋ ଦେହରେ ଦିଖଣ୍ଡ ହାଡ଼, ଟିକିଏ ଚମ, ରକ୍ତମାଂସ କିଛି ନାହିଁ, ତୋ ପାଟିକି ମୁଁ ପୁଳିଏ ହେବି, ତୁ ମତେ ଖାଇ କି ସୁଆଦ ପାଇବୁ ? ମୁଁ ମାମୁଁଘରକୁ ଯାଉଚି, ମାମୁଁଘରେ ବିଭାଘର, ବିଭାଘର କ୍ଷୀରୀପିଠା ଖାଇ ମୋଟାମୋଟି ଚିକ୍‌କଣ ବାକ୍‌କଣ ହୋଇ ଆସେ ଖାଇବୁ, ଏଇଠେଇ ବସିଥା । ବିଲୁଆ କହିଲା, ତୁ ନିଶ୍ଚେ ଆସିବୁ, ମୁଁ ତତେ ଚାହିଁ ବସିଚି । ଛେଳି ହଁ କହି ଚାଲିଗଲା । ଯାଉ ଯାଉ ବାଟରେ ଗୋଟେ ଦେଉଳ ପଡ଼ିଲା ! ସେ ଦେଉଳରେ ଦିଅଁ ଥାଆନ୍ତି । ଦେଉଳ ଭିତରେ ଦିଅଁଙ୍କର ଅନେକ ସୁନା, ରୁପା, ଟଙ୍କା, ମୋତି, ମାଣିକରୁ ପେଟେ ଗିଳିଲା । ଏଇ ସମୟରେ ଦିଅଁ ସେବା କରିବା ପାଇଁ ମାଳୀ ଅଇଲା । ମାଳୀ ଦେଖେ ତ ଦିଅଁଙ୍କ ଦୁଆର କିଳା ହୋଇଚି । କବାଟରେ ହାତ ମାଇଲା, ବହୁତ ଡାକିଲା, ଏ ଦେଉଳ ଭିତରେ କିଏ ଅଛ, ଦୁଆର ଫିଟା । ଛେଳି ଭିତରେ ଥାଇ କହିଲା –

"ମି ମି କା ମାଣିକ ରଜା,
ଶିଙ୍ଗ ଦୁଇଟା ଗୋଜା ଗୋଜା ।
ଏକା ଶିଙ୍ଗକେ ପର୍ବତ ଟାଳେ,
ଦି ଶିଙ୍ଗରେ ମଣିଷ ମାରେ ।
ତାଳ ଗଛକୁ ଫୋପଡ଼ା କରେ,
ନଡ଼ିଆ ଗଛ ଦାନ୍ତକାଠି କରେ ।
ପଣ୍ଡା ଦେଖିଲେ ମଣ୍ଡା କରେ
ମାଳୀ ଦେଖିଲେ ତାଳି କରେ ।"

ମାଳୀ ଯା ଶୁଣି ଭୟରେ ପଳାଇଯାଇ ରଜାଙ୍କୁ ସବୁ କଥା କହିଲା । ରଜା ଶୁଣି ଆଚମ୍ବିତ ହେଲେ । ରଜା ନିଜେ ପାତ୍ର ମନ୍ତ୍ରୀ ଘେନି ଦେଉଳକୁ

ବିଜେ କଲେ । କବାଟରେ ହାତ ମାରି ଡାକିଲେ, କିଏ ସେ ଅଛରେ, ଦୁଆର ଫିଟାଅ । ଛେଳି ଭିତରେ ରହି କହିଲା –

"ମି ମି କା ମାଣିକ ରଜା,
ଶିଙ୍ଗ ଦୁଇଟା ଗୋଜା ଗୋଜା ।
ଏକା ଶିଙ୍ଗକେ ପର୍ବତ ଟାଳେ,
ଦି ଶିଙ୍ଗରେ ମଣିଷ ମାରେ ।
ତାଳ ଗଛକୁ ଫୋପଡ଼ା କରେ,
ନଡ଼ିଆ ଗଛ ଦାନ୍ତକାଠି କରେ ।
ପଣ୍ଡା ଦେଖିଲେ ମଣ୍ଡା କରେ
ମାଳୀ ଦେଖିଲେ ତାଳି କରେ ।
ରଜା ଦେଖିଲେ ଖଜା କରେ,
ରାଣୀ ଦେଖିଲେ କାଣୀ କରେ ।"

ଏ କଥା ଶୁଣି ରଜା, ମନ୍ତ୍ରୀ, ପାତ୍ର, ପଣ୍ଡା, ମାଳୀ ସମସ୍ତେ କିଏ କୁଆଡ଼େ ପ୍ରାଣଭୟରେ ଅସ୍ତବ୍ୟସ୍ତ ହୋଇ ପଳେଇଗଲେ । ଛେଳି କବାଟ ଫାଟବାଟେ ଚାହିଁଥାଏ । ଯିମିତି ଦେଖିଲା ଗୋଟିଏ ହେଲେ ମଣିଷ ଦେଉଳ ଆଖପାଖରେ ନାହାନ୍ତି, ସିମିତି କବାଟ ଫିଟେଇ ଦେଉଳ ଭିତରୁ ବାହାରିଲା । ଭାବିଲା କିମିତି ଘରକୁ ଯିବି ? ମାଆ ତ ଚାହିଁ ବସିଥିବ । ବାଟରେ ତ ବିଲୁଆ, ଭାଲୁ, ମହାବଳ ବାଘ ଖାଇବାପାଇଁ ଜଗିଥିବେ । ଚାହିଁ ଦେଖେ ତ ଗୋଟେ ପଙ୍କଗାଡ଼ିଆରେ ବହୁତ ପଙ୍କ ଅଛି, ସେଥିରେ ବୁହେ ଗଡ଼ିଗଲା । ଗୋଟେ ତିନ୍ତୁଳିଗଛ ମୂଳରେ ଅନେକ ତିନ୍ତୁଳିପତ୍ର ଶୁଖି ପଡ଼ିଥିଲା । ସେ ପଙ୍କ ସରସର ହୋଇ ପୁଣି ପତ୍ର ଉପରେ ବୁହେ ଗଡ଼ିଗଲା । ପଙ୍କ ଲଟପଟ ଦେହରେ ପତ୍ରଯାକ ଲାଗି ରହିବାରୁ ଗୋଟେ ନୂଆ ଭୟାନକ ବେଶ ଧରି ଘରକୁ ବାହାରିଲା । ବାଟରେ ବିଲୁଆ ଯାକୁ ଦେଖି ପଚାରିଲା, ପତରମୂଷି, ପତରମୂଷି, ମୋ ମେଁ'କୁ ଦେଖିଚୁ କି ? ଛେଳି କହିଲା, "ମୁଁ କି ଜାଣେ ମେଁ ଫେଁ, ମୁଁ ଯାଇଥିଲି ରଜାଘର ପତର ସିଇଁ ।" ଯା କହି ବିଲୁଆକୁ ଅଖାତର କରି ଚାଲିଗଲା । ପୁଣି ଭାଲୁ

ପଚାରିଲା, ପତରମୂଷି, ପତରମୂଷି ମୋ ମେଁ'କୁ ଦେଖିଚୁ କି ? ଛେଳି ଭାଲୁକୁ ବେଖାତିର କରି କହିଲା, ମୁଁ କି ଜାଣେ ମେଁ ପେଁ, ମୁଁ ଯାଇଥିଲି ରଜାଘର ପତର ସିଇଁ । ଏହା କହି ଚାଲିଗଲା । ବାଟରେ ମହାବଳ ବାଘ ଛେଳିକି ଚିହ୍ନି ନ ପାରି ପଚାରିଲା, ପତରମୂଷି, ପତରମୂଷି ମୋ ମେଁ'କୁ ଦେଖିଚୁ କି ? ଛେଳି କହିଲା, ମୁଁ କି ଜାଣେ ମେଁ, ପେଁ, ମୁଁ ଯାଇଥିଲି ରଜାଘର ପତର ସିଇଁ । ଯା କହି ବାଟେ ବାଟେ ଚାଲିଲା । ଯାଇ ରାତିଅଧକୁ ଘରେ ପହଞ୍ଚି ମାଆକୁ ଡକା ପକାଇଲା । ଛେଳି ମା' ପୁଅଡ଼ାକ ଶୁଣି ଧଡ଼ପଡ଼ ଲସର ପସର ହୋଇ ଝଟକରି କବାଟ ଫିଟେଇ ଦେଲା । ପୁଅକୁ ଦେଖି ଛାତିରେ ହାତ ବାଡ଼େଇ ଏତେ ରାତିରେ ମୋ ଗଣ୍ଠିଧନ, ଦୁଃଖୀସଙ୍ଖାଳି କୁଆଡୁ ଅଇଲୁ କହି କୁଣ୍ଢାଇ ପକାଇଲା । ପୁଅ କହିଲା, ମତେ ପାଣି ଦେ, ମୁଁ ଗାଧୁଆ ପାଧୁଆ କରି ପକାଏ । ହାତ, ଗୋଡ଼, ଦିହ, ମୁହଁ ଚାରିଆଡ଼େ ମା' ଧୋଇଧୋଇ ସଫା ସୁତୁରା କରିଦେଲା । ଦୁଧଭାତ ଗଣ୍ଡିଏ ଖାଇବାକୁ ଦେଲା । ପୁଅ କହିଲା, ମା' ମୁଁ ହଗି ଯିବି । ମା' କହିଲା ତେବେ ଖତଗଦାକୁ ଯା । ନାହିଁ, ତୋ ପଣତକାନି ଦେଖା ହଗିବି । ମାଆ ପଣତକାନି ପକେଇ ଦେଲାରୁ ପୁଅ ସୁନା, ରୁପା, ଟଙ୍କା, ମୋତି, ମାଣିକ ଗୁଡ଼େ ଝଣଝଣ କରି ହଗି ପକେଇଲା । ମାଆକୁ କହିଲା, ମାଆ କୁଲାଟାରେ ନେଇ ଗଡ଼ିଆରେ ଧୋଇଆଣ । ମାଆ ସିମିତି ସଫାସୁତୁରା କରି ଧୋଇ ଆଣିଲା । ସେସବୁ ମହାଆନନ୍ଦରେ ରଖି ମା ପୁଅ ଦିହେଁ ଶୋଇଲେ । ସକାଳେ ଛେଳିମାଆ ଟଙ୍କା ସୁନା ମାଣ ଗୌଣିରେ ମାପୁଛି, ଏହି ସମୟରେ ମାଙ୍କଡ଼ ମା' ନିଆଁ ଟିକିଏ ନେବାପାଇଁ ଛେଳି ମା' ଘରକୁ ଆସିଲା । ପଚାରିଲା, ହଇଗୋ । ଏ ଟଙ୍କା ସୁନା ସବୁ କେଉଁଠୁ ଅଇଲା ? ଛେଳି ମା' କହିଲା, ମୋ ପୁଅ କାଲି ରାତିରେ ଆଣିଚି । ମାଙ୍କଡ଼ ମା' କହିଲା, ମୋ ପୁଅକୁ ହେଲେ ସାଙ୍ଗରେ ଟିକିଏ ନେଲା ନାହିଁ ? କାଲି ସକାଳୁ ହେଲେ କୁଆଡ଼େ ଯାଆନ୍ତା । ଛେଳି କହିଲା, ତୋ ପୁଅ ମୁଣ୍ଡରେ ଗୋଟେ ଜଟା ବାନ୍ଧି ଛାଡ଼ିଦେ । ସେ ରଜା ନଅର ପକ୍କା ଉପରେ ଡେଇଁ କରି ଗୀତ ଗାଉଥିବ, "ମୁଣ୍ଡରେ ଜଟା, କୁଆ ହଗିଦିଏ ଲଟାପଟା" । ଏ କଥା ଶୁଣି ରଜାଘର ଲୋକେ ଧରିନେବେ । ଭଲ ଜିନିଷ ଖାଇବାକୁ

ଦେବେ । ରଜାଘରେ ତ ସୁନାରୁପା, ହୀରାନୀଳା, ମୋତିମାଣିକ ଢେର ଥିବ । ସେଥିରୁ ଲୋକେ ନ ଥିବାବେଳେ ପେଟେ ଗିଳି ପକେଇ ଆସିବ । ରାତି ଅଧରେ ଘରେ ପହଞ୍ଚିଲେ ତୁ ଠେଙ୍ଗାଟେ ଧରି ପିଟିଲେ ତୋ ପୁଅ ଯାହା ଗିଳିଥିବ, ତା' ସବୁ ହଗିବ । ତୁ ଅନେକ ଟଙ୍କା, ସୁନା, ହୀରା, ନୀଳା ପାଇବୁ ।

ମାଙ୍କଡ଼ ମାଆ ଛେଳି କଥା ଶୁଣି ଭାରି ଖୁସି ହୋଇ ପୁଅ ମୁଣ୍ଡରେ ଗୋଟେ ଜଟା ବାନ୍ଧି ଦେଲା । ପୁଅକୁ କହିଲା, ତୁ ଯାଇ ରଜାଘର ନଅର ପକ୍‌କାରେ ଡେଇଁ ଗୀତ ବୋଲିବୁ, "ମୁଣ୍ଡରେ ଜଟା, କୁଆ ହଗିଦେଲା ଲଟାପଟା" । ତତେ ଧରିନେବେ । ରଜାଘରେ ସୁନା, ରୁପା, ମୋତି, ମାଣିକ ଯାହା ଥିବ ପେଟେ ଖାଇଆସିବୁ । ଏହା କହି ଗଣ୍ଡିଏ ପଖାଳ ଖାଇବାକୁ ଦେଇ ଛାଡ଼ିଦେଲା । ମାଙ୍କଡ଼ ଯାଇ ରଜା ନଅର ପକ୍‌କା ଉପରେ ଡିଆଁ ଡେଇଁ କରି ଗୀତ ବୋଲୁଥାଏ, "ମୁଣ୍ଡରେ ଜଟା, କୁଆ ହଗିଦେଲା ଲଟାପଟା" । ରଜାଘର ଲୋକେ ମାଙ୍କଡ଼କୁ ଧରି ନେଇ ନିସ୍ଥୁକ ମାଡ଼ ଛେଚି ଛାଡ଼ିଦେଲେ । ସେ ତ ରଜାଘର, କେଉଁଠି ଗୋଟେ ଟଙ୍କା ଥୁଆ ହୋଇଥିଲା, ମାଙ୍କଡ଼ ସେଇଟା ଗିଳିଦେଇ ଘରକୁ ଆସିଲା । ରାତି ଅଧରେ ସେ ମାଆକୁ ଡାକିଲା । ମା' ଦୁଆର ଫିଟେଇଦେଇ ପୁଅକୁ ହଗିବାକୁ କହିଲା । ମାଆ ହାତରେ ଗୋଟେ ଠେଙ୍ଗା ଧରିଥାଏ, ପୁଅ ନ ହଗିବାରୁ ତାକୁ ଠେଙ୍ଗାରେ ପିଟିଲା । ଅନେକ ଠେଙ୍ଗା ମାଡ଼ ବସିବା ପରେ ପୁଅ ଗିଳିଥିବା ଟଙ୍କାଟି ହଗି ପକେଇଲା । ଆଉ ଟଙ୍କା ସୁନା ହଗିବ ବୋଲି ବିଚାରି ମାଆ ପୁଣି ପିଠିରେ ଠେଙ୍ଗାମାଡ଼ କରୁ କରୁ ପୁଅଟି ଶେଷ । ମାଙ୍କଡ଼ ମାଆ ବହୁତ କାନ୍ଦିଲା । ଛେଳି ଆଉ ଛେଳି ମାଆ ସୁଖରେ ରହିଲେ; ମୁଁ ଗଲାରୁ ମୋତେ ଟଙ୍କା ସୁନା ଦବା ତେଣିକି ଥାଉ, କଥା ପଦେ କହିଲେ ନାହିଁ ।

# ମହାବଳ ବାଘ କଥା

ଆମ ଏହି ଓଡ଼ିଶା ମୁଲକରେ ଚଉଷଠିପଡ଼ା ବୋଲି ଗୋଟିଏ ରାଜୁଡ଼ା ଅଛି । ପୂର୍ବେ ସେ ରଜାଘରର ଅଚଳାଚଳ ସମ୍ପତ୍ତି ଥିଲା । ସେକାଳେ ରଜାଘରେ ହାତୀ, ବାଘ, ହରିଣ ପୋଷା ହେଉଥିଲେ । ସେଇ ରଜାଙ୍କ ସିଂହଦୁଆରେ ଗୋଟେ ମହାବଳ ବାଘ ଲୁହା ପଞ୍ଜୁରିରେ ବନ୍ଧା ହୋଇ ରହିଥାଏ । ଲୋକେ ଯିବା ଆସିବା ବେଳେ ସେ ବାଘକୁ ଦେଖୁଥାଆନ୍ତି । କିଏ କେତେ କଥା କହୁ ଥାଆନ୍ତି । କିଏ କହେ, ଏ ମହାବଳ ବନ୍ଧା ନ ହୋଇଥିଲେ ଏ କ'ଣ ମଣିଷ ରଖନ୍ତା, ଖାଇଯାଆନ୍ତା । କେତେ ଗୋରୁ, ଛେଳି, ମେଣ୍ଢା ମାରି ପକାନ୍ତା । ବାଘ ସବୁ ଶୁଣୁଥାଏ, ମନେ ମନେ ଭାବୁଥାଏ, କିପରି ଏଥିରୁ ଖସନ୍ତି, କିଏ ପଞ୍ଜୁରିରୁ ଫିଟାଇ ଦିଅନ୍ତା, ତେବେ ଏ ମଣିଷଙ୍କ କଥା ବୁଝନ୍ତି, ଗୋଟି ଗୋଟି କରି ମାରି ଖାଆନ୍ତି ।

ଏଣିକି ବାଘ ଯାହାକୁ ଦେଖେ, ତାକୁ ହାତ ଯୋଡ଼ି କହେ, ଭାଇ ! ଟିକିଏ ଏଇ ପଞ୍ଜୁରି ଦୁଆର ଫିଟେଇ ଦିଅନ୍ତ ? ଯେ ଶୁଣେ, ସେ କହେ, ଫିଟେଇଦେଲେ ତୁ ଆଉ ଆମକୁ ରଖିବୁ ? ବାଘ କହେ, ଭାଇ ! ମୁଁ କ'ଣ ଏଡ଼େ ଖରାପ ଯେ ତୁମେ ମୋର ଉପକାର କରିବ, ମୁଁ ତୁମକୁ ମାରି ଖାଇବି ? ବାଘ ଯେତେ କହିଲେ ମଧ୍ୟ କେହି ପଞ୍ଜୁରି ଫିଟାଇବାକୁ ମଙ୍ଗୁ ନ ଥା'ନ୍ତି । ଏହିପରି କେତେଦିନ ଚାଲିଗଲା ପରେ ସେଇ ରଜାଙ୍କ ପୁଅ ବିଭାଘର ହେଲା । ଅନେକ ଆଡୁ ଅନେକ ବ୍ରାହ୍ମଣ, ପଣ୍ଡିତ, ହାକିମ ହୁକୁମା ନିମନ୍ତ୍ରଣ ପାଇ ଆସିଲେ । ଭାରି ଖିଆପିଆର ଧୁମ୍‌ଧାମ୍ ଲାଗିଲା । ପଣ୍ଡିତମାନେ ବେଦ ବେଦାନ୍ତ, ପୁରାଣ, କାବ୍ୟ, ନାଟକମାନ ଭାରି ପାଟି କରି ପଢ଼ିଲେ । ଢେର୍ ଢେର୍ ବିଦାକି ଆଣିଲେ । ସେହି ପଣ୍ଡିତମାନଙ୍କ ଭିତରେ ଜଣେ ବଡ଼ ପଣ୍ଡିତ ଥାଆନ୍ତି । ତାଙ୍କୁ ମହାବଳ ବାଘ ଯେତେବେଳେ ଦେଖେ, ନମସ୍କାର କରି କହେ, ଆଜ୍ଞା ଦୟାକରି ଏ ପଞ୍ଜୁରି ଦରଜା ଟିକିଏ ଫିଟାଇ ଦିଅନ୍ତେ, ଭାରି ଉପକାର କରନ୍ତେ । ମୁଁ

ଆପଣଙ୍କ ଗୋଡ଼ତଳେ ପଡୁଚି । ଏହିଭଳି ଆଠ ଦଶଥର କହିବାରୁ ପଣ୍ଡିତଙ୍କ ମନରେ ଦୟା ହେଲା । ଜଣେ ବଡ଼ ପଣ୍ଡିତ, ଅନେକ ପାଠ ଶାସ୍ତ୍ର ଜାଣନ୍ତି । ଜୀବ ପ୍ରତି ଦୟା କରିବା କଥା ଶାସ୍ତ୍ରରେ ଅଛି, ପଣ୍ଡିତେ ଏହା ବହୁବାର ପଢ଼ିଛନ୍ତି । ଧୀରେ ପଞ୍ଜୁରି ଦୁଆର ଫିଟାଇଦେଲେ ।

ସେତେବେଳେ ଆଉ ଆଉ ପଣ୍ଡିତ କିମ୍ବା ରଜାଘରର ଅନ୍ୟ ଲୋକ କେହି ନାହାନ୍ତି, ପଣ୍ଡିତେ ଏକୁଟିଆ । ବାଘ ପଣ୍ଡିତଙ୍କୁ ଏକାକୀ ଦେଖି ହସି ହସି କହିଲା, ପଣ୍ଡିତେ ମୁଁ ତୁମକୁ ଖାଇବି, ଅନେକ ଦିନ ହେଲା ମଣିଷ ଖାଇ ନାହିଁ । ତୁମେ ପଣ୍ଡିତ, ରଜା ଦୁଆରେ ବହୁତ ବହୁତ ଭଲ ଭଲ ଜିନିଷ ଖାଇ ଦେହକୁ ବେଶ୍ ମୋଟାମୋଟି ଚିକ୍‌କଣ ଚାକ୍‌କଣ କରିଚ, ତୁମ ରକତ ମାଉଁସ ଭଲ ଲାଗିବ । ମୁଁ ତୁମକୁ ନିଶ୍ଚେ ଖାଇବି । ପଣ୍ଡିତେ ବୁଢ଼ା, ବାଘ ମୁହଁରୁ ପଳେଇବାକୁ ବଳ ନାହିଁ । ପଣ୍ଡିତେ ଚଞ୍ଚଳ ନ ହୋଇ ମହାବଳକୁ କହିଲେ ଦେଖ୍ ମୁଁ ତୋର ଏତେ ଉପକାର କଲି, ତୁ ପଞ୍ଜୁରି ଭିତରେ ରହି କେତେ କଷ୍ଟ ପାଉଥିଲୁ, କିଏ କେତେ ତତେ ଗାଳି ଦେଉଥିଲେ; ତୁ ମୋ ଉପକାର ନ ମାନି ମୋତେ ଖାଇବୁ ବୋଲି କହୁଚୁ, ଏପରି କଥା କିଏ କେବେ କରେ ? ବାଘ କହିଲା, କରେ କ'ଣ ? ସମସ୍ତେ ଏଇଆ କରନ୍ତି । ପଣ୍ଡିତେ କହିଲେ, ଯା କେଭେଁ ନୁହେଁ । ଆଚ୍ଛା, ତୋ କଥା ଯେବେ ସତ ହେବ, ପାଞ୍ଚଜଣ ଯଦି କହିବେ ଉପକାରୀକୁ ଏଇଭଳି କରନ୍ତି, ତେବେ ତୁ ମତେ ଖାଇବୁ । ବାଘ କହିଲା, ହଉ ତେବେ ଚାଲ, କାହାକୁ ପଚାରୁଚ ପଚାର । ଯେବେ ଶୁଣି ପାଞ୍ଚଜଣ କହିବେ ଉପକାରୀର ଉପକାର କରିବ, ତେବେ ମୁଁ ଛାଡ଼ିଦେବି, ନୋହିଲେ ନିଶ୍ଚେ ଖାଇବି । ଏଇ କଥା ସ୍ଥିର କରି ଦୁହେଁ ବାହାରିଲେ । ବାଟରେ ଯାଉଁ ଯାଉଁ ଗୋଟେ ବଡ଼ ବରଗଛ ପଡ଼ିଲା । ପଣ୍ଡିତେ କହିଲେ, ଏଇ ବରଗଛକୁ ପଚାରିବା । ବାଘ କହିଲା, ହଉ ତେବେ ପଚାର । ପଣ୍ଡିତେ କହିଲେ, ହେ ବରଗଛ, ତୁ ବୁଢ଼ା ହେଲୁଣି, ଅନେକ କଥା ଦେଖିଛୁ, ଅନେକ କଥା ଶୁଣିଛୁ, ଅନେକ କଥା ବୁଝିଚୁ । ତୁ କହ, ଯେ ଯାହାର ଉପକାର କରେ, ସେ କ'ଣ ତା'ର ଅନିଷ୍ଟ କରେ ? ବରଗଛ କହିଲା – ହଁ, ତା ତ ଲୋକେ ଆଗ କରନ୍ତି । ଦେଖୁନାହଁ, ଲୋକେ ଖରାରେ ପୋଡ଼ି

ଚାଲିଗଲାବେଳେ ମୋ ଛାଇ ତଳେ ବସି ଥଣ୍ଡା ହୁଅନ୍ତି, ଗଲାବେଳକୁ ମୋ ପତ୍ର ଛିଣ୍ଡେଇ ଡାଳ ଭାଙ୍ଗି ଚାଲିଯା'ନ୍ତି; ଏଥିରୁ ଜାଣୁନାହୁଁ । ବାଘ କହିଲା, ଦେଖିଲ, ଶୁଣିଲ, ବରଗଛ କ'ଣ କହିଲା ? ପଣ୍ଡିତେ ! ତେବେ ତୁମକୁ ନିଶ୍ଚେ ଖାଇବି । ପଣ୍ଡିତେ କହିଲେ ତେବେ ଚାଲ ଆଉ ଜଣେ ଦି'ଜଣଙ୍କୁ ପଚାରିବା । ବାଘ କହିଲା, ହଉ ତେବେ କାହାକୁ ପଚାରୁଚ ପଚାର । ଖଣ୍ଡେ ଦୂର ଯାଇଛନ୍ତି, ଗହୀର ବିଲ ମଝିରେ ଗୋଟେ ବଡ଼ ହିଡ଼ ପଡ଼ିଲା । ପଣ୍ଡିତେ ହିଡ଼କୁ ପଚାରିଲେ, ହେ ହିଡ଼ ! ତୁ କହିଲୁ ଭଲା, ଯେ ଯାହାର ଉପକାର କରେ, ସେ କ'ଣ ତା'ର ଅନିଷ୍ଟ କରେ ? ହିଡ଼ କହିଲା, ତା' ତ ନିଶ୍ଚୟ କରନ୍ତି । ଦେଖୁନାହଁ, ମୁଁ ଦିଜଣଙ୍କ ଜମିରେ ମଝିରେ ଅଛି, କାହା ବିଲ ପାଣି କାହା ବିଲକୁ ଛାଡ଼ିଦିଏ ନାହିଁ । କେହି କାହାର ଜମି ନେଇପାରନ୍ତି ନାହିଁ । ମୁଁ କେତେ ଉପକାର କରୁଚି, ତେବେ ସୁଦ୍ଧା ମୋତେ ଲୋକେ ଲଙ୍ଗଳରେ ଚଷି, କାଙ୍କରେ ହାଣି ବିଲ ବଢ଼ାଉଛନ୍ତି । ବାଘ କହିଲା, ପଣ୍ଡିତେ, ଶୁଣିଲ, ଏବେ ମୁଁ ତୁମକୁ ନିଶ୍ଚେ ଖାଇବି । ପଣ୍ଡିତେ କହିଲେ, ଆଉ ଜଣକୁ ପଚାରିବା । ବାଘ କହିଲା ହଉ କାହାକୁ ପଚାରୁଚ ପଚାର । ଯାଉଁ ଯାଉଁ ବାଟରେ ଗୋଟେ ବିଲୁଆକୁ ଦେଖିଲେ । ପଣ୍ଡିତେ ପଚାରିଲେ, ବିଲୁଆ ଭାଇ ! ଶୁଣ, ଯେ ଯାହାର ଉପକାର କରେ, ସେ କ'ଣ ତା'ର ଅନିଷ୍ଟ କରେ ? ବିଲୁଆ କହିଲା, କିଏ କାହାର ଉପକାର କଲା, କିଏ କାହାର ଅନିଷ୍ଟ କଲା, ନ ବୁଝିଲେ କିଛି କହିପାରିବି ନାହିଁ । ପଣ୍ଡିତେ କହିଲେ, ଏଇ ବାଘ ଚଉଷଠିପଡ଼ା ରଜା ଦୁଆରେ ପଞ୍ଜୁରି ଭିତରେ ଚାବି ଦିଆଯାଇ ବନ୍ଦଥିଲା । କେତେ ଲୋକଙ୍କୁ ଦୁଆର ଫିଟେଇ ଦେବାକୁ କହିଲେ ମଧ କେହି ମଙ୍ଗିଲେ ନାହିଁ । ମୁଁ ଫିଟେଇ ଦେବାରୁ ଏବେ ମୋତେ ଖାଇବ ବୋଲି ବସିଚି । ମୁଁ ଯାର ଉପକାର କଲି, ଏ ମୋର ଅନିଷ୍ଟ କରିବ, ଏଇଟା କ'ଣ ଭଲ କଥା ? ବିଲୁଆ କହିଲା, ସେ ପଞ୍ଜୁରି କେଡ଼େ ? ମହାବଳ ବାଘଟା ବା କିପରି ତା' ଭିତରେ ଥିଲା, ନ ଦେଖିଲେ କିଛି କହିପାରିବି ନାହିଁ । ଏ ବଡ଼ ଅଡୁଆ କଥା । ବାଘ କହିଲା, ବିଲୁଆ ଭାଇ, ଚାଲ ସେ ପଞ୍ଜୁରି ଦେଖିବୁ । ବିଲୁଆ, ବାଘ ଆଉ ପଣ୍ଡିତେ ଆସି ପଞ୍ଜୁରି ଆଗରେ ପହଞ୍ଚିଲେ । ବିଲୁଆ ସେହି ପଞ୍ଜୁରି ଚାରିପଟ ଥରେ ବୁଲିଯାଇ ଏ ଆଡ଼ ସେ ଆଡ଼ ଦେଖି କହିଲା, ହଁ ଏଥର ସବୁ ବୁଝାପଡ଼ିବ ।

ପଣ୍ଡିତେ, ଏ ପଞ୍ଜୁରି ଭିତରେ ବାଘ କିମିତି ଥିଲା, ତୁମେ କୁଆଡ଼େ ଯାଉଥିଲ, ଏସବୁ ଭଲକରି କହ । ପଣ୍ଡିତେ କହିଲେ, ଏ ବାଘଟା ଏଇ ପଞ୍ଜୁରି ଭିତରେ ଥିଲା, ମୁଁ ଏହି ବାଟ ଦେଇ ଯାଉଥିଲି । ବିଲୁଆ କହିଲା, ରହ ରହ ଏତେ ତର ତର କରି କହ ନାହିଁ, ଟିକିଏ ବସେଇ ବସେଇ କଥାଟା କହ । ତୁମେ କହୁଚ, ବାଘ ବାଟ ପାଖରେ ଥିଲା, ଏ ପଞ୍ଜୁରିଟା ବାଟ ଉପରେ ରହି ରହି ଯାଉଥିଲା । ବାଘ ଏକଥା ଶୁଣି ଠୋ ଠୋ ହସିଲା; କହିଲା, ଆରେ ଗଧ, ପଣ୍ଡିତେ କହିଲେ, "ବାଘ ପଞ୍ଜୁରି ଭିତରେ ଥିଲା, ମୁଁ ଏହି ବାଟ ଦେଇ ଯାଉଥିଲି ।" ବିଲୁଆ ଶୁଣି କହିଲା, ଏଇ କଥା କହୁଚ ? ଏକଥା ଶୁଣି ବାଘ କହିଲା, ଆରେ ବୋକା, ତିନି ଥରରେ ଗୋଟିଏ କଥା ବୁଝିପାରିଲୁ ନାହିଁ । ଆରେ ତା' ନୁହେଁ, ବାଘ ପଞ୍ଜୁରିରେ ଥିଲା, ପଣ୍ଡିତ ଏ ବାଟ ଦେଇ ଯାଉଥିଲା । ଯା ଶୁଣି ବିଲୁଆ କହିଲା, ଏ ତ ବଡ଼ ଅଡୁଆ କଥା, ଯା ତ ମୁଁ କିଛି ବୁଝିପାରୁ ନାହିଁ । ମୁଁ ତୁମ କଥା ବୁଝିପାରିବି ନାହିଁ, ଯାଉଚି । ଏକଥା ଶୁଣି ବାଘ କହିଲା, ତୋ ଭଳି ଓଲୁ ମୁଁ ଦେଖି ନାହିଁ । ଏଇ କଥାଟା ବୁଝିପାରୁ ନାହୁଁ, ଏତେ ଥରରେ ମଧ୍ୟ ବୁଝିପାରିଲୁ ନାହିଁ ? ଆରେ ବୋକା, ବାଘ ଥିଲା ପଞ୍ଜୁରି ଭିତରେ, ପଣ୍ଡିତ ଯାଉଥିଲା ବାଟରେ । ବିଲୁଆ ଟିକିଏ ମୁଣ୍ଡ ହଲାଇ କହିଲା, ଓହୋ ଏତେବେଳକୁ ଟିକିଏ ବୁଝାଗଲା । ପୁଣି କହିଲା, ଉହୁଁ, ଉହୁଁ, ଏସବୁ ଅଡୁଆ କଥାରେ ଆମର ପଶେ କିଏ, ମୁଁ ଯାଉଚି । ସେତେବେଳକୁ ବାଘ ରାଗିଗଲାଣି । ବାଘ କହିଲା, ପଳାଇବୁ କୁଆଡ଼େ ? ତୋତେ ଏକଥା ବରାବର ବୁଝିବାକୁ ହେବ । ଆରେ ଓଲୁ ଦେଖ୍, ମୁଁ ଏ ପଞ୍ଜୁରିରେ ଏହିପରି ଥିଲି । ଦେଖ୍ ବୋଲି କହି ବାଘ ପଞ୍ଜୁରି ଭିତରକୁ ଗଲାରୁ ବିଲୁଆ ସାଙ୍ଗେ ସାଙ୍ଗେ ଦୁଆରଟି ବନ୍ଦ କରିଦେଲା । ବାଘକୁ କହିଲା, ବୁଝିଲି । ଏଥର ଠିକ୍ ବୁଝିପାରିଲି, ଆଉ କିଛି ଅବୁଝା ନାହିଁ । ବାଘ ତ ବିଲୁଆକୁ ରଟମଟକରି ଚାହିଁ ଦାନ୍ତ ଚୋବାଉଚି । ବିଲୁଆ ପଣ୍ଡିତଙ୍କୁ କହିଲା, ମହାବଳ ବାଘ ଭଳି ଦୁଷ୍ଟ ପ୍ରାଣୀର ଉପକାର କଲେ, ଲାଭ ତ ମୃତ୍ୟୁ । ଆଉ ଦିନେ ଏପରି କରିବ ନାହିଁ, ଏବେ ଘରକୁ ଶୀଘ୍ରଯାଅ ଏକଥା କହି ବିଲୁଆ ନାଚି ନାଚି ବଣକୁ ବାହାରିଲା ।

# ନେଉଳଭାଇ କଥା

ଗୋଟିଏ ରଜାର ସାତଟି ରାଣୀ ଥିଲେ । ଛଅ ରାଣୀଙ୍କର ଛଅଟି ପୁଅ ହେଲା । ସବା ସାନରାଣୀ ଗୋଟିଏ ନେଉଳ ଜନମ କଲା । ନେଉଳଟି ବଡ଼ ଚତୁର । ଆଉ ଭାଇଯାକ ନେଉଳକୁ ଅଲଗା କରିଦେଲେ । ନେଉଳ ତା' ମାଆ ପାଖରେ ଅଲଗା ହୋଇ ରହିଲା । ସେମାନେ ସମସ୍ତେ ବଡ଼ ହେଲାରୁ ଦିନେ ଯାତ୍ରା ଦେଖିବାକୁ ବାହାରିଲେ । ସମସ୍ତେ ଭଲ ଲୁଗା ପିନ୍ଧି ବାହାରିବାରୁ ନେଉଳ ତା' ମାଆକୁ କହିଲା, 'ମା, ମୁଁ ଟିକିଏ ଯାତ୍ରା ଦେଖିବାକୁ ଯାଆନ୍ତି ?' ମାଆ କହିଲା, 'ତୁ ତ ନେଉଳଟିଏ, ତୁ କୁଆଡ଼େ ଯାତ୍ରା ଦେଖିବାକୁ ଯିବୁ ?' ନେଉଳ କହିଲା, 'ନା, ମାଆ ନିଶ୍ଚେ ଯିବି, ମୋର କିଛି ହେବ ନାହିଁ । ଏକଥା କହି ମାଆ ପାଖରେ ଭାରି ଅଳି କଲା । ମାଆ ତାକୁ ହଳଦୀ ଟିକିଏ ଲଗାଇ ଦେଲା, ତେଲ ଟିକିଏ ଲଗାଇ ଦେଇ ଚିକ୍‌କଣ ଚାକ୍‌କଣ କରିଦେଲା, ଖଣ୍ଡିଏ ନୂଆ ରଙ୍ଗ ଲୁଗା ଅଣ୍ଟାରେ ଗୁଡ଼େଇ ଦେଇ ତା' କାନିରେ ଯୋଡ଼ିଏ ପଇସା ବାନ୍ଧିଦେଲା । ସବୁ ଭାଇଯାକ ଆଗରେ ଯାଉଥାଆନ୍ତି, ନେଉଳ ଭାଇଟି ତାଙ୍କ ପଛେ ପଛେ ଯାଉଥାଏ । ଇମିତି କେତେ ବାଟ ଗଲାରୁ ବାଟରେ ଗୋଟିଏ ଧୋବାଘର ପଡ଼ିଲା । ଛଅ ଭାଇଯାକ ବିଚାର କଲେ, ନେଉଳଟାକୁ କୁଆଡ଼େ ନେବା; ଯାକୁ ଏଠାରେ ଛାଡ଼ି ପଳେଇ ଯିବା । ଏହି କଥା ବିଚାର କରି ନେଉଳକୁ ଧୋବାଘରକୁ ଡାକି ନେଲେ । ତାକୁ ସେଠାରେ ଛାଡ଼ିଦେଇ ସବୁ ଭାଇଯାକ ପଳେଇଗଲେ । ନେଉଳଟି ଧୋବାଘରେ ରହିଲା । ସେ ଧୋବାର ଗୋଟିଏ ଛୋଟ ପୁଅ ଥାଏ । ନେଉଳ ସେ ପିଲା ସାଙ୍ଗରେ ଖେଳେ, ବୁଲେ । ନେଉଳଟି ବଡ଼ ଚତୁର । ସେ ଧୋବା ପୁଅକୁ ପଚାରେ, 'ହଇରେ ! ତୋ' ବାପା ଟଙ୍କା କୁଠେଇଁ ରଖିଚି ? କହ, ନହେଲେ କାମୁଡ଼ି ଦେବିଟି ।' ସେ ପିଲାଟି ଡରଭୟରେ ସବୁଦିନ ଯାଇ ତା' ବାପା ଯେଉଁଠି ଟଙ୍କା ପୋତିଥିଲା, ତାହା ଉପରେ ନାଚେ । ଏକଥା ମାଆ ଦେଖି ପୁଅକୁ ଗାଳି ଦିଏ । ଏ ପିଲାଟା ରୋଜ୍

ରୋଜ୍ ଏଠାରେ ନାଚୁଛି କାହିଁକି ବୋଲି ବକେ । ନେଉଳ ତ ବଡ଼ ବୁଦ୍ଧିଆ । ସେ ଜାଣିପାରିଲା, ଏଠାରେ ଟଙ୍କା ଅଛି । ଦୂରରେ ଗୋଟିଏ ଗାତ କରି ଗୋଟି ଗୋଟି କରି ଟଙ୍କା ନେଇ ନେଇ ସବୁତକ ନେଇଗଲା । ସେ ଧୋବାଘରେ ପଲେ ମେଣ୍ଢୀ ଥାଆନ୍ତି । ବୁଢ଼ୀ ମେଣ୍ଢୀଟିକୁ ନେଉଳ ଭାରି ଭଲ ପାଏ । ତାକୁ ସବୁ ଟଙ୍କା ତକ ଗିଳଉଥାଏ । ଦିନେ ସେଇ ଧୋବାପୁଅଟି ଶୋଇଥିଲା । ଗୋଟିଏ ନାଗସାପ ଆସି ତାକୁ କାମୁଡ଼ିବାରୁ ନେଉଳ ଦଉଡ଼ିଆସି ସାପକୁ ତିନିଗଡ଼ କରି ପକେଇଲା । ମଝି ଗଡ଼କ ଖାଇ ଲାଞ୍ଜମୁଣ୍ଡ ଯୋଡ଼ି ଛାଡ଼ିଦେଲା । ସାପ ଚାଲିଗଲା । ଏଣେ ପିଲାଟି ସାପ କାମୁଡ଼ାରେ ଅଚେତ ହୋଇ ପଡ଼ିଥା'ଏ । ନେଉଳ ଅମର ଔଷଧ ଆଣିବା ପାଇଁ ବଣ ଭିତରକୁ ଗଲା । ଧୋବଣୀ ଆସି ଦେଖେ ତ ନେଉଳ ଘରେ ନାହିଁ । ତା' ପୁଅଟି ଅଚେତ ହୋଇ ମଲା ପରି ପଡ଼ିଛି । ଯା ଦେଖି ଧୋବଣୀ ମନ କ'ଣ ହୋଇଯାଉଥାଏ । ସେ ଦାଣ୍ଡ ଦୁଆରକୁ ଧାଇଁ ଧୋବାକୁ ଚାହୁଁଥାଏ । ଏଇ ସମୟରେ ନେଉଳ ବଣ ଆଡୁ ଅଇଲା । ନେଉଳକୁ ଦେଖି ଧୋବଣୀ ରାଗରେ ଜର ଜର ହୋଇ ରକତ ଚାଉଳ ଚୋବାଉଥାଏ । ଯିମିତି ନେଉଳ ପାଖକୁ ଆସିଚି, ଦେଖେ ତା' ପାଟିରେ ରକତ ଲାଗିଚି । ଆଉ କ'ଣ ଧୋବଣୀ ସମ୍ଭାଳ ପଡ଼େ । ଏଇ ନିଅଁଶିଆ ପୋଡ଼ପଡ଼ା ନିଆଁଲଗା ନେଉଳଟା ମୋ ପିଲାକୁ ମାରି ରକତ ପିଇଚି କହି ଖଣ୍ଡେଦୂର ଦଉଡ଼ି ଯାଇ ନେଉଳକୁ କାଠେ ପିଟିଲା । ନେଉଳଟି ମଲାପରି ପଡ଼ି ଛଟପଟ ହେଉଥାଏ, ତା' ପାଟିରୁ ଖଣ୍ଡେ ଚେର ଖସିପଡ଼ିଲା । ଧୋବଣୀ ବିଚାରିଲା, ନେଉଳମାନେ ତ ବଣରୁ ଅମର ମଉଷଧି ଆଣନ୍ତି, ଏ କଅଣ ସେଇ ଅମର ମଉଷଧି କି ? ଯା ବିଚାରି ଚେରରୁ ଟିକିଏ ଘୋରି ପିଲାକୁ ପିଆଇ ଦେଲା । ପିଲାଟି ନିଦରୁ ଉଠିଲା ପରି ଉଠି କାନ୍ଦିଲା । ଧୋବଣୀ ପିଲାକୁ କୋଳକୁ ନେଇ ଦୁଧ ପିଇବାକୁ ଦେଲା । ନେଉଳକୁ ଚାହିଁ ଧୋବଣୀ ମନରେ ଭାରି କଷ୍ଟ ହେଉଥାଏ, ଭାବୁଥାଏ ଅକାରଣରେ ନେଉଳଟିକି ମାଇଲି । ପୁଅକୁ ତଳେ ବସେଇ ଦେଇ ବାକି ଅମର ଔଷଧି ଚେରଟିକୁ ଘୋରି ନେଉଳ ପାଟିରେ ଢେଣ୍ଡିଦେଲା । ନେଉଳ ଝଟ୍‌କରି ଉଠି ପଡ଼ିଲା, ଧୋବଣୀକୁ ସବୁକଥା କହିଲା । ଦିନେ

ଦି'ଦିନ ପରେ ନେଉଳର ଛଅଭାଇଯାକ ଯାତ ଦେଖି ସେଇବାଟେ ଫେରିଲେ । ଧୋବାଘରେ ଆସି ପହଞ୍ଚିଲେ । କହିଲେ, ଆରେ ନେଉଳ ଭାଇ । ଘରକୁ ଯିବ ଯେବେ ଆ । ଧୋବା ଧୋବଣୀ କହିଲେ, ଏ ଆମର ବହୁତ ଉପକାର କରିଚି; ଆମେ ୟାକୁ ଛାଡ଼ିବୁ ନାହିଁ । ନେଉଳ କହିଲା, ମତେ ମାସକ ପାଇଁ ଘରକୁ ଛାଡ଼ିଦିଅ, ଘରେ ମାଆକୁ ଦେଖି ପୁଣି ତୁମ ଘରକୁ ଆସିବି । ଧୋବଣୀ କହିଲା, ପୁଅରେ ପୁଅ, ତୁ ମୋର ବହୁତ ଉପକାର କରିଚୁ, ମୋ ପୁଅକୁ ସାପ ମୁହଁରୁ ବଞ୍ଚେଇଚୁ, ମୁଁ ତୋ ଋଣ ସୁଝି ପାରିବି ନାହିଁ, କଅଣ ମାଗୁଚୁ ମାଗ୍ । ନେଉଳ କହିଲା, ମାଆ ! ମତେ ଏ ବୁଢ଼ୀ ମେଣ୍ଢୀଟିକୁ ଦେ । ଧୋବା ଧୋବଣୀ କହିଲେ, ଟଙ୍କା ସୁନା କିଛି ମାଗିଲୁ ନାହିଁ, ଏଇ ବୁଢ଼ୀ ମେଣ୍ଢୀଟିକୁ ମାଗିଲୁ, ନେବୁ ତ ନେ । ଛଅ ଭାଇଯାକ ଆଗରେ ଚାଲିଥାଆନ୍ତି, ନେଉଳ ଭାଇ ବୁଢ଼ୀ ମେଣ୍ଢୀଟିକୁ ସାଙ୍ଗରେ ଧରି ପଛେ ପଛେ ଚାଲିଥାଏ । ସମସ୍ତେ ଆସି ଘରେ ପହଞ୍ଚିଲେ । ନେଉଳ ମେଣ୍ଢୀଟିକୁ ପାହାରେ ପାହାରେ ପକାଇ ଟଙ୍କା ହଗେଇଲା । ଅନେକ ଟଙ୍କା ହେବାରୁ ଭଲ ଘରଦ୍ୱାର କରି ନେଉଳ ଭାଇ ସୁଖରେ ରହିଲା । ୟା ଦେଖି ଅନ୍ୟ ଛଅଭାଇ ନେଉଳ ଭାଇକି ପଚାରିଲେ, ଭାଇ ! ତୁ କାହୁଁ ଏତେ ପଇସା କଉଡ଼ି ଆଣିଲୁ ? ନେଉଳ କହିଲା, 'ମୋର ଏ ମେଣ୍ଢୀଟି ପ୍ରତିଦିନ ଟଙ୍କା ହଗେ, ମୁଁ ସେହି ଟଙ୍କାରେ ଏ ଘରଦ୍ୱାର କରି ସୁଖରେ ଅଛି ।' ଛଅ ଭାଇଯାକ କହିଲେ, ଆମକୁ ଏ ବୁଢ଼ୀ ମେଣ୍ଢୀଟି ଦେବୁ ତ ଦେ, ନ ହେଲେ ତତେ ମାରି ପକାଇବୁ । ନେଉଳ କହିଲା, ମତେ ହଜାରେ ଟଙ୍କା ଦେଲେ ମୁଁ ମେଣ୍ଢୀଟିକି ଦେବି । ଛଅ ଭାଇଯାକ ମିଳି ହଜାରେ ଟଙ୍କା ଦେଲେ, ମେଣ୍ଢୀଟି ନେଲେ । ମେଣ୍ଢୀଟିକୁ ବାଡ଼େଇବାରୁ ସେ ଗୋଟିଏ ଟଙ୍କା ହଗିଲା । ଆଉ ଟଙ୍କା ହଗିବା ଆଶାରେ ସେମାନେ ବାଡ଼ଉ ବାଡ଼ଉ ମେଣ୍ଢୀଟି ମରିଗଲା । ଛଅ ଭାଇଯାକ ମିଳି ବିଚାର କଲେ, ନେଉଳ ଭାଇ ଆମକୁ ଠକିଲା, ତା' ଘରଦ୍ୱାର ପୋଡ଼ି ଦେବା । ନେଉଳ ଏକଥା ଶୁଣି ନିଜେ ଘରଦ୍ୱାର ପୋଡ଼ି ପାଉଁଶ ଅଙ୍ଗାରଯାକ ପଟରେ ସିଇଁ ଗାଡ଼ିରେ ଲଦି ବିକିବାକୁ ଗଲା । ଖଣ୍ଡେ ଦୂର ଯାଇଚି ଦେଖିଲା ଯେ ଗୁଡ଼େ ଟଙ୍କା ଥଳି ଗାଡ଼ିରେ ଲଦା ହୋଇଛି । ନେଉଳ ପଚାରିଲା କିହୋ ଶଗଡ଼ିଆ ଭାଇ ! କୁଆଡ଼େ ଯିବ ? ସେମାନେ

କହିଲେ, ରଜାଙ୍କ ଖଜଣା ଟଙ୍କା ନେଇ ରଜା ଘରକୁ ଯାଉଚୁ । ନେଉଳ କହିଲା, ମୁଁ ତ ସେହି ଖଜଣା ଟଙ୍କା ନେଇ ରଜାଘରକୁ ଯିବି । ୟା କହି ନିଜ ଅଙ୍ଗାରଗାଡ଼ି ସେହି ଟଙ୍କା ଶଗଡ଼ ପାଖରେ ରଖିଲା । ସନ୍ଧ୍ୟା ବେଳ ହୋଇଥିଲା, ସମସ୍ତେ ରୋଷେଇ କରି ଖାଇପିଇ ଶୋଇଲେ । ସମସ୍ତଙ୍କ ନିଦ ଲାଗିଯିବାରୁ ଚୁପ୍‌କରି ନିଜ ଅଙ୍ଗାରଗାଡ଼ିଟି ରଖିଦେଇ ନେଉଳ ଟଙ୍କାଗାଡ଼ି ଘେନି ଘରକୁ ଅଇଲା । ଶଗଡ଼ିଆମାନେ ସକାଳୁ ଉଠି ଦେଖନ୍ତି ତ ତାଙ୍କ ଗାଡ଼ି ନାହିଁ, ଗୋଟେ ଅଙ୍ଗାର ପଟର ଗାଡ଼ି ରହିଛି । ବିଚାରିଲେ ଆରେ କାଲି ସେହି ନେଉଳଟା ଏହି ଗାଡ଼ି ଆଣିଥିଲା; ରାତିରେ ଆମେମାନେ ଶୋଇପଡ଼ିବାବେଳେ ଟଙ୍କାଗାଡ଼ି ନେଇ ଚାଲିଗଲା । କାନମୁଣ୍ଡା ଆଉଁସି ତୁନିହୋଇ ଶଗଡ଼ିଆମାନେ ଘରକୁ ଫେରିଗଲେ । ନେଉଳ ଟଙ୍କା ଆଣି ପୁଣି କୋଠାବାଡ଼ି କରି ଘରେ ମଉଜରେ ରହିଲା । ଛଅ ଭାଇଯାକ ପଚାରିଲେ କିରେ ନେଉଳ ଭାଇ ! କାହୁଁ ଏତେ ଟଙ୍କା ଆଣିଲୁ ? ନେଉଳ କହିଲା, ମୁଁ ମୋ ଘର ପୋଡ଼ିଦେଇ ଅଙ୍ଗାରଗୁଡ଼ାକ ପଟ ପଟ କରି ସିଲେଇ କରି ହାଟ ବଜାରକୁ ନେଇ କହିଲି, ମୋଠୁ ଅଙ୍ଗାର ପଟେ କିଏ ନେଇ ଟଙ୍କା ପଟେ ଦେବ ? ଲୋକେ ମୋ ଅଙ୍ଗାରପଟମାନ ନେଇ ଟଙ୍କା ପଟେ ଲେଖାଁ ଦେଲେ । ମୁଁ ତହିଁରୁ ଅନେକ ଟଙ୍କା ପାଇଲି । ତୁମ୍ଭେମାନେ ସେହିପରି କର, ଅନେକ ଟଙ୍କା ପାଇବ ।

ଛଅ ଭାଇ ଯାକ ଯେଝା ଘରପୋଡ଼ି ଅଙ୍ଗାରପଟମାନ ମୁଣ୍ଡରେ ମୁଣ୍ଡେଇ ହାଟ ବଜାରକୁ ନେଇ ଡାକିଲେ, ଆରେ କିଏ ଆମ ଅଙ୍ଗାରପଟ ନେଇ ଟଙ୍କା ପଟେ ଦେବ ? ଲୋକେ ଶୁଣି ହସିଲେ । କିଏ କହିଲା, ଏଡ଼େ ଓଲୁଗୁଡ଼ାକ କୁଆଡୁ ଅଇଲେ ? ଅଙ୍ଗାରପଟ ଦେଇ ଟଙ୍କାପଟେ ନେବ ବୋଲି ହାଟ ବଜାରରେ ଡାକୁଛନ୍ତି । ବଣିଆ ଲୋକେ ଅଙ୍ଗାରପଟମାନ ଟଙ୍କେ ଦି'ଟଙ୍କା ଦେଇ ରଖିଲେ । ଛଅ ଭାଇଯାକ କିଏ ଟଙ୍କେ, କିଏ ଦି'ଟଙ୍କା ପାଇ କାନମୁଣ୍ଡା ଆଉଁସି ଘରକୁ ଗଲେ । ନେଉଳ ଉପରେ ଭାରି ରାଗିଲେ । କହିଲେ, ନିଶ୍ଚେ ତୋତେ ଏଥର ମାରିବୁ । ନେଉଳ ମାଆ ଏସବୁ କଥା ଦେଖୁଥାଏ, ଶୁଣୁଥାଏ । କ'ଣ କରିବ, ବଡ଼ ବ୍ୟସ୍ତ ହେଉଥାଏ ।

ଦିନେ ଛଅ ଭାଇଯାକ ମିଳି ଗୋଟେ ବସ୍ତା ଭିତରେ ନେଉଳକୁ ପୂରେଇ ବାନ୍ଧି ନଈର ଗଣ୍ଡପାଣିରେ ଫିଙ୍ଗିଦେଲେ । ନେଉଳ ନଈରେ ଭାସି ଭାସି ଯାଉଥାଏ । ଗୋଟେ ଗଉଡ଼ ପଲେ ଗାଈ ଚରାଉଥିଲେ । ସେ ନଈକି ପାଣି ପିଇବାକୁ ଗାଈପଲ ଘେନି ଆସିଲା । ସେ ବସ୍ତାଟା ଦେଖି ବିଚାରିଲା – ଏଥିରେ କଅଣ ଅଛି । ବସ୍ତାଟି କୂଳରେ ଲାଗିବାରୁ ସେ ଫିଟେଇ ଦେଖିଲା ଯେ, ତା' ଭିତରେ ନେଉଳଟିଏ । ଗଉଡ଼ ନେଉଳକୁ ମାରିବାକୁ ବସିଲାରୁ ନେଉଳ କହିଲା – ଭାଇ ! ମୋତେ ମାରନା, ମୁଁ ତୋର ବହୁତ ଉପକାର କରିବି । ଏ କଥା ଶୁଣି ସେ ନେଉଳକୁ ଛାଡ଼ିଦେଲା । ନେଉଳ କିଆବାଡ଼ ଭିତରେ ପଶି ଖଡ଼ଖଡ଼ କଲାରୁ ଗାଈ ସବୁ ନଈର ପଙ୍କରେ ପଶିଲେ । ଗଉଡ଼ ଯେତେ ଚେଷ୍ଟା କଲା, ବାହାର କରିପାରିଲା ନାହିଁ । ନେଉଳ କହିଲା – ମତେ ଯୋଡ଼ିଏ ଗାଈ ଦେଲେ ମୁଁ ପଙ୍କରୁ କଢ଼େଇ ଦେବି । ପୁଣି କିଆବାଡ଼ରେ ଖଡ଼ ଖଡ଼ କରିବାରୁ ଗାଈପଲ ଶୁଖିଲାକୁ ତରଛରେ ପଳାଇ ଆସିଲେ । ନେଉଳ ଗଉଡ଼ଠାରୁ ଗାଈ ଯୋଡ଼ିକ ଆଣିଲା । ଦୁଧ, ଘିଅ, ଛେନା, ସର, ଦହି ଖାଇ ମଉଜ କଲା ।

ଛଅଭାଇ ପଚାରିଲେ, କିରେ ନେଉଳଭାଇ ତୁ ପୁଣି କିମିତି କେଉଁଠୁ ଏ ଗାଈ ଯୋଡ଼ାକ ଆଣିଲୁ ? ନେଉଳ କହିଲା, ଆରେ ଭାଇମାନେ । ତୁମେ ଯେବେ ମତେ ବାନ୍ଧିକରି ଆହୁରି ବେଶି ପାଣିକୁ ଫିଙ୍ଗି ଦେଇଥାଆନ୍ତ, ତେବେ ପଲ ପଲ ଗାଈ ଆଣିଥାଆନ୍ତି । ସେମାନେ କହିଲେ, ତୁ ଆମକୁ ପାଣିରେ ପକେଇ ଦିଅନ୍ତୁ, ଆମ୍ଭେମାନେ ପଲ ପଲ କରି ଗାଈ ଆଣନ୍ତୁ । ନେଉଳ କହିଲା – ଚାଲ । ଛଅଭାଇଙ୍କୁ ନେଉଳଟି ଗୋଟିଏ ଗୋଟିଏ ବସ୍ତାରେ ବାନ୍ଧି ନଈର ଗଭୀର ଗଣ୍ଡରେ ଫିଙ୍ଗିଦେଲା । ଭାଇଯାକ ପାଣିରେ ପଡ଼ି ଛଟପଟ ହୋଇ ବୁଡ଼ିମଲେ । ନେଉଳ ସେହିଦିନଠାରୁ ସୁଖରେ ରହିଲା । ମୋ କଥାଟି ସରିଲା, ନେଉଳଭାଇ କିଛି କଥା କହିଲା ନାହିଁ ।

# ବୁଦ୍ଧିଆ ଚଷା କଥା

ବୁଦ୍ଧିଆ ନାମରେ ଜଣେ ଚାଷୀ ଥିଲା । ନାଁ ତା'ର ବୁଦ୍ଧିଆ ହେଲେ କଅଣ ହେବ, ସେ ନିପଟ ନିର୍ବୁଦ୍ଧିଆ । ଦିନେ ବୁଦ୍ଧିଆ ଖଣ୍ଡିଏ ଦା ନେଇ ଧାନ କାଟିବାକୁ ଗଲା । କିଆରି ମଝିରେ ବସି ଚାରିଆଡ଼କୁ ଚାହୁଁଥାଏ । ଏହି ସମୟରେ ତାକୁ ଟିକିଏ ନିଦ ଲାଗି ଆସିଲା । ସେ ଦା'ଖଣ୍ଡ ରଖିଦେଇ ଟିକିଏ ଘୁମେଇ ପଡ଼ିଲା । ଉଠି ଦେଖେ, ତା' ଦାଆ ଖଣ୍ଡିକ ଭାରି ଗରମ ହୋଇ ଯାଇଚି, ସେ ମନରେ ବିଚାରିଲା, ଦା'କୁ ଜର ହୋଇଛି । ନ ହେଲେ କିଆଁ ତା' ଦେହ ତାତିଥାଆନ୍ତା ? କେଜାଣି କାଳେ ଦାଆ ଖଣ୍ଡିକ ଜରରେ ମରିଯିବ, ଏହି ଭୟରେ ସେ କାନ୍ଦିବାକୁ ଲାଗିଲା । ପାଖ କିଆରିରେ ଯେଉଁ ଚଷାଏ ଧାନ କାଟୁଥିଲେ ସେମାନେ ପଚାରିଲେ, କିରେ ଭାଇ ! କାହିଁକି କାନ୍ଦୁଚୁ ? ବୁଦ୍ଧିଆ କହିଲା, ମୋ ଦାଆକୁ ଜର ହୋଇଚି ବୋଲି କାନ୍ଦୁଚି । ଏକଥା ଶୁଣି ସେହି ଚାଷାମାନେ ଠୋ ଠୋ ହସିଲେ, ଥଟ୍ଟା କରି କହିଲେ, ଦା'କୁ ପାଣିରେ ବୁଡ଼ାଇ ରଖିଦେ, ଜର ଛାଡ଼ିଯିବ । ସେଇ ବୋକା ବୁଦ୍ଧିଆ, ଦାଆଟା ପାଣିରେ ବୁଡ଼ାଇ ଦେଇ ଦେଖିଲା, ଦାଆ ଦେହରେ ଆଉ ତାତି ନାହିଁ, ଥଣ୍ଡା ହୋଇଗଲାଣି । ତହୁଁ ମନେ ମନେ ଭାବିଲା, ଦାଆଠୁଁ ଜର ଛାଡ଼ିଗଲାଣି । ଏହା ଭାବି ଭାରି ଖୁସିଟେ ହୋଇ ଦାଆ ଖଣ୍ଡିକ ଘେନି ଘରକୁ ଗଲା ।

ବୁଦ୍ଧିଆ ଘର ଯେଉଁ ଗାଁ'ରେ, ସେ ଗାଁ'ରେ ତା'ର ଜାତିଭାଇ କେହି ନାହାନ୍ତି; ବାକୀ ଲୋକେ ଜାତିରେ ତନ୍ତୀ । ବୁଦ୍ଧିଆ ସେହି ତନ୍ତୀଙ୍କଠୁଁ ଲୁଗାବୁଣା ଶିଖିଥାଏ । ଦିନେ ତନ୍ତୀଙ୍କ ସଙ୍ଗେ ଲୁଗା ବୁଣିବାକୁ ଯାଇଥିଲା; ଘରକୁ ଆସି ଦେଖେ ତ ତା'ର ମାଆକୁ ଭାରି ଜର । ଏ କଥା ଦେଖି ବୁଦ୍ଧିଆ ମନରେ ଭାରି ଦୁଃଖ ହେଲା । ତା'ର ସେଇ ରାଣ୍ଡ ମାଆଟି ଛଡ଼ା ସଂସାରରେ ଆଉ କେହି ନାହାନ୍ତି । ମାଆଟି ମରିଗଲେ କିପରି ଚଳିବ, ଏଇ କଥା ଭାବି ଘରେ ମାଆ ପାଖରେ ବସି ବହୁତଗୁଡ଼େ କାନ୍ଦିଲା ।

ସାଇପଡ଼ିଶା ଲୋକେ ଶୁଣି ବୁଦ୍ଧିଆ ଘରକୁ ଅଇଲେ, ସମସ୍ତେ ହାଲ ବୁଝିଲେ । କିଏ କହିଲା – ବୈଦ୍ୟ ଡାକି ଔଷଧ ଦେ, କିଏ କହିଲା – ଡାକ୍ତର ଡାକେ । ବୁଦ୍ଧିଆ ସବୁ ଶୁଣୁଥାଏ, ଖମ୍ବ ପରି ବସି କଅଣଗୁଡ଼ାଏ ଭାବୁଥାଏ । ସମସ୍ତେ ବାହାରି ଗଲାରୁ ବୁଦ୍ଧିଆ ମନରେ ଦାଆର ଜର କଥା ମନେ ପଡ଼ିଗଲା । ଦାଆକୁ ପାଣିରେ ବୁଡ଼େଇ ଦେବାରୁ ଜର ଛାଡ଼ି ଯାଇଥିଲା । ଏବେ ସେ କଥା ମନେ ପଡ଼ିବା ମାତ୍ରେ ବୁଦ୍ଧିଆ ଭାରି ଖୁସି ହୋଇଗଲା । ସେ ଗୋଟେ ମୁନ୍ଦୁରାରେ ମାଆକୁ ଗୁଡ଼େଇ ପୁଡ଼େଇ ବାନ୍ଧି ମୁଣ୍ଡରେ ବୋହି ଗାଁ'ମୁଣ୍ଡ ନଈକି ଗଲା । ମୁନ୍ଦୁରା ଭିତରୁ ମାଆକୁ କାଢ଼ି ପାଣିରେ ବୁଡ଼େଇଲା । ଅନେକ ଥର ବୁଡ଼େଇ ବୁଡ଼େଇ ଯେତେବେଳେ ମାଆ ଦେହରୁ ଜର ତାତି ଛାଡ଼ିଗଲା, ମାଆକୁ ଉପରକୁ ଆଣିଲା । ତା'ପରେ ଯେତେ ଡାକିଲା, ମାଆକି ଆଉ ଶୁଣେ । ବୁଦ୍ଧିଆ ଭାରି କାନ୍ଦିଲା, ଗାଁ'ଲୋକେ ଶୁଣି ତାକୁ ବହୁତ ବୁଝାସୁଝା କଲେ । ସେ ଲୋକଙ୍କ କଥା ନ ଶୁଣି ନ ଖାଇ ନ ପିଇ ସେହି ନଈଘାଟରେ ବସିଥାଏ ।  ଏହି ସମୟରେ ଗୋଟେ ବିଲୁଆ ସେହି ବାଟରେ ଯାଉଥିଲା । ବୁଦ୍ଧିଆ ଚଷାର କାନ୍ଦବୋବାଳି ଶୁଣି ବିଲୁଆ ସେଠାରେ ଠିଆହେଲା । ବୁଦ୍ଧିଆ ବିଲୁଆକୁ କହିଲା, ଭାଇ ! ମୋ ମାଆଟି ମରିଗଲା । ସେ ମୋତେ ବଡ଼ ଶରଧାରେ ପାଳିଥିଲା, କେତେ ଗେଲବସରରେ ବଢ଼େଇଥିଲା । ପିଲାଦିନୁ ମୋତେ ମା' ରାଜନରେ, ମୋ ରାଜରେ, ମୋ ରାଜୁରେ, ବୋଲି ଡାକୁଥିଲା । ଏବେ ମୁଁ କଅଣ କରିବି ? ମୋର ସାହା ଭରସା କେହି ନାହିଁ । ବିଲୁଆ କହିଲା, ରଜା ଭାଇ, ଆଉ କାନ୍ଦେନା, କାନ୍ଦେନା । ମୁଁ ତତେ ଗୋଟେ ରଜା ଝିଅକୁ ବିଭା କରି ଦେବି । ଏ କଥା ଶୁଣି ରଜା ଚଷାର ମନ ଖୁସି ହେଲା । ସେ ଘରକୁ ଗଲା । ଯେତେବେଳେ ବିଲୁଆକୁ ଦେଖେ, କହେ ବିଲୁଆ ଭାଇ ! ମତେ ରଜା ଝିଅ ସଙ୍ଗେ ବିଭା କରିଦେବୁ ପରା ? ବିଲୁଆ କହେ, ରଜା ଭାଇ ! ହଁ ଯେତେବେଳେ କହିଚି, ସେତେବେଳେ ନିଶ୍ଚୟ କରିଦେବି । ଆଚ୍ଛା ଭାଇ, ତୁ କେତେ ଖଣ୍ଡ ଲୁଗା ବୁଣି ରଖ ତ । ରଜା ମନରେ ଭାରି ଖୁସି ହୋଇଗଲା । ଦୁଇ ତିନି ମାସ ଧରି ନାନା ରଙ୍ଗରେ କଳା, ଲାଲ, ନେଳୀ ଲୁଗାମାନ ବୁଣି ପକାଇଲା । ରଜା ମନ

ସେତେବେଳେ ଭାରି ମୋଟ, ରଜାକୁ ବୁଦ୍ଧିଆ ବୋଲି କିଏ ଡାକିଲେ ସେ ଶୁଣେ ନାହିଁ । ସମସ୍ତେ ରଜାଭାଇ, ରଜାଭାଇ ଡାକୁଛନ୍ତି; ରଜା ଚଷାର ମନ ଭାରି ଖୁସି, ଗୋଡ଼ ତଳେ ପଡୁନାହିଁ । ଯାହାକୁ ଦେଖୁଛି, କହୁଚି ଭାଇ ମୁଁ ରଜାଝିଅକୁ ବିଭା ହେବି । ତା' କଥା ଶୁଣି ସମସ୍ତେ ହସନ୍ତି, କେହି କିଛି କହନ୍ତି ନାହିଁ । ଏହିପରି କେତେଦିନ ବିତିଗଲା । ବିଲୁଆ ଦିନେ ସେଇ ରଜା ଚଷାଘରେ ପହଞ୍ଚିଗଲା । ଲୁଗାପଟା ଦେଖି ଖୁସି ହୋଇ କହିଲା, ଏବେ ସାବୁନ ଆଣି ଦେହଟା ଭଲ ସଫା ସୁତୁରା କରିନେ । ରଜା-ଚଷା ସଙ୍ଗେ ସଙ୍ଗେ ବଜାରକୁ ଗଲା । ଭଲ ବାଁସନା ସାବୁନ କିଣି ଆଣିଲା । ପ୍ରତିଦିନ ସକାଳୁ ଉଠି ନଈକି ଯାଏ, ନଈରେ ପହରେ ଲାଗି ସାବୁନ ଦେଇ ଦେହଟା ଘଷାମଜା କରେ । ଯା ଭିତରେ ବିଲୁଆ ଦିନେ ଜାମାଯୋଡ଼ ପିନ୍ଧି, ମୁଣ୍ଡରେ ପଗଡ଼ିଟାଏ ବାନ୍ଧି, କାନରେ କଲମଟାଏ ଖୋଷି, କାନ୍ଧରେ ଚାଦରଟେ ପକେଇ, ଛତାଟା କାଖତଳେ ଯାକି, ଖୁବ୍ ଜାକଜମକରେ ବାହାରିଲା; ହାତରେ ବହି ଖଣ୍ଡେ ମଧ ଥାଏ । ସେଇ ଦେଶର ରଜା ପାଖରେ ଏଇ ବେଶରେ ପହଞ୍ଚିଗଲା । ରଜା ଦେଖି ମନେ ମନେ ଭାବିଲେ, ଚେହେରା ଦେଖି ଜଣାଯାଉଛି – ଏ ତ ଖୁବ୍ ପଣ୍ଡିତ ଲୋକ, ରଜା ପଣ୍ଡିତଙ୍କୁ ଦେଖି ପଚାରିଲେ, କିହେ ପଣ୍ଡିତେ । କାହିଁକି ଆସିଛ ? ବିଲୁଆ କହିଲା, ଆମ ରଜାକୁ ତୁମ ଝିଅକୁ ବିଭା ଦେବ କି ନା, ବୁଝିବାକୁ ଆସିଛି । ବିଲୁଆ ତ କିଛି ମିଛ କହି ନାହିଁ । ସେ ଚଷା ନାଁ ତ ରଜା; କିନ୍ତୁ ସେ ରଜା ମନେ କଲେ ପ୍ରକୃତରେ ଗୋଟିଏ ରଜାକୁ ମୋ ଝିଅ ବିଭା ହେବ । ରଜା ପଚାରିଲେ ପଣ୍ଡିତେ । ସେ ରଜା ଦେଖିବାକୁ କିପରି ? ଘର କିଭଳି ? ସମ୍ପତ୍ତି କଅଣ ?

ବିଲୁଆ ପଣ୍ଡିତେ କହିଲେ –

"ଦେଖିବାକୁ ରଜା ବଡ଼ ସୁନ୍ଦର;
ଝଲମଲ ଚନ୍ଦ୍ରକିରଣେ ଘର ।
ବୁଦ୍ଧିବଳ ତାର ଅଛି ଯେପରି,
ଲେଖାପଢ଼ା ଜାଣେ ସେ ସେହିପରି ।

ଛୁଇଁଲେ ଦଶଟା ପାରଇ କାଟି,
ଏହିପରି ନାନା ଗୁଣ ଅଛିଟି ।
କହିଲିନି ଆଉ ଅଛଇ ଏକ,
ତା'ଗୁଣେ ଖାଆନ୍ତି ପିନ୍ଧନ୍ତି ଲୋକ ।"

ବିଲୁଆ ପଣ୍ଡିତ କଥା ରଜା ଶୁଣି ମନେ ମନେ ଭାବିଲେ ତେବେ ଯାହାକୁ ଜ୍ୱାଇଁ କରିବି, ସେ ରଜାଟି ବଡ଼ ସୁନ୍ଦର । ମୋ ଝୁଆଇଁ ଘର ଆମ ଘର ପରି ତିନି ଚାରି ମହଲାର ପକ୍‌କା ଘର, ଭାରି ଝକ୍‌ମକ୍‌, ରାତିରେ ଚନ୍ଦ୍ରକିରଣ ପଡ଼ି ଆହୁରି ତେଜସ୍କର ଦିଶୁଥିବ । ଆମ ଜ୍ୱାଇଁର ବୁଦ୍ଧିବଳ, ଲେଖାପଢ଼ା ସବୁ ଏକାପରି ଭଲ । ଆମ ଜ୍ୱାଇଁଙ୍କର ବୀରପଣିଆ ଏତେ ବେଶି ଯେ ଛୁଇଁଲା ମାତ୍ରେ ଦଶଟା ମଣିଷର ମୁଣ୍ଡ କାଟି ପାରନ୍ତି । ଆଉ ମଧ୍ୟ ତାଙ୍କ ଯୋଗେ ଅନେକ ଗରିବ ଗୁରୁବା ପିନ୍ଧିବାକୁ ଆଉ ଖାଇବାକୁ ପାଆନ୍ତି ।

କିନ୍ତୁ ପ୍ରକୃତରେ ବିଲୁଆ କହିଚି, ହେ ରଜା । ତୁମେ ଯାହାକୁ ଜ୍ୱାଇଁ କରିବ ବୋଲି ମୁଁ କହୁଚି, ସେଇଟା ଗୋଟେ ନିର୍ଦ୍ଧୂମ ଚଷା, ତା'ର ଘରର ଚାଳରେ ଛଣ ନାହିଁ, ରାତିରେ ଚନ୍ଦ୍ରକିରଣ ଘର ଭିତରଯାକ ପଡୁଚି । ସେ ଲେଖାପଢ଼ା କିଛି ଜାଣେ ନାହିଁ, ବୁଦ୍ଧି ମଧ୍ୟ କିଛି ନାହିଁ । ଦା' ଧଇଲେ ଏକା ଥରକେ ଦଶଟା ଧାନଗଛ କାଟିପାରେ । ସେ ତ ଜାତିରେ ଚଷା, ପୁଣି ତନ୍ତୀସାଇରେ ବଢ଼ିଚି । ଏଣୁ ଧାନ କାଟିପାରେ, ଆଉ ଲୁଗା ବୁଣି ପାରେ । ଧାନ କଟାହେଲେ ଅବଶ୍ୟ ଧାନ ଯୋଗେ ଦଶ ଜଣ ବଞ୍ଚନ୍ତି, ଲୁଗା ବୁଣା ହେଲେ ଦଶଜଣ ପିନ୍ଧନ୍ତି ।

ରଜା ତ ବିଲୁଆ କଥା ବୁଝିପାରିଲେ ନାହିଁ । ଏଣୁ ବିଚାରିଲେ ଓହୋ । ଆମ ଜ୍ୱାଇଁଟି ତ ଗୁଣରେ, ରୂପରେ, ଧନ ଦୌଲତରେ, ଜାତିରେ ବଡ଼ । ତହୁଁ ବିଲୁଆ ପଣ୍ଡିତଙ୍କୁ ରଜା ସାଙ୍ଗେ ସାଙ୍ଗେ ଦି' ହଜାର ଟଙ୍କା ପୁରସ୍କାର ଦେଲେ । ଆଉରି ମଧ୍ୟ ପାଟ, କୁଣ୍ଡଳ ଦିଆଯାଇ ସବୁ ରାଜବିଧି କରାଗଲା । ତା' ପରେ ରଜା କହିଲେ, ହଉ ପଣ୍ଡିତେ, ଆଜିଠାରୁ ଆଠଦିନ ଯେଉଁଦିନ ପୂରିବ; ସେହିଦିନ ବିଭାଘର ହେବ । ଆପଣ ଶୀଘ୍ର

ଶୁଭଲଗ୍ନରେ ବର ବିଭାକରି ଅଣାଇବେ । ବିଲୁଆ କହିଲା, ଆଚ୍ଛା ଆମେ ତେବେ ଯାଉଚୁ । ବିଲୁଆ ଯାଇ ରଜା ଚଷା ପାଖରେ ପହଞ୍ଚିଲା; କହିଲା, ଆରେ ରଜା ଭାଇ ସବୁ ନୂଆ ଲୁଗା ଆଣ, ଗାଁ'ବାଲାଙ୍କୁ ଡାକିଆଣ । ରଜାଚଷା ଲୁଗାତକ ବିଲୁଆ ପାଖରେ ରଖିଦେଇ ଗାଁ'ବାଲାଙ୍କୁ ଘରକୁ ଡାକିଆଣିଲା । ବିଲୁଆ କହିଲା, ତନ୍ତୀଭାଇମାନେ ମୋ ରଜାଭାଇର ବିଭାଘର । ଆଜକୁ ମିଶାଇ ଠିକ୍ ଆଠ ଦିନ ରହିଲା । ହେଇଟି ତୁମେ ସମସ୍ତେ ଖଣ୍ଡେ ଲେଖେ ଲୁଗା, ଗୋଟିଏ ଲେଖେ ଟଙ୍କା ନିଅ । ତୁମ ସମସ୍ତଙ୍କୁ ନିମନ୍ତ୍ରଣ ରହିଲା । ସମସ୍ତେ ମୋ ରଜା ଭାଇ ସାଙ୍ଗେ ବିଭାଘର ବରଯାତ୍ରୀ ହୋଇଯିବ । ସମସ୍ତେ ଖୁସି ହୋଇ ହଁ କଲେ । ତା'ପରେ ବିଲୁଆ ଆଉ ସବୁ ବିଲୁଆ, ବେଙ୍ଗ, ଝିଙ୍କାରୀ, ଶାଗୁଣା, କୁଆ ଓ କୁକୁରଙ୍କୁ ବିଭାଘର ନିମନ୍ତ୍ରଣ ଦେଇ ଆସିଲା । ମଙ୍ଗନ ଦିନ ବିଲୁଆ ଭଲ ଭଲ ପୋଷାକ ଆଣି ସେଇ ରଜା ଚଷାକୁ ପିନ୍ଧେଇ ଦେଲା । ସୁଆରି ଗଉଡ଼ ପାଲିଙ୍କି ସବୁ ଠିକ୍ କରି ଆସିଥିଲା, ସେ ସବୁ ପହଞ୍ଚି ଗଲା । ଯାହାଙ୍କୁ ଯାହାଙ୍କୁ ନିମନ୍ତ୍ରଣ ଦେଇଥିଲା, ସେ ସବୁ ଲୋକେ ଆସି ପହଞ୍ଚିଲେ । ବିଲୁଆ, କୁକୁର, ବେଙ୍ଗ, ଶାଗୁଣା, ଝିଣ୍ଟିକା, କୁଆମାନେ ମଧ୍ୟ ପଲ ପଲ ହୋଇ ଆସି ପହଞ୍ଚିଲେ । ସେମାନଙ୍କୁ ଯେ ଯେଉଁଭଳି ଖାଇବ ସେଇଭଳି ଖାଇବା ପିଇବାକୁ ଦିଆଗଲା । ବରକୁ ପାଲିଙ୍କିରେ ବସେଇ ବରଯାତ୍ରୀମାନେ ରଜା ନଅର ଆଡ଼କୁ ବାହାରିଲେ । ରାତି ପହରକ ସମୟରେ ରଜା ନଅରଠାରୁ ଅଧକୋଶ ଦୂରରେ ବରଯାତ୍ରୀ ପହଞ୍ଚିଗଲେ । ବିଲୁଆ କହିଲା, ମୁଁ ଆଗରେ ରଜାଙ୍କ ନଅରକୁ ଖବର ଦେବା ପାଇଁ ଯାଉଚି, ତୁମେମାନେ ଏଇ ଯେ ରଜାନଅର ଆଲୁଅ ଦିଶୁଚି, ତାକୁ ଚାହିଁ ଚାହିଁ ଆସୁଥାଅ । ସମସ୍ତେ କହିଲେ, ଆଚ୍ଛା ହଉ । ବିଲୁଆ କହିଲା, ଆଗ ସମସ୍ତେ ଦେଖି ଏକାବେଳକେ ଗୀତ ଗାଇଲ ଶୁଣିବା । ବରଯାତ୍ରୀ, ମଣିଷ, ବିଲୁଆ, କୁକୁର, ବେଙ୍ଗ, କୁଆ, ଶାଗୁଣା, ଝିଙ୍କାରୀ ସ୍ୱରରେ ସମସ୍ତେ ଶବ୍ଦ କରି ଯେ ଯାହା ଗୀତ ଗାଇଲେ । ମଣିଷ ତ ଅବଶ୍ୟ ଗୀତ ଗାଇଲେ । ବିଲୁଆମାନେ "ହୁକେ ହୋ" କୁକୁରମାନେ "ଭୋ ଭୋ", ଝିଙ୍କାରୀଗୁଡ଼ାକ "ଝିଂ ଝିଂ", କୁଆ ସବୁ "କା କା", ଶାଗୁଣା ପଲ "ସେଁ ସେଁ", ରଡ଼ି

କରିବାରୁ ସେଠି ଆଠଦଶ କୋଶ ଧରି କମ୍ପିଗଲା । ହଜାର ହଜାର ବିଲୁଆ, କୁକୁର, ଶାଗୁଣା, ଝିଙ୍କାରୀ ଆଉ କୁଆର ରଡ଼ିରେ ମେଦିନୀ କମ୍ପି ଥରହର ହେଲା । ବିଲୁଆ ଏ ସମୟରେ ସେଦିନ ପରି ପଣ୍ଡିତ ବେଶ ସାଜି ଆଗେ ରଜାଙ୍କ ନଅରରେ ପହଞ୍ଚି ବର ଆଉ ବରଯାତ୍ରୀ ଆସିଯିବା କଥା ଜଣାଇଲା । ରଜା କହିଲେ, ପଣ୍ଡିତେ ଏ ଗୋଳମାଳ କଅଣ ? ବିଲୁଆ କହିଲା ମଣିମା । ଆମ ରଜା ପରା ବିଭା ହୋଇ ଆସୁଛନ୍ତି, ତାଙ୍କ ସାଙ୍ଗରେ ଲକ୍ଷେ ସରିକି ବରଯାତ୍ରୀ ଆସୁଛନ୍ତି, ତାଙ୍କରି ପାଟି ତୁଣ୍ଡରେ ଗୀତ ନାଚରେ, କଥାବାର୍ତ୍ତାରେ ଏତେ ଗୋଳମାଳ ଶୁଣାଯାଉଛି । ରାଜା କହିଲେ, ତେବେ ଏତେ ଲୋକଙ୍କୁ ଆମ ନଅରରେ ଖିଆପିଆ, ବସଉଠ କରିବା ପାଇଁ ସ୍ଥାନ ହେବ ନାହିଁ, କ'ଣ କରିବା ? ବିଲୁଆ କହିଲା, ଛାମୁ ଏଡ଼େ ବଡ଼ ରଜା, ଦେଶ ଗୋଟାକର ରଜା ହୋଇ ଯେବେ ଫେରେଇ ଦେବେ, ତେବେ ବରଯାତ୍ରୀ ଅପମାନିଆ ହୋଇ ଫେରିଯିବେ । ନାହିଁ ଯଦି ମଣିମାଙ୍କୁ କଷ୍ଟ ହଉଚି ତେବେ ଖାଇବା ପିଇବା ପାଇଁ କିଛି ଟଙ୍କା ଦେଲେ, ମୁଁ ସେମାନଙ୍କୁ ଖୁଆଇ ପିଆଇ ବିଦାୟ କରିଦେବି । ରାଜା ଖୁସି ହୋଇ ଦଶ ହଜାର ଟଙ୍କା ପଣ୍ଡିତଙ୍କୁ ଦେଇ କହିଲେ – ଶୀଘ୍ର ସେମାନଙ୍କୁ ବିଦାୟ ଦେଇ ବରକୁ ଏଠାକୁ ଘେନିଆସ । ବିଲୁଆ ଟଙ୍କା ନେଇ ତନ୍ତୀମାନଙ୍କୁ ଟଙ୍କାଏ ଟଙ୍କାଏ ଦେଇ ବିଦାୟ ଦେଲା । ଗେଣ୍ଡା, କଙ୍କଡ଼ା, ଛୋଟ ଛୋଟ ମାଛ, ଆଉ କିଛି ମୁଢ଼ି କିଣି ବିଲୁଆ, କୁକୁର, କୁଆ, ଶାଗୁଣା, ଝିଙ୍କାରୀମାନଙ୍କୁ ଖାଇବାକୁ ଦେଇ ବିଦାୟ ଦେଲା । ସେମାନେ ଯିବାବେଳେ ଭାରି ଖୁସିହୋଇ ପୁଣି କୁଳୁମୁଛୁଳି ରଡ଼ିକରି ଯେ ଯାହା ବସାକୁ ଫେରିଗଲେ । ବିଲୁଆ ରଜା ଚଷାକୁ ପାଲିଙ୍କିରେ ବସାଇ ରଜାଙ୍କ ନଅର ଆଡ଼କୁ ଆସିଲା । ବାଟରେ ରଜା-ଚଷାକୁ ବିଲୁଆ ବାରମ୍ବାର ଶିଖେଇ କହିଲା – ଦେଖ ରଜାଭାଇ, ତୁ ରାଜା ନଅରରେ ରାଜାରାଣୀ, ପାତ୍ରମନ୍ତ୍ରୀ, କି ପ୍ରଜାପାଟକ କାହାକୁ ପାଟି ଫିଟେଇବୁ ନାହିଁ; କେଭେ କିଛି କଥା କହିବୁ ନାହିଁ, ଚୁପ୍‌ହୋଇ ବସଉଠ, ଖିଆପିଆ, ଶୁଆବସା କରିବୁ । ପାଲିଙ୍କି ରାଜାଙ୍କ ସିଂହଦୁଆରେ ପହଞ୍ଚିଗଲା । ରଜା ଘର ଲୋକେ ଦେଖି ଭାରି ଖୁସି ହେଲେ । ବିଭା କାମ ସରିଗଲା; ମାତ୍ର ରାଜାରାଣୀ, ପାତ୍ରମନ୍ତ୍ରୀ, ପୋଇଲି ପରିବାରୀ ପ୍ରଜାପାଟକଙ୍କ ମନରେ

ଦୁଃଖ ଯେ ବର କିଛି କହୁନାହାନ୍ତି । ପଣ୍ଡିତଙ୍କୁ ପଚାରିବାରୁ ସେ କହିଲେ, ତାଙ୍କ ମାଆ ଅଳ୍ପଦିନ ହେଲା ମରି ଯାଇଥିବାରୁ ସେ ଦୁଃଖରେ କାହାକୁ କିଛି କହୁ ନାହାନ୍ତି; କିନ୍ତୁ ବିଲୁଆ ଜାଣେ, ଏଇଟା ଚଷା, କଥା କହିବା ମାତ୍ରେ ସବୁ ଧରା ପଡ଼ିଯିବ, ବିଭାଘର ବନ୍ଦ ହୋଇଯିବ । ତା'ପରେ ବର ଖାଇବା ପାଇଁ ସୁନାଥାଳିରେ ଭାତ, ଆଉ ଚାଳିଶଟି ରୁପାଗିନାରେ ନାନାଭଳି ତରକାରୀ, ଘିଅ, ଦୁଧ ବଢ଼ାହେଲା । ରଜା-ଚଷା କେବେ ଠା'କରୁ ଦି'ଠା ତରକାରୀ ପତ୍ରରେ ବଢ଼ାଯିବାର ଦେଖିନାହିଁ । ଏତେ ତରକାରୀ, ଦୁଧ, ଘିଅ, ସୁନାଥାଳି, ରୁପା ଗିନାମାନ ଦେଖି ତା' ମନରେ ଛନକା ପଶିଗଲାଣି । ସେ ଏଣିକି ତେଣିକି ଚାହିଁଲା, ଭାତ ସାଙ୍ଗେ ସବୁ ତରକାରୀ ଦୁଧ ଘିଅ ଗୋଳାଇ ଦେଇ ସୁଁ ସାଁ କରି ପେଟେ ଗିଳିଲା, ବାକୀ ଅଇଁଠା ପତ୍ରରେ ବଳିଥିବା ଭାତ ତରକାରୀ ଚାଦର କାନିରେ ବାନ୍ଧି ଧଇଲା । ରଜାଘର ଲୋକେ ଦେଖି କହିଲେ – ପଣ୍ଡିତେ, ଜୁଆଇଁ ଅଇଁଠାଗୁଡ଼ାକ ବାନ୍ଧି ଧରୁଛନ୍ତି କାହିଁକି ? ବିଲୁଆ କହିଲା, ଆମର ଏ ରଜା ବଡ଼ ଦାନୀ, ଖାଇସାରି ବାକି ଯାହା ବଳେ, ତାକୁ ସାଙ୍ଗେ ସାଙ୍ଗେ ଗୋଟେ ଜୀବକୁ ଖାଇବାକୁ ଦିଅନ୍ତି । ଗୋଟେ କୁକୁର ଡାକିଦିଅ, ସେ ତାକୁ ଦେଲେ ହାତ ଧୋଇବେ । କୁକୁର ଡକାଗଲା, ରଜା-ଚଷା କାନି ଫିଟେଇ ସବୁ ତା' ଆଗରେ କୁଢ଼େଇ ଦେଇ ହାତ ଧୋଇଲା । ବିଲୁଆ ଯେ କହିଲା, ଆମ ରଜା ଦାନୀ, ତାହା ନୁହେଁ । ସେଇଟା ତ ନିର୍ବୁଦ୍ଧିଆ, ସେ ମହତ୍ତ୍ୱ ମର୍ଯ୍ୟାଦା କାହୁଁ ଜାଣିବ ? ତା'ପରେ ବର ଶୋଇବା ପାଇଁ ପଲଙ୍କରେ ଶେଯ ବିଛାଇ ଦେଲେ, ମଶାରି ଝୁଲାଇ ଦେଲେ । ରଜା-ଚଷା ଶୋଇବାକୁ ଯାଇ ଦେଖେ ତ ଚାରିପଟୁ ଲୁଗାବାଡ଼ ଦିଆଯାଇଛି । ସେ ତେ କେବେ ପଲଙ୍କରେ ଶୋଇନାହିଁ, କି ମଶାରି ଦେଖିନାହିଁ । କ'ଣ କରିବ, କେଉଁବାଟେ ପଲଙ୍କ ଭିତରକୁ ଯିବ, ଠିକ୍ କରି ନ ପାରି ମଶାରି ଖୁଣ୍ଟରେ ଚଢ଼ି ଉପରକୁ ଉଠିଲା ବେଳକୁ ଧପ୍‌କରି ତଳେ ପଡ଼ିଗଲା । ଦିହକୁ କାଟିବାରୁ କହିଲା, ମୋ ମା ଲୋ । ଧାନକଟା, ଲୁଗାବୁଣା ବଡ଼ ସୁଖ । ବିଭାଘରେ ମୋର ଗୋଡ଼ ହାତ ଭାଙ୍ଗିଗଲା । ତା' ଭାଗ୍ୟକୁ ସେଠାରେ ଅନ୍ୟ କେହି ନ ଥିଲେ । ରଜାଝିଅ ଆଉ ବିଲୁଆ ଦି'ଜଣ ଥିଲେ । ରଜାଝିଅ ଏକଥା ଦେଖି ଭାରି କାନ୍ଦିଲା ?

ଆଉ କାହାକୁ କହିବ, ନିଜ କପାଳକୁ ନିନ୍ଦା କଲା । ବିଲୁଆ ବାହାରେ ଏ ସବୁ କଥା ଦେଖୁଥିଲା, ଆଉ ଶୁଣୁଥିଲା । ସେ ରଜାଙ୍କ ପାଖକୁ ଯାଇ କହିଲା, ମଣିମା ! ଆପଣଙ୍କ ଜୁଆଇଁ କହୁଛନ୍ତି – 'ସେ ଝିଅକୁ ନେଇ ତାଙ୍କ ଦେଶକୁ ଯିବେ । ରଜା ଶୁଣି ଖୁସି ହୋଇ ବହୁତ ଦାସଦାସୀ, ଟଙ୍କାକଉଡ଼ି, ଘୋଡ଼ାହାତୀ, ସୁନାରୁପାର ଅନେକ ପଦାର୍ଥ ଦେଇ ଝିଅଜୋଇଁଙ୍କୁ ବିଦାୟ ଦେଲେ । ବିଲୁଆ ରଜା-ଚଷାକୁ ତା' ନିଜ ଗାଁ'କୁ ନ ନେଇ ଆଉ ଗୋଟେ ବଡ଼ ସହରରେ ପହଞ୍ଚାଇ ଦେଲା । ରଜାଝିଅ ସେଠେଇଁ ଗୋଟେ ପକ୍‌କା କୋଠା କିଣି ରହିଲା । ବଡ଼ ବଡ଼ ପଣ୍ଡିତ ରଖି ବରକୁ ଅନେକ ପାଠ ପଢ଼ାଇଲା । ରଜା-ଚଷା ବର୍ତ୍ତମାନ ଜଣେ ବଡ଼ ପଣ୍ଡିତ ଆଉ ବଡ଼ଲୋକ । ଏ ସମୟରେ ଖବର ଆସିଲା ଯେ ସେ ଦେଶ ରଜା ମରିଯାଇଛନ୍ତି, ଝିଅଜୋଇଁଙ୍କ ନାଁରେ ରାଜ୍ୟ ଛାଡ଼ି ଯାଇଛନ୍ତି । ରଜା-ଚଷା ରଜାଝିଅକୁ ଘେନି ଶ୍ୱଶୁର ଘରଠାରେ ପହଞ୍ଚିଲା । ସେଠାରେ ରଜା ହୋଇ ସୁଖରେ ରହିଲା । ବିଲୁଆ ଦିନେ ପହଞ୍ଚିବାରୁ ତାକୁ କଥା କହିଲା ନାହିଁ । ମୋ ବୋଲେ କଥା ସରିଲା ।

# ବାଘ ଓ କୋକିଶିଆଳି କଥା

ଆମ ଜନ୍ମଭୂମି ଏକ ଓଡ଼ିଶା ମୁଲକରେ ମୟୂରଭଞ୍ଜ ବୋଲି ଗୋଟିଏ ରାଜୁଡ଼ା ଅଛି । ଏହି ରାଜୁଡ଼ାକୁ ଗଡ଼ଜାତ ମଧ କହନ୍ତି । ସେଇ ମୟୂରଭଞ୍ଜ ଗଡ଼ଜାତ ଭିତରେ ଅନେକ ଜଙ୍ଗଲ ଅଛି । ଗୋଟାଏ ଜଙ୍ଗଲରେ ଗୋଟିଏ କୋକିଶିଆଳି, ଆଉ ତା' ଭାରିଯା ଦିହେଁଯାକ ରହିଥିଲେ । କିଛିଦିନ ପରେ ତାଙ୍କର ତିନୋଟି ଛୁଆ ହେଲା । ସେଇ ଛୁଆଗୁଡ଼ିକୁ ରଖିବା ପାଇଁ ତାଙ୍କୁ ଆଉ ଜାଗା ମିଳିଲା ନାହିଁ । ସେ ଦିହେଁ ମନେ ମନେ ବିଚାରିଲେ – ଗାତ ଭିତରେ ଛୁଆଗୁଡ଼ାଙ୍କୁ ନ ରଖିଲେ ବାଘ ଭାଲୁ ଖାଇଯିବେ । ନ ହେଲେ ବର୍ଷା ପାଣିରେ ଓଦାହୋଇ ସର୍ଦ୍ଦିରେ ମରିଯିବେ । କୋକିଶିଆଳି ବହୁତ ଖୋଜି ଖୋଜି ଗୋଟେ ଗାତ ପାଇଲା । ସେଇ ଗାତରେ ରହିବା ସବୁ ସୁବିଧା; କିନ୍ତୁ ଭୟର କଥା ଏହି ଯେ ଗାତର ଚାରିପାଖେ ବାଘର ପାଦଚିହ୍ନ ପଡ଼ିଚି । ଛୁଆପିଲାଙ୍କୁ ନେଇ କୋକିଶିଆଳି ଓ ତା'ର ଭାରିଯା ଦିହେଁଯାକ ଗାତ ପାଖରେ ପହଞ୍ଚିଲେ । ମା' କୋକିଶିଆଳି ଗାତ ଦେଖି କହିଲା, 'ମଲା ! ମଲା ! ଏଇଟା ତ ବାଘ ଗାତ, ଯା ଭିତରେ କିମିତି ରହିବା ମ ? କୋକିଶିଆଳି କହିଲା, ଏତେ ତ ଖୋଜି ଖୋଜି ଆଉ ସୁବିଧା ଗାତ ପାଇଲି ନାହିଁ, ଏଇଠାରେ ରହିବା । ମା' କହିଲା, ଯେବେ ବାଘ ଆସେ ? ବାପା କହିଲା, ଯେତେବେଳେ ବାଘ ଆସିବ, ତୁ ପିଲାଙ୍କୁ ଚୁମୁଟିବୁ । ପିଲେ କାନ୍ଦିଲେ ମୁଁ ପଚାରିବି, ଓଃ ଛୁଆଗୁଡ଼ିକ କାନ୍ଦୁଛନ୍ତି କିଆଁ ? ତୁ କହିବୁ, ଏମାନେ ବାଘ ମାଉଁସ ଖାଇବେ ବୋଲି କାନ୍ଦୁଛନ୍ତି । ମା' କୋକିଶିଆଳି କହିଲା ହଉ ତେବେ, ସେହିପରି କରିବା । ତା'ପରେ ସେମାନେ ସେହି ଗାତରେ ରହିଲେ । ଏହିପରି କିଛିଦିନ ବିତିଗଲା । ଦିନେ ବାଘ ଆସି ରାତିରେ ଗାତ ପାଖରେ ପହଞ୍ଚିଗଲା । ବାଘ ଆସିବା ଜାଣି କୋକିଶିଆଳିର ଭାରିଯା ନିଜ ଛୁଆଙ୍କୁ

ଚୁମୁଟିଲା । ସେମାନେ କାନ୍ଦିଲେ । ବାଘ ଗାତ ପାଖରେ ହେଲାକ୍ଷଣି ବାଘକୁ ଶୁଣାଯିବା ଭଳି ପାଟିରେ କୋକିଶିଆଳି ବିରକ୍ତ ହୋଇ ତା' ଭାରିଯାକୁ ପଚାରିଲା – ଓଃ ଏତେ ରାତିରେ ପିଲାଗୁଡ଼ାକ କାନ୍ଦୁଛନ୍ତି କାହିଁକି ? ମା' କୋକିଶିଆଳି ମଧ୍ୟ ବାଘକୁ ଶୁଣାଯିବା ଭଳି ସ୍ୱରରେ କହିଲା, ଆଏ, ଏମାନେ ବାଘମାଉଁସ ଖାଇବେ ବୋଲି କାନ୍ଦୁଛନ୍ତି । ବାଘ ଏ କଥା ଶୁଣି ଟିକିଏ ଚୁପ୍‌ମାରି ଗାତ ପାଖରେ ରହିଲା । ଭାବିଲା – ମୋ ବାପରେ, ମୋ ଗାତ ଭିତରେ କେଜାଣି କ'ଣଗୁଡ଼େ ଅଛନ୍ତି । ଏଗୁଡ଼ାକ ନିଶ୍ଚେ ଭୂତ କି ରାକ୍ଷସ । ତା' ନୋହିଲେ ଏ ଛୁଆଗୁଡ଼ାକ ବାଘ ଖାଇବାକୁ କହନ୍ତେ କି ? ଏଇ ସମୟରେ କୋକିଶିଆଳି କହିଲା, କିଲୋ । ବାଘ ଆଉ କୁଆଡୁ ପାଇବି ? ଏ ବଣରେ ଯେତେ ବାଘ ଥିଲେ, ସବୁତ ଧରିଆଣି ଖାଇବାକୁ ଦେଇଚି, ଆଉ କୁଆଡୁ ପାଇବି କହିଲୁ ? ଏକଥା ଶୁଣି ମା' କୋକିଶିଆଳି କହିଲା – ଏକଥା କହିଲେ କଅଣ ହେବ ? ଯିମିତି ପାର, ସିମିତି ଗୋଟେ ବାଘ ଧରିଆଣ, ନୋହିଲେ ଆମ ଛୁଆଗୁଡ଼ାକ ତୁନି ହେବେ ନାହିଁ, କି ତାଙ୍କ ରଡ଼ିରେ ଆମେ କେହି ଶୋଇପାରିବା ନାହିଁ । ଏହା କହି ଛୁଆଗୁଡ଼ାଙ୍କୁ ଆଉରି ବେଶିକରି ଚୁମୁଟିଲା । ଛୁଆଗୁଡ଼ାକ ବେଶି କାନ୍ଦିଲେ । ତାହା ଶୁଣି କୋକିଶିଆଳି ବାଘକୁ ଶୁଣେଇ ତା' ଭାରିଯାକୁ କହିଲା – ହଉ ତେବେ ରହ, ପିଲାଗୁଡ଼ାଙ୍କୁ ତୁନି କର, ହେଇଟି ବାଘ ଆସୁଚି, ମୁଁ ଯାଉଚି ତାକୁ ମାରି ଆଣିବି ।

ବାଘ କାନରେ ଯିମିତି ଏକଥା ପଡ଼ିଚି, ସେ ଚମ୍ପଟ । ବାଘ ପ୍ରାଣ ଭୟରେ ପଳାଇଗଲା । ଏହା ଦେଖି କୋକିଶିଆଳି ବର ଭାରିଯା ଦିହେଁ ଖୁସିହୋଇ ପିଲାଗୁଡ଼ିଙ୍କୁ ବୋଧଶୋଧ କରି ସୁଖରେ ଶୋଇଲେ । ଏହା ଶୁଣି ବାଘ ପ୍ରାଣ ଭୟରେ ଏପରି ବେଗରେ ଦୌଡ଼ିଲା ଯେ, ଯାହାକି ସେ ଆଉ ତା' ଜୀବନରେ କେବେ ଦଉଡ଼ି ନାହିଁ । ଗୋଟେ ବୁଢ଼ାମାଙ୍କଡ଼ ଗଛ ଉପରୁ ଡାକି କହିଲା, ବାଘଭାଇ ! ବାଘଭାଇ ! ତୋ'ର କ'ଣ ହେଲା କି ? ତୁ ଏଡ଼େ ବେଗରେ ଦଉଡୁଚୁ କିଆଁ । ବାଘ କହିଲା – ପଳେଇ ଆସିଚି ରକ୍ଷା, ନ ହେଲେ ଏକ୍ଷଣି ମତେ ଧରି ଖାଇଥାଆନ୍ତା । ମାଙ୍କଡ଼ କହିଲା, ତତେ ଧରି ଖାଇଥାଆନ୍ତା ! ଏପରି ବୀର କିଏ ଅଛିରେ, ମତେ

ତ ସତ ଲାଗୁନାହିଁ, ବିଶ୍ୱାସ ଆସୁନାହିଁ । ବାଘ କହିଲା, ଘଟନା ଦେଖିଥିଲେ ତୁ ଏପରି କଥା କହି ନ ଥା'ନ୍ତୁ । ମାଙ୍କଡ଼ କହିଲା – ମୁଁ ସେଇ ଘଟନା ଜାଗାରେ ଥିଲେ, ତତେ ବୁଝେଇ ଦେଇଥାଆନ୍ତି ଯେ ସେ ସବୁ କିଛି ନୁହେଁ । ତୁ ଗୋଟିଏ ବୋକା; ତେଣୁ ମିଛ ଘଟନା ବୁଝି ନ ପାରି ତୋର ଏଡ଼େ ପ୍ରାଣଭୟ ହେଇଚି । ବାଘ କହିଲା, ହଁ ମୁଁ ବଡ଼ ବୋକା, ତୁ ଭାରି ବୁଦ୍ଧିଆ, ବଡ଼ ସିଆଣିଆ । ଆଚ୍ଛା, ଆସ ତ ସେଠାକୁ ଯିବା । ମାଙ୍କଡ଼ କହିଲା, ଏତେ ରାତିରେ, ଏଡ଼େ ଅନ୍ଧାରରେ କିଏ ଯାଉଚି ? ବାଘ କହିଲା – ନା ଆସ୍, ଆସ୍ ତୁ ନିଶ୍ଚେ ଆସ୍ । ମାଙ୍କଡ଼ କହିଲା – ତୁ ଯେବେ ପିଠି ଉପରେ ମୋତେ ବସେଇ ନେବୁ, ତେବେ ଯିବି । ବାଘ କହିଲା, ହଉ ତେବେ ମୋ ପିଠିରେ ବସ । ମାଙ୍କଡ଼କୁ ପିଠିରେ ବସେଇ ବାଘ କୋକିଶିଆଳି ଗାତ ମୁହଁକୁ ଯିମିତି ଆସିଚି, ସିମିତି କୋକିଶିଆଳି ତା' ଭାରିଯାକୁ ଚୁପ୍ କରି କହିଲା – ହେ ! ପୁଣି ସେ ବାଘଟା ଗୋଟେ ମାଙ୍କଡ଼କୁ ପିଠିରେ ବସେଇ ଆଣିଲାଣି, ତୁ ପିଲାଙ୍କୁ ଚିମୁଟୁ । ମା' ପିଲାଙ୍କୁ ଚିମୁଟିବାରୁ ପିଲାଗୁଡ଼ାକ ରଡ଼ି କଲେ, କାନ୍ଦିଲେ । ବାଘ ପ୍ରାଣଭୟରେ ପଳାଇଗଲା । ଯା ଦେଖି କୋକିବର ବାଘକୁ ଶୁଣେଇ କହିଲା, ମୁଁ ପରା କହୁଚି ଗୋଟେ ବାଘ ମାରି ମାଉଁସ ଦେଲେ ପିଲେ ଖାଇଲେ ଆଉ କାନ୍ଦିବେ ନାହିଁ । କୋକିଶିଆଳି କହିଲା – ଆଲୋ ! ମୁଁ ପରା ଏ ପିଲାଙ୍କ ମାମୁଁକୁ ପଠେଇ ଥିଲି, ହେଇଟି ଦେଖ, ସେ ଗୋଟେ ବାଘ ଧରି ପିଠିରେ ବସି ଆସୁଛି । ମାଙ୍କଡ଼ ଏକଥା ଯିମିତି ଶୁଣିଚି, ସାଙ୍ଗେ ସାଙ୍ଗେ ଡିଆଁମାରି ଗଛ ଉପରକୁ ଉଠିଗଲା । ବାଘ ପ୍ରାଣଭୟରେ ଏପରି ଦଉଡ଼ିଲା ଯେ, ଦି'ଦିନ ଯାଏ ଟିକିଏ ସୁଦ୍ଧା ଠିଆହୋଇ ନାହିଁ । ସେହି ଦିନଠାରୁ କୋକିଶିଆଳି ଦିହେଁ ତାଙ୍କ ପିଲାଙ୍କ ସହ ମନଖୁସିରେ ସେଇ ବାଘ ଗାତ ଭିତରେ ରହିଲେ । ମୋ ବୋଲେ କଥା ସରିଲା, ମୁଁ ଗଲାରୁ ମୋତେ କେହି ଟିକିଏ ପଚାରିଲେ ନାହିଁ ।

# ଦ୍ୱିତୀୟ ଭାଗ

# ଦୁଇ ଆବୁଆ କଥା

ଆମ ଏଇ ଓଡ଼ିଶା ପ୍ରଦେଶରେ ବଣେଇ ବୋଲି ଗୋଟିଏ ରାଜ୍ୟ ଅଛି । ସେଥିରେ ପିଠାପୁର ବୋଲି ଗୋଟିଏ ଗାଁ ଥିଲା । ସେହି ଗାଁରେ କପାଳିଆ ସିଠ ନାମରେ ଜଣେ ଧୋବା ଥିଲା । ପିଲାଦିନରୁ କପାଳିଆର ଡାହାଣ ଗାଲରେ ଗୋଟିଏ ଆବୁ ହେଲା । ଆବୁଟି ଦିନକୁ ଦିନ ବଢୁଥାଏ । ବିଚରା ତା' ଲାଗି ବଡ଼ କଷ୍ଟ ପାଉଥାଏ । ସେ ଦିନେ କାଠପାଇଁ ଜଙ୍ଗଲକୁ ଗଲା । କାଠ ହାଣୁ ହାଣୁ ବେଳ ବୁଡ଼ିଗଲା । ହଠାତ୍ ବିଜୁଳି ଘଡ଼ଘଡ଼ି ମାରି କାହୁଁ ଗୋଟେ ଘୋଟପାଚିଆ ମେଘ ଉଠେଇ ଆସିଲା । ଅଚାନକ ବର୍ଷା ହେବାରୁ କପାଳିଆ ଘରକୁ ଆସି ନ ପାରି ଗୋଟେ ବୁଢ଼ା ଶାଳଗଛ କୋରଡ଼ ଭିତରେ ଯାକିଯୁକି ହୋଇ ବସିଲା । ଚାହୁଁ ଚାହୁଁ ଅଧରାତି ହେଲା । ଅନ୍ଧାରରେ ମୁହଁକୁ ମୁହଁ ଦିଶିଲା ନାହିଁ । ଘଡ଼ଘଡ଼ି ବିଜୁଳି ମାରି ତୁହାକୁ ତୁହା ଅସରାଏ ଲେଖାଏ ଟାଣ ବର୍ଷା ହୋଇ ଯାଉଥାଏ । ଏଥି ମଧ୍ୟରେ ପଂଝେ ଅସୁର ବର୍ଷାପାଗ ଯୋଗୁ ହୁଳା, ନିଆଖୁଣ୍ଟା ଧରି, ବାଜା ବଜେଇ, ଆନନ୍ଦରେ ଗୀତ ବୋଲି ନାଚି ଡେଇଁ କୁଆଡୁ ବାହାରିଲେ । ସେମାନେ ଏହିପରି ନାଚିକୁଦି ଯାଇ ଗୋଟେ ଢିପ ଉପରେ ବୈଠକ ବାନ୍ଧି ନାଚଗୀତର ଧୂମ ଲଗାଇଲେ । କପାଳିଆ ନିଜେ ଭଲ ଗୀତନାଟ ଜାଣେ । ସେ ଅସୁରଙ୍କ ଗୀତ ନାଟ ଦେଖି କୋରଡ଼ରେ ଆଉ ସମ୍ଭାଳିହୋଇ ରହିପାରିଲା ନାହିଁ । ପଛକୁ ଅସୁରଙ୍କ ମେଳରେ ବୋଲି ଜାଣେ । ଅସୁରମାନେ ତା' ନାଚଗୀତରେ ଖୁସି ହୋଇ ତାକୁ ଆଦର କଲେ । ଏଥି ମଧ୍ୟରେ ରାତି ପାହିଲା, ବର୍ଷା ମଧ୍ୟ ଛାଡ଼ିଗଲା । ତହୁଁ କପାଳିଆ ଘରକୁ ଯିବାକୁ ବାହାରିଲା । ଅସୁରମାନେ ତ ତା ଗୀତରେ ଭୋଳ ହୋଇ

ଯାଇଥିଲେ । କପାଳିଆ ଘରକୁ ଯିବାକୁ ଯେତେ ଫିକର କଲେ ସୁଦ୍ଧା ତାକୁ ଛାଡ଼ିବାକୁ କେହି ମଙ୍ଗିଲେ ନାହିଁ । ଏହା ଦେଖି କପାଳିଆ ଦେଖିଲା – ଯେବେ ଏପରି କଥା, ତେବେ ମୁଁ ପିଲାପିଲିଙ୍କୁ ଦେଖି ପୁଣି ଫେରି ଆସିବି । ତେବେବେ ସୁଦ୍ଧା କେହି ମଙ୍ଗିଲେ ନାହିଁ । ଜଣେ ଅସୁର କହିଲା – ଯେବେ ଗୋଡ଼ଟେ ବନ୍ଧା ଦେବ ତେବେ ଯାଉ । ଏହା ଶୁଣି ଆଉ ଜଣେ କହିଲା – ନାହିଁ ନାହିଁ, ଗୋଟେ ହାତ ବନ୍ଧା ଦେଉ, କେହି କହିଲା – ଜିଭଟା ବନ୍ଧା ଦେଉ । ଏହିପରି ହେଉ ହେଉ ଜଣେ ବୁଢ଼ା ଅସୁର କହିଲା – ତୁମେ ପିଲାଗୁଡ଼ାଏ, ତୁମର ବୁଦ୍ଧି କେତେ ? ଯାହା ବନ୍ଧା ରହିଲେ ସେ ନିଶ୍ଚେ ଆସିବ, ଏମିତି ଜିନିଷଟିଏ କହିଲେ ସିନା ହୁଅନ୍ତା ! ମୁଁ କହୁଚି ତା' ଆବୁଟିକୁ ରଖ, ସେ ନିଶ୍ଚେ ଆସିବ । ଜାତିରେ ତ ଅସୁର ତାଙ୍କର ଅବା ବୁଦ୍ଧି କେତେ ? ସେଠୁ ସମେସ୍ତ ବୁଢ଼ା କଥା ମାନିଗଲେ । ଏହାଶୁଣି କପାଳିଆ ମନେ ମନେ ଖୁସି ହେଉଥାଏ । ଦେଖିଲା ଯେ କେତେ କାଳର ଗୋଟେ ରୋଗ ଥିଲା, ଆଜି ଯିବ । କପାଳିଆ କହିଲା, ଆବୁଟା କାଟିଲେ ରକ୍ତ ବୋହିବ, ମୋତେ କାଟିବ, ମତେ ସେଥିରୁ ରକ୍ଷା କର । ଅସୁରମାନେ କହିଲେ – ଆମେ ମନ୍ତ୍ର ବଳରେ ଇମିତି ସୂତ୍ରେ ତୋ ଆବୁଟାକୁ କାଢ଼ିନେବୁ ଯେ ତୁ କିଛି ଜାଣିପାରିବୁ ନାହିଁ । ତହୁଁ କପାଳିଆ ମିଛରେ ସକ ସକ ହୋଇ କହିଲା, ହଉ ତେବେ କେମିତି ନଉଚ, ନିଅ; ମୋର ଚାରା କ'ଣ ଅଛି । ଅସୁରମାନେ ମନ୍ତ୍ରବଳରେ ସେହିପରି କପାଳିଆ ଗାଲରୁ ଆବୁଟି କାଢ଼ି ରଖିଲେ । ତା' ଗାଲରୁ ଟୋପେ ରକ୍ତ ବହିନାହିଁ, କି ସେ ଟିକିଏ କଷ୍ଟ ଜାଣି ନାହିଁ । ତହୁଁ କପାଳିଆ ମନେ ମନେ ଭାରି ଖୁସି ହୋଇ ଜାଳଗୋଛାଟି ମୁଣ୍ଡାଇ ଗାଁ'କୁ ଗଲା । କପାଳିଆ ଗାଲରେ ଆବୁ ନ ଥିବାରୁ ଗାଁ' ଲୋକେ ତାକୁ ଚିହ୍ନି ପାରିଲେ ନାହିଁ । ଦୋଦୋ ଚିହ୍ନା ହୋଇ କେହି କେହି ପଚାରିଲେ, ତୁ କିଏ କିରେ ? କପାଳିଆ କହିଲା; ମୁଁ ପରା କପାଳିଆ । ତହୁଁ ଗାଁ' ଲୋକେ କହିଲେ – କିରେ ତୋ' ଆବୁ କୁଆଡ଼େ ଗଲା ? ଯେପରି ଭାବରେ ତା' ଆବୁ କଟା ହୋଇଥିଲା, ସେ ସବୁ କଥା କପାଳିଆ ଗାଁ' ଲୋକଙ୍କୁ କହିଲା । ସେ ଗାଁ'ରେ ହଟହଟା ବାରିକ ବୋଲି ଜଣେ ବାରିକ ଥିଲା । ପିଲାଦିନୁ ତା'ର

ଗୋଟେ ଗାଲରେ ଗୋଟେ ଆବୁ ହୋଇଥିଲା । ସେ ସେଥିଲାଗି ବହୁତ କଷ୍ଟ ପାଉଥିଲା । ସେ ଯହୁଁ ଶୁଣିଲା ଦୁଃଖ କଷ୍ଟ ନାହିଁ କି, ରକ୍ତ ବୁହା ନାହିଁ, ଶୂନ୍ୟେ ଶୂନ୍ୟେ କପାଳିଆ ଆବୁ ଭଲ ହୋଇଗଲା, ତହୁଁ ଧଡ଼ପଡ଼ ହୋଇ ଯାଇ କପାଳିଆ ଠଉଁ ସବୁ ଠିକଣା ବୁଝିନେଲା । ତା'ପରେ ଆବୁ କଟାଇବାକୁ ଅସୁରଙ୍କ ମେଳକୁ ଗଲା । ଅସୁରମାନେ ତ ଭୋଳ ହୋଇ ଗୀତନାଟ କରୁଥା'ନ୍ତି, ହଟହଟାକୁ ସେ ବାରି ପାରିଲେ ନାହିଁ । ହଟହଟା ତାଙ୍କ ସାଙ୍ଗରେ ମିଶାଇ ଗୀତ ବୋଲିଲା । କପାଳିଆର ସିନା କଣ୍ଠ ଭଲ, ସେ ଗୀତ ଭଲ ବୋଲି ଜାଣେ । ହଟହଟା ତ ଦିନେ ହେଲେ ଗୋଟିଏ ଗୀତ ବୋଲି ନାହିଁ, କି ତା' କଣ୍ଠ ଭଲ ନୁହେଁ । ସେଥିରେ ଅସୁରମାନେ ତା' ସ୍ୱର ବାରିନେଲେ । ସ୍ୱର ଖରାପ ହେତୁରୁ କେହି ତାକୁ ଭଲ ପାଇଲେ ନାହିଁ । ଓଲଟି ତା' ଉପରେ ରାଗିକରି ତା' ଆର ଗାଲରେ କପାଳିଆ ଆବୁଟି ମନ୍ତ୍ର ବଳରେ ଲଗାଇ ଦେଲେ । ଖାଲି ଏତିକି ନୁହେଁ, ତାକୁ ମାଡ଼ଗାଳି ଦେଇ ତଡ଼ିଦେଲେ । ହଟହଟା ତ ଗୋଟିଏ ଆବୁର ଦାଉ ସମ୍ଭାଳି ପାରୁ ନ ଥିଲା । ସେଥିରେ ପୁଣି ଆଉ ଗୋଟେ ଆବୁ ହେବାରୁ ତା' ମନ ଏକାବେଳକେ ମରି ଯାଇଥିଲା । ଏହା ଉପରେ ପୁଣି ଆଉ କାହା ମାଡ଼ ନୁହେଁ, ଅସୁରଙ୍କ ମାଡ଼ ବାଜିଲା । ହଟହଟା ଦେହ ମୁଣ୍ଡ, କାନ କଥା ଆଉ କ'ଣ କହିବା ? ବିଚରା ମୁହଁ ଶୁଖାଇ କାନ୍ଦି ବୋବାଇ ଦୁଇ ଗାଲରେ ଦୁଇ ଆବୁ ଧରି ଗାଁ'ରେ ପହଞ୍ଚିଲା । ଗାଁ' ଲୋକେ ହଟହଟାର ଏ ହଟହଟା ଦେଖି ଥଟ୍ଟା କଲେ । ହଟହଟା ମରିବା ଯାଏ ବଡ଼ କଷ୍ଟ ପାଇଲା ।

ଗୁଣ ଥିଲେ ସିନା ଲୋକେ କପାଳିଆ ଭଳି ପୁରସ୍କାର ପାଆନ୍ତି ।

# ନିର୍ବୁଦ୍ଧିଆ ପଣ୍ଡିତ କଥା

ଗୋଟିଏ ଗାଁ'ରେ ଚାରିଜଣ ମିତ ଥିଲେ । ପିଲାଦିନରୁ ସମସ୍ତେ ସମସ୍ତଙ୍କର ଭାରି ସାଙ୍ଗ । ସେ ଚାରିଜଣଙ୍କ ଭିତରୁ ତିନିଜଣ ପାଠ ଭଲ ଜାଣନ୍ତି, ମାତ୍ରକ ତାଙ୍କର କିଛି ବୁଦ୍ଧି ନ ଥିଲା । ବାକୀ ଜଣଙ୍କ ପାଠ ଶାଠ କିଛି ଜାଣେ ନାହିଁ, ଖାଲି ବୁଦ୍ଧିରେ ସେ ବଡ଼ । ଦିନେ ଚାରି ମିତଯାକ ବସି ବିଚାର କଲେ, ଭାଇ ! ଏତେ ପାଠ ପଢ଼ିଲେଇଁ ଯେ ରଜା ଦୁଆରକୁ ତ ଯାଇ ପାଠଶାଠ କରି ଟଙ୍କା ରୋଜଗାର କଲେଇଁ ନାହିଁ; ଏତେ ପାଠ ପଢ଼ି କ'ଣ ହେଲା । ତେବେ ଚାଲ, ଗୋଟେ ରଜା ଦୁଆରକୁ ଯିବା । ଏହି ବିଚାର କରି ଚାରି ମିତ ବିଦେଶ ବାହାରିଲେ । ଖଣ୍ଡେ ବାଟ ଯାଇଛନ୍ତି, ଜଣେ ପଣ୍ଡିତ ସେ ବୁଦ୍ଧିଆକୁ ଦେଖାଇ କହିଲା, ଭାଇ ଆମେ ତ ରଜାଦୁଆରେ ପାଠଶାଠ କରି ଟଙ୍କା ଆଣିବା, ଏ ତ ପାଠ ଶାଠ ଜାଣେ ନାହିଁ, ସେଠାରେ କ'ଣ ବୁଦ୍ଧି ଦେଖାଇ ଟଙ୍କା ଆଣିବ ? ପଛକୁ ଆମରି ଠଉଁ ଭାଗ ନବ ସିନା ? ତେବେ ଯେ ଏଇଠାଉଁ ଫେରିଯାଉ । ଆଉ ଜଣେ ପଣ୍ଡିତ ଯାଶୁଣି କହିଲା – ସତକଥା, ଏ କାହିଁକି ଆମ ସାଙ୍ଗରେ ଯିବ । ତାହାର ଏଇଠାଉଁ ଫେରିଯିବା ଭଲ । ଏ ସବୁ ଶୁଣି ବାକି ପଣ୍ଡିତ ଜଣଙ୍କ କହିଲା – ଯା ନା ଗୋଟେ କଥା ? ସେ ପିଲାଦିନରୁ ଆମର ସାଙ୍ଗୁଟେ, ହେଲେ ଏବେ ଭାଗୁଟେ ନେଲେ ନବ ଏଥିପାଇଁ କ'ଣ କରିବା ? ନ ହେଲେ ଲୋକେ ଦାଣ୍ଡରେ ଅସୁନ୍ଦର କହିବେ । ଏଥିରେ ସମସ୍ତେ ତୁନିତାନି ହୋଇ ଚାଲିଲେ । ଯାଉଁ ଯାଉଁ ବାଟରେ ଗୋଟେ ବଣ ପଡ଼ିଲା । ସେ ବଣରେ ଠା'କରେ ଗୁଡ଼େ ହାଡ଼ ପଡ଼ିଥିଲା । ସେ ହାଡ଼କୁଡ଼ ଦେଖି ଜଣେ ପଣ୍ଡିତ କହିଲା – ଭାଇ ! ଆମେ ଏତେ ପାଠ ପଢ଼ିଥାଇ ଏଗୁଡ଼ାକ କି ଜୀବର ହାଡ଼, ଜାଣି ପାରିବା ନାହିଁ ? ବିଦ୍ୟା ବଳରେ ସେ କଥା ଠିକଣା କର, ତା' ପରେ ଯାଇ ଯିବା । ଏ କଥାକୁ ସମସ୍ତଙ୍କର ଜିଦ୍ ଧଇଲା ।

ସେ ଭିତରୁ ଜଣେ ପଣ୍ଡିତ ବାହାରି ପଡ଼ି ହାଡ଼ଗୁଡ଼ିକୁ ଗୋଟାଇ ଯୁ ହାଡ଼ ଯୁ ଠାଇଁ ଲାଗିବାର କଥା, ବିଦ୍ୟାବଳରେ ତାକୁ ସେଠାରେ ଯୋଡ଼ିଦେଲା । ଏହା ଦେଖି ଆଉ ଜଣେ ପଣ୍ଡିତ ନିଜ ବିଦ୍ୟା ଦେଖାଇବାକୁ କନ କନ ହୋଇ ସେଥିରେ ଚମ ମାଉଁସ ଲଗାଇ ଦେଲା । ବାକୀ ପଣ୍ଡିତ ଜଣକ ଦେଖିଲା ଯେ ଯାଙ୍କ ବିଦ୍ୟା ତ ଏ ଦେଖାଇଲେ, ତେବେ ମୋ ବିଦ୍ୟା କିଆଁ ବାକି ରହିବ କହି ସେ ମଲା ସିଂହକୁ ଜୀବନ ଦେବାକୁ ଗଲା । ବୁଦ୍ଧିଆ ଲୋକଟି ଦେଖିଲା ଯେ ଜୀବନଦାନ ପାଇଗଲେ ଏ ସିଂହ ଆଉ ଆମର ବାକୀ ରଖିବ ନାହିଁ, ଆମ ସମସ୍ତଙ୍କୁ ଖାଇଯିବ । ଏହା ଭାବି ଚଟ୍‌କିନା ସେ ପଣ୍ଡିତ ହାତ ଧରିପକାଇ କହିଲା – ଭାଇ ! କରୁଛ କ'ଣ ? ତୁମର ଟିକିଏ ବୁଦ୍ଧି ନାହିଁ ? ଜୀବନ ଦେବା ସାଙ୍ଗେ ସାଙ୍ଗେ ଏ ସିଂହ ଉଠି ଆମ ସମସ୍ତଙ୍କୁ ଖାଇଦେବ । ତହୁଁ ସେ ପଣ୍ଡିତ କହିଲା, ଇଲେଗେ ତୋରି କଥାରେ ମୋ ପାଠଗୁଡ଼ାକ ବନ୍ଦ କରିଦେବି ପରା ? ସେ କଥା ହୋଇପାରିବ ନାହିଁ । ନିଶ୍ଚେ ମୁଁ ମୋ ବିଦ୍ୟା ଦେଖାଇବି । ବୁଦ୍ଧିଆ ଯହୁଁ ଦେଖିଲା ମୋ କୁହାରେ ଫଳ ନାହିଁ, ତହୁଁ କହିଲା – ଭାଇ ! ଯେବେ ଏହା ନିଶ୍ଚେ କରିବ, ତେବେ ଟିକିଏ ସତାର କର, ମୁଁ ଗୋଟେ ଗଛରେ ଚଢ଼ିସାରେ, ତା' ଉତ୍ତାରୁ ଜୀବନଦାନ କରିବ । ବୁଦ୍ଧିଆଟି ଚଢ଼ି ସାରିଲାରୁ ସେ ପଣ୍ଡିତ ତାକୁ ଜୀବଦାନ କଲା । ସିଂହ ଜୀବନ ପାଇବା ସାଙ୍ଗେ ସାଙ୍ଗେ ଫୁଲିଫାଲି ଗୋଟାକ ସାତଟା ହୋଇ ସେ ତିନି ପଣ୍ଡିତଙ୍କୁ ମାରି ଖାଇଲା । ତା'ପରେ ସିଂହ ଜଙ୍ଗଲ ଭିତରକୁ ଚାଲିଯିବାର ଦେଖି ବୁଦ୍ଧିଆ ଲୋକଟି ଗଛରୁ ଓହ୍ଲାଇ ଘରକୁ ଫେରିଲା । ବୁଦ୍ଧି ନ ଥାଇ ଖାଲି ପାଠ ଥିଲେ ଲୋକ ଚଳିପାରିବ ନାହିଁ; କିନ୍ତୁ କେବଳ ବୁଦ୍ଧି ଥିଲେ ଚଳିଯିବ ।

# ହୁଣ୍ଡା ଆଉ ଧୁଣ୍ଡାର କଥା

ଗୋଟିଏ ରାଜ୍ୟରେ ଜଣେ ରାଜା ଥିଲେ । ସେ ସବୁଦିନ କ୍ଷିଅର ହୁଅନ୍ତି, ସବୁଦିନ ନୂଆଲୁଗା ପିନ୍ଧନ୍ତି । ସେଥିପାଇଁ ରାଜାଙ୍କର ଖାସ୍ ଗୋଟିଏ ଭଣ୍ଡାରି ଓ ଗୋଟିଏ ତନ୍ତୀ ଥାଏ । ଭଣ୍ଡାରି ପ୍ରତିଦିନ ରାତି ପାହିଲେ ରାଜାଙ୍କୁ କ୍ଷିଅର କରିଦେଇ ଆସେ, ତନ୍ତୀ ସବୁଦିନ ଗୋଟିଏ ଗୋଟିଏ ନୂଆ ଲୁଗା କୁଣ୍ଢ଼ାଇଁ ରଜାଙ୍କ ଛାମୁରେ ଦେଇଆସେ । ଦିନେ ଦୈବାତ୍ ତନ୍ତୀ ଭଣ୍ଡାରୀ ଦିହିଁଙ୍କୁ ବନ୍ଧୁଘର ଯିବାକୁ ପଡ଼ିଲା । ଭଣ୍ଡାରି ପୁଅ ନାଁ ହୁଣ୍ଡା, ତନ୍ତୀ ପୁଅ ନା ଧୁଣ୍ଡା । ରାଜାଙ୍କୁ କ୍ଷିଅର କରି ଦେବାକୁ ଭଣ୍ଡାରି ହୁଣ୍ଡାକୁ କହିଗଲା, ଲୁଗା ଦେଇ ଆସିବାକୁ ତନ୍ତୀ ଧୁଣ୍ଡାକୁ କହିଗଲା ।

ଧୁଣ୍ଡା, ହୁଣ୍ଡା ଦୁହେଁ ଭାରି ସାଙ୍ଗ । ତହୁଁ ଆରଦିନ ସକାଳେ ଦିହିଁଙ୍କର ଭେଟ ହେଲା । ହୁଣ୍ଡା କହିଲା, ଭାଇ ! ଆଜି ଯେବେ ରଜାଙ୍କର କାମଟି ଭଲକରି କରି ଆସିବା ତେବେ ସବୁଦିନ ଆମରି ଉପରେ ପଡ଼ିବ । ଆଜି ଦିନଟା ଖରାପ କଲେ, ରଜା ଆଉ ଦିନେ ଡକାଇବେ ନାହିଁ । ଧୁଣ୍ଡା କହିଲା ସତ କହିଲୁ ଭାଇ ! ତା'ପରେ ବେଳ ହେବାରୁ ହୁଣ୍ଡା ପଣବାପାଙ୍କ ଅମଳର ଖଣ୍ଡେ ଅନ୍ତରା ଖୁର ଧରି ରଜାଙ୍କୁ କ୍ଷିଅର କରିବାକୁ ଗଲା । ରଜାଙ୍କ ମୁହଁରେ ସେ ଖୁରକୁ ଥରଟିଏ ଲଗାଇଚି, ରଜାଙ୍କ ମୁହଁରୁ ଫସ୍ ଫସ୍ ରକ୍ତ ବାହାରିଲା । ତହୁଁ ରଜା ରାଗିକରି ହୁଣ୍ଡାକୁ ଗୁଡ଼ିଏ ଧକ୍କା, ତଣ୍ଡିଆ ଦେଇ ତଡ଼ିଦେଲେ । ଏହାର କିଛି ସମୟ ଉତ୍ତାରୁ ଧୁଣ୍ଡା ଲୁଗାଟି ତନ୍ତରୁ ଉଠାଇ ତାକୁ କତୁରିରେ ଟିକି ଟିକି କରି କାଟି ଚଉତି ଚାଉତି ରଜାଙ୍କ ଛାମୁରେ ଦେଲା । ରଜା ପିନ୍ଧିବାକୁ ଫିଟାଇଲାବେଳକୁ ଦେଖନ୍ତି ତ ତାହା ଗୋଟିଏ କନାମାଳ । ତହୁଁ ଧୁଣ୍ଡାକୁ ଗୁଡ଼ିଏ ଧକ୍କା, ତଣ୍ଡିଆ ଦେଇ ବାହାର

କରିଦେଲେ । ଏହା ଉପରେ ପୁଣି ଭଣ୍ଡାରି ତନ୍ତୀଙ୍କ ଜାଗିରି ରୋକ କରି ଦୁହିଁଙ୍କୁ ପଚାଶ ପଚାଶ ଟଙ୍କା ଜୋରିମାନା କଲେ । ତହିଁ ଆରଦିନ ଭଣ୍ଡାରି ତନ୍ତୀ ଦୁହେଁ ଆସି ଶୁଣନ୍ତି ତ ଏପରି ଘଟନା । ତହୁ ଭଣ୍ଡାରି ହୁଣ୍ଡାକୁ, ତନ୍ତୀ ଧୁଣ୍ଡାକୁ ଘରୁ ତଡ଼ିଦେଲେ । ଦି' ସାଙ୍ଗ ଘରୁ ତଡ଼ା ହୋଇ ବାଟରେ ଭେଟ ହେଲେ । ଘରୁ ଗଲାବେଳେ ହୁଣ୍ଡା ଗୋଟିଏ ଦର୍ପଣ ଓ ଧୁଣ୍ଡା ଗୋଟିଏ ସୂତାକଣ୍ଡା ନେଇଥିଲା । ଦୁହେଁ କେତେବାଟ ଗଲା ଉତ୍ତାରୁ ଗୋଟେ ଗାଁ' ପାଖରେ ହୁଣ୍ଡା କହିଲା, ହଇରେ ଭାଇ ! ପଇସା ପତ୍ର ତ ହାତରେ ନାହିଁ, ଚଳିବା କିପରି ? ଧୁଣ୍ଡା କହିଲା, ତେବେ ଚାଲ, ଏ ଗାଁ' ବାଡ଼ିଆଡ଼େ ଯେଉଁସବୁ ଗୁହାଳ ଅଛି, ଆଜି ରାତିରେ ସେଥିରୁ ବଳଦ ଚୋରି କରି ଆଣି ଆଉ ଠାଏ ବିକି ସେଇ ପଇସାରେ ଚଳିଯିବା । ଏ କଥା ହୁଣ୍ଡା ମନକୁ ପାଇଲା । ରାତିରେ ଦି' ସାଙ୍ଗ ଗୋଟେ ଗୁହାଳରେ ପଶିଲେ । ବାଛୁରି ମାରି ଖାଇବାକୁ ତା' ଆଗରୁ ସେ ଗୁହାଳରେ ଗୋଟେ କଣା ବାଘ ପଶିଥିଲା । ଯହୁଁ ଦି' ଜଣ ମଣିଷ ପଶିଲେ, ତହୁଁ କଣାବାଘ ଟିକିଏ ଶଙ୍କିଯାଇ ଗୋଟେ କୋଣକୁ ଆଉଜି ଯାଇଥାଏ । ବାଘ ପଶିବା କଥା ତ ହୁଣ୍ଡା ଧୁଣ୍ଡା ଜାଣନ୍ତି ନାହିଁ । ଗୁହାଳ ତ ଅନ୍ଧାର । ଭଲ ଦାମୁଡ଼ିଟେ ନେଲେ ସିନା ବେଶି ପଇସାରେ ବିକିବେ, ସେଥିପାଇଁ ଦରାଣ୍ଡି କରି ଯାହା ଭଲମନ୍ଦ ବୁଝିବେ । ହୁଣ୍ଡା କହିଲା, ଧୁଣ୍ଡାକୁ ଭାଇ, ଦରାଣ୍ଡି କରି ଗୋଟେ ଭଲ ଦାମୁଡ଼ି ଆଣେ । ଧୁଣ୍ଡା ଦରାଣ୍ଡି ଦରାଣ୍ଡି ଦେଖିଗଲା । କେହି ମନକୁ ପାଇଲେ ନାହିଁ । ପଛକୁ କଣା ବାଘ ଉପରେ ହାତ ପଡ଼ିଲା । ବାଘ ତ ଖାଇପିଇ ଫୁଲିଫାଲି ଅଛି । ଧୁଣ୍ଡା ହାତକୁ ଯହୁଁ ମୋଟାମୋଟି ଲାଗିଲା, ତହୁ ଧୁଣ୍ଡା ଭଲକରି ଦରାଣ୍ଡି କରି କହିଲା, ଭାଇ ! ଭଲ ଦାମୁଡ଼ିଟେ ପାଇଚି । ଯା ବେକରେ ପଘା ନାହିଁ, ଆଉ ଗୋଟାକ ବେକରୁ ପଘାଟେ ଆଣ । ଯାକୁ ତ ନବା । କଣା ବାଘ ତ ଆଗରୁ ଟିକିଏ ଡରିଥିଲା, ଦରଣ୍ଡା ଦରଣ୍ଡି, ବନ୍ଧା ବନ୍ଧି ହେବାରୁ ଅଧିକ ଡରିଗଲା । ପଘା ବନ୍ଧା ହେଲାରୁ ଧୁଣ୍ଡା ପଘା ଧଇଲା ହୁଣ୍ଡା ପଛରୁ ଅଡ଼ାଇଲା । ଏପରି କରି ନେଲେ । ଯାଉ ଯାଉ ଧୁଣ୍ଡା ଗୋଡ଼ରେ କଣ୍ଟା ଗଳିବାରୁ ସେ ପଘା ଛାଡ଼ିଦେଇ କଣ୍ଟା କାଢ଼ି ବସିଲା ।

କଣା ବାଘ ଏଥି ମଧ୍ୟରେ ତାଙ୍କ ପାଖରୁ ଖସିଯାଇ ଆଉ ଠାଏ ଠିଆହୋଇ କହିଲା, ମୁଁ ତୁମ୍ଭ ଦୁହିଁଙ୍କୁ ଖାଇବି । ହୁଣ୍ଡା ଧୁଣ୍ଡା ଦିହେଁ ଏହା ଶୁଣି ତାଟକା ହୋଇ ଭାବିଲେ, ତେବେ କ'ଣ ଏ ବଳଦ ନୁହେଁ ? ଏ ତ ବାଘୁଟେ । ଏତକ ଯହୁଁ ଜାଣିପାରିଲେ, ତହୁଁ ହୁଣ୍ଡା ଚଟକିନି କହିଲା – ହଇରେ ତୁ ଆମକୁ କ'ଣ ଖାଇବୁ ମ ? ରଜାଘରର ବ୍ୟାଘ୍ରୀ ତୈଳ ତିଆରି ହେବ ବୋଲି ଶହେ ବାଘ ଦରକାର । ଆମେ ଅନେଶ୍ୱତ ବାଘ ନେଲୁଣି । ତୋତେ ନେଲେ ଶହେ ହେବ । ତୁ କ'ଣ ଆମକୁ ଖାଇବୁ ? କଣା ବାଘ କହିଲା, ଆଚ୍ଛା ଯେଉଁ ଅନେଶ୍ୱତ ବାଘ ଧରିଛ, ଦେଖାଇ ପାରିବ ? ହୁଣ୍ଡା କହିଲା, ହଁ ।  କଣା, ଆଚ୍ଛା ଦେଖାଇଲୁ । ତହୁଁ ହୁଣ୍ଡା ଘରୁ ଆଣିଥିବା ଦର୍ପଣଟି କାଢ଼ି କଣା ବାଘ ମୁହଁ ପାଖରେ ଅନେଶ୍ୱତ ଥର ଦେଖାଇ ଦେଲା । କଣାବାଘ ଯହୁଁ ଅନେଶ୍ୱତ ବାଘ ଦେଖିଲା, ତହୁଁ ସତ ମଣି ଭୟରେ ଚମ୍ପଟ । କଣାବାଘ ମେଳରେ ପଶି ସବୁ ବାଘଙ୍କୁ କହିଲା, ଭାଇ ହେ ! ରଜାଙ୍କର ବ୍ୟାଘ୍ରୀ ତୈଳ ହେବ ବୋଲି ବାଘ ଧରା ଲାଗିଛି । ଚାଲ ଆମ୍ଭେ ଏ ବଣରୁ ପଳାଇବା । ବାଘମାନେ କଣା ବାଘ କଥା ଶୁଣି ସେ କଥାରେ ବିଶ୍ୱାସ ନ କରି କହିଲେ – ଆମେ ବାଘ, ଆମକୁ ପୁଣି ବାନ୍ଧି ନେବେ ? ଆଚ୍ଛା ଚାଲିଲୁ, କେଉଁଠି କିଏ ବାଘ ବାନ୍ଧି ନେଉଚି, ଆମକୁ ଦେଖାଇବୁ । ତହୁଁ ସବୁ ବାଘଯାକ ମିଳି ଡେଇଁ ହେଣ୍ଟାଳ ମାରି କଣାବାଘ ପଛେ ପଛେ ଗଲେ । ହୁଣ୍ଡା ଧୁଣ୍ଡା ଦିହେଁ ବାଘ ହେଣ୍ଟାଳ ଶୁଣି ଭୟରେ ଥରହର କମ୍ପିଲେ, କେଉଁଆଡ଼େ ଯିବେ କିଛି ସ୍ଥିର କରିପାରିଲେ ନାହିଁ । ପଛକୁ ଗୋଟେ ବଡ଼ ବରଗଛରେ ଦିହେଁ ଚଢ଼ିଗଲେ । ବାଘଯାକ ଖୋଜି ଖୋଜି ସେହି ବରଗଛ ମୂଳରେ ପହଞ୍ଚିଲେ । ଦେଖିଲେ ତ ମଣିଷ ଦିଓଟି ଗଛର ଅଗଶିଖରେ ଚଢ଼ିଛନ୍ତି । ସେଥିରୁ ତାଙ୍କର ଭାଳେଣି ପଡ଼ିଲା । ଶେଷକୁ ବାଘମାନେ ଠିକଣା କଲେ ଯେ ଗୋଟାକ ଉପରେ ଗୋଟେ, ତା' ଉପରେ ଆଉ ଗୋଟେ ଏହିପରି ଯେବେ ଠିଆହେବା, ତେବେ ମୁହଁ ପାଇଗଲେ ଭିଡ଼ିଆଣି ମଣିଷ ଦି'ଟା ଖାଇଦେବା । ଏକଥା ଯହୁଁ ଠିକ୍ ହେଲା, ତହୁଁ କଣାବାଘ କହିଲା, ଭାଇମାନେ ! ମୁଁ ସବାତଳେ ରହିବି । ଆଉ ସବୁ ବାଘ ସେ କଥା ମଞ୍ଜୁର କଲେ । ତହିଁପରେ ଆଗ କଣାବାଘ

ଠିଆହେଲା, ତା' ଉପରେ ଆଉ ଗୋଟିଏ ବାଘ, ତା' ଉପରେ ଆଉ ଗୋଟିଏ ବାଘ, ପୁଣି ତା ଉପରେ ଆଉ ଗୋଟିଏ ବାଘ ଠିଆ ହେଲା । ଏହିପରି ତା' ଉପରେ ତା' ଉପରେ ଅନେକ ବାଘ ଠିଆ ହେବାରୁ ଗଛ ଶିଖ ପର୍ଯ୍ୟନ୍ତ ବାଘ ଲାଗି ଆସିଲେ । ହୁଣ୍ଡା ଏହା ଦେଖି ଭୟରେ ତରଛି ତଳକୁ ଖସି ପଡ଼ିଲା । ଧୁଣ୍ଡା ଦେଖିଲା ଯେ ଏ ବାଜି ବାଘ ହୁଣ୍ଡାକୁ ନିଶ୍ଚେ ଖାଇଲେ । ଆଉ କିଛି ଉପାୟ ନ ପାଇ, ତା'ପାଖେ ଯେଉଁ ସୂତା କଣ୍ଡାଟା ଥିଲା, ତା'ର ଗୋଟେ ମୁଣ୍ଡ ହାତରେ ଧରି ତାକୁ ହୁଣ୍ଡା ପାଖକୁ ପକାଇ ଦେଇ ବଡ଼ ପାଟିକରି କହିଲା "ବାନ୍ଧ ବାନ୍ଧ, ସେ କଣାବାଘକୁ ଆଗ ବାନ୍ଧ" । କଣା ଯିମିତି ଏତକ ଶୁଣିଚି, ସାଙ୍ଗେ ସାଙ୍ଗେ ଚମ୍ପଟ କଲା । କଣାବାଘ ତ ସବୁ ବାଘଙ୍କ ତଳରେ ଥିଲା, ସେ ଯହୁଁ ଖସିଗଲା, ଉପରୁ ବାଘଯାକ ଦୁର୍‌ଦାର ଭୁସ୍‌ଭାସ୍ ହୋଇ ଯେ ତା' ଉପରେ, ସେ ଯା ଉପରେ ପଡ଼ିଲେ । ଏଥିରେ ସବୁ ବାଘ ତରଛି ଲାଙ୍ଗୁଡ଼ ଟେକି ହେଣ୍ଡାଳ ମାରି ଯେ ଯୁଆଡ଼େ ପଳାଇଲେ । ବାଘସବୁ ପଳାଇବାର ଦେଖି ଧୁଣ୍ଡା ତଳକୁ ଓହ୍ଲାଇଲା । ତହୁଁ ହୁଣ୍ଡା ଧୁଣ୍ଡା ଦୁହେଁ ବିଚାର କଲେ ଯେ ବାପମା'ଙ୍କ କଥା ମାନିଥିଲେ ତ ଘରେ ସୁଖରେ ଥା'ନ୍ତେଇଁ । ତାଙ୍କ କଥା ନ ମାନିଲେଇଁ, ଏବେ ଆଜି ଅକାରଣେ ପ୍ରାଣ ଯାଇଥା'ନ୍ତା । ଭାଇ ! ଯାହା ହେବାର ତାହା ହେଲାଣି, ଏବେ ଚାଲ ଘରକୁ ଫେରିଯିବା । ଏଣିକି ବାପମା'ଙ୍କ କଥା ମାନି ଘରେ ରହିବା । ତହୁଁ ଦୁହେଁ ଘରକୁ ଫେରି ଗଲେ, ସେଦିନୁଁ କାମଗୁଡ଼ିକ ଠିକଣା ମୁତାବକ କରି ସୁଖରେ ରହିଲେ ।

ବିପଦରେ ବୁଦ୍ଧି ଏକା ସହାୟ ।

# ଦୁଇ କୃପଣ କଥା

ଗୋଟିଏ ଗାଁ'ରେ ସୋମ ଆଉ ଯମ ବୋଲି ଦୁଇ ମିତ ବାସ କରୁଥିଲେ । ଦିହେଁ ଯାକ ଭାରି କୃପଣ । ଦିହିଁଙ୍କର ଅକଳନ୍ତି ସମ୍ପତ୍ତି ଥାଏ । ହେଲେ କ'ଣ ହେବ, ହାତ ଟେକି କାହାକୁ ପଇସାଟିଏ ଦିଅନ୍ତି ନାହିଁ, କି ଧନ ସରିଯିବ ବୋଲି ପେଟକୁ ମୁଠେ ଖାଆନ୍ତି ନାହିଁ । ଯାହା କହନ୍ତି, ମୁହଁ ଚାହିଁଲେ ଦାନା ମିଳିବ ନାହିଁ, ସତରେ ସେ ଦିହିଁଙ୍କ ମୁହଁ ଚାହିଁଲେ ମୁଠେ ଖାଇବାକୁ ମିଳିବ ନାହିଁ । ଥରେ ଗୋଟେ କାମ ପଡ଼ିବାରୁ ସୋମ, ଯମ ଦିହେଁ ଗୋଟେ ଜାଗାକୁ ଗଲେ । ସେ ଜାଗା ତାଙ୍କ ଗାଁ'ଠୁ ବହୁ ଦୂରରେ । ଖରା ବର୍ଷା ସହି ଘରୁ ଯାହା ଚୁଡ଼ା ଚାଉଳ ଆଣିଥିଲେ, ସେଥିରୁ ମୁଠାଏ ମୁଠାଏ ଖାଇ ଦିହେଁ ସେ ଜାଗାରେ ପହଞ୍ଚିଲେ । କାମ ତୁଟୁ ତୁଟୁ ଦିନକୁ ଦି'ଦିନ ଗଡ଼ିଗଲା । ଯାହା କିଛି ଚୁଡ଼ା ଚାଉଳ ପାଖରେ ଥିଲା, ସେ ସବୁ ସରିଗଲା । ସେଠୁ ବିଚାର ପଡ଼ିଲା, ବାଟରେ କ'ଣ ଖାଇବା ? ଯମ କହିଲା ଦିନେ ଦି'ଦିନ ଓପାସ ରହିଗଲେ କ'ଣ ପ୍ରାଣ ବାହାରିଯିବ ? ନ ହେଲା ବେଳକୁ ପାଣି ମନ୍ଦେ ମନ୍ଦେ ପିଇ ଚାଲିଯିବା । ସୋମ କହିଲା, ବାଟ ଚାଲିବାକୁ ନ ଥା'ନ୍ତା କି ତେବେ ଦେଖା ଯାଇଥା'ନ୍ତା । ଆଚ୍ଛା ଦେଖାଯାଉ, ଯାଉ ଯାଉ ଯାହା ହେବ । ଦୁଇସଙ୍ଗୀ ଗାଁ'କୁ ବାହାରିଲେ । ଖିଆ ନାହିଁ, ପିଆ ନାହିଁ, ତୁଣ୍ଡରୁ ବଜ ବାହାରି ପଡୁଥାଏ, ଭୋକରେ ପାଟୁ ପାଟୁ ହୋଇ ଖରାରେ ଭିଡ଼ିଥା'ନ୍ତି । ଯାଉ ଯାଉ ବାଟରେ ଗୋଟେ ଗାଁ' ପଡ଼ିଲା । ସେ ଗାଁ' ଜମିଦାରଙ୍କର ପୁଅ ହୋଇଥାଏ ବୋଲି ମିଠାଇ ବଣ୍ଟା ହୋଇଥାଏ । ଯେ ଯାଏ ତାକୁ ଗୋଟିଏ ମିଠାଇ ଦିଆଯାଉଥାଏ । ଏ ଦିହେଁ ସେଠାଇଁ ଯାଇ ହାତ ପତାଇବାରୁ ଗୋଟିଏ ଗୋଟିଏ ମିଠାଇ ପାଇଲେ । ସେ ମିଠାଇଟି ଗାମୁଛା କାନିରେ ଚୌଦ ଗଣ୍ଠି ପକାଇ ଜକଟ ମକଟ କରି ବାନ୍ଧି ସେଇ ଖରାରେ ଭିଡ଼ିଲେ । ଭୋକରେ ଅଣ୍ଟା ଲଡ଼ିକି ପଡୁଥାଏ, ଆଣ୍ଠୁକୁ ଆଣ୍ଠୁ ବାଜୁଥାଏ, ତେବେହେଲେ ସେ ମିଠାଇ ନ ଖାଇ ବାନ୍ଧିକରି ଚାଲୁଥା'ନ୍ତି । ଯମକୁ ଭାରି ବାଧା ହବାରୁ ସେ କହିଲା ଭାଇ । ଆଉ

ପାରିବା ନାହିଁ, ଆସ ଏଠାରେ ମିଠାଇ ଖାଇବା, ପାଣି ମନ୍ଦେ ପିଇବା, ତା'ପରେ ଚାଲିବା । ସୋମ କହିଲା, ତତେ ଏତେ ବୟସ ହେଲାଣି, ତୁ କ'ଣ ପିଲାଙ୍କ ପରି କହୁଛୁ ? ଆରେ ଓଲୁ ! ଖାଇଦେଲେ ତ ସରିଯିବ, ଖାଇବି ଖାଇବି କେତେ କହୁଚୁ ? ତୁ ଖାଇବୁ ତ ଖା, ମୁଁ ଖାଇବି ନାହିଁ । ସୋମ ନ ଖାଇଲେ ଯମ ଖାଏ କେତେକେ ? ଇମିତି ଇମିତି ଆଉ ଖଣ୍ଡେଦୂର ଗଲେ । ସେଠାରେ ଗୋଟେ ପୋଖରୀ ଦେଖିଲେ । ଯମ କହିଲା ଭାଇ । ଭଲ ପାଣି ହେଇଚି, ଏଠାରେ ମିଠାଇ ଖାଇବା, ଯିବା । ସୋମ କହିଲା, ମୁଁ ଗୋଟେ କଥା କହିବି, କରିବୁ ? ତା' କଲେ ମିଠାଇ କି ମିଠାଇ ରହିବ, ପଣାକୁ ପଣା ପିଆଯିବ, ଆଉ ମନ ଦୁଃଖ ହେବନାହିଁ । ସେହି କଥା ଦିହେଁ ଠିକଣା କରି ପୋଖରୀ କୂଳରେ ବସି ଭାବିଲେ କିମିତି ପଣା କଲେ ପଣାକୁ ପଣା ହେବ, ଏଣେ ପୁଣି ମିଠାଇ କି ମିଠାଇ ରହିବ । ଯମକୁ ଗୋଟେ ବୁଦ୍ଧି ଦିଶିଗଲା । ସେ କହିଲା, ଭାଇ ଦେଖ ମୁଁ ଯିମିତି କରୁଚି, ସେମିତି କଲେ ଆମ କଥା ଠିକ୍ ହେବ, ଏହା ବୋଲି ଗଣ୍ଠିଲାରୁ ମାଟି ଘଡ଼ିଟି କାଢ଼ି ପୋଖରୀରୁ ଘଡ଼ିଏ ପାଣି ଆଣିଲା । ଗାମୁଛା କାନିରୁ ମିଠାଇଟି ଫିଟାଇ ଘଡ଼ି ଉପରେ ଟେକି କରି ଧଇଲା । ଗଙ୍ଗେଇ ଚଢ଼େଇ ମାଛକୁ ଚିଲା ମାଇଲା ଭଳିଆ ଚଟ୍‌କିନା ମିଠାଇକି ଘଡ଼ିରେ ବୁଡ଼ାଇ ସାଙ୍ଗେ ସାଙ୍ଗେ କାଢ଼ିନେଇ ଗାମୁଛାରେ ବାନ୍ଧି ଦେଲା । ସେ ଘଡ଼ିକ ପାଣି ଢକ ଢକ କରି ପିଇଦେଲା, କହିଲା; ଯେତେହେଲେ ମିଠାଟା ମିଠା, ତା' ଗୁଣ ସେ ଛାଡ଼ିବ ? ଓହୋ ! ଆତ୍ମା ଥଣ୍ଡା ହୋଇଗଲା । ଏ ପଣା ନ ପିଇଥିଲେ ସତରେ ପ୍ରାଣ ଉଡ଼ି ଯାଇଥା'ନ୍ତା । ସୋମ ଦେଖିଲା ଯେ ମିଠାଇକି ପାଣିରେ ବୁଡ଼ାଇଲେ ତା' ଦିହରୁ କିଛି ଧୋଇ ହୋଇଯିବ ନାହିଁ କି ? ଏ ଚାଣ୍ଡାଳ କଲା କ'ଣ ? ଏହାର କିଛି ବୁଦ୍ଧି ନାହିଁ । ଆଚ୍ଛା ଆମେ ଆଉ ପ୍ରକାରେ ପଣା କରିବା ଏହା ବୋଲି ବାଡ଼ି ଅଗରେ ଖଣ୍ଡେ ଦୌଡ଼ି ବାନ୍ଧିଲା । ସେ ଦୌଡ଼ି ଅଗରେ ଆପଣା ମିଠାଇଟି ସେ ବାନ୍ଧିଲା । ଆସ୍ତେ ଆସ୍ତେ ପୋଖରୀ ଭିତରକୁ ଗଲା । ଇମିତି ବାଡ଼ିଟି ଟେକିକରି ଧରିଥାଏ, ଯିମିତିକା କି ମିଠାଇ ପାଣିରେ ନ ଲାଗେ । ପାଣି ଭିତରେ ଠାଏ ଠିଆହେଲା, ମିଠାଇ ଛାଇ ଯେଉଁଠାଇଁ ପଡ଼ିଥିଲା, ସେଠାଉଁ ଚୂଳା ଚୂଳା କରି ଗ୍ରାସେ ପାଣି ପିଇଲା, କହିଲା ଭାଇ ବଢ଼ିଆ ପଣା ହୋଇଚି । ଯମ

ଦେଖିଲା ଯେ ସତେ ତ ଯା ମିଠାଇ ତ ଯିମିତି ସିମିତି ରହିଲା । ସେଠୁଁ କହିଲା, ଭାଇ ତୁ ଯିମିତି କଲୁ ମତେ କହିଥିଲେ ମୁଁ ସିମିତି କରି ନ ଥା'ନ୍ତି ? ଯା ତୁ ଗୋଟେ ବଡ଼ ଅବିଶ୍ୱାସୀଟେ । ସୋମ ପୁଣି ଯମକୁ ବୁଝାଇ ସୁଝାଇ ଦବାରେ ଦିହେଁ ପୁଣି ଚାଲିଲେ । କିଛିବାଟ ଯାଇଛନ୍ତି, ମେଘ ଉଠାଇଲା, ରାତି ହୋଇଗଲା, ଆଉ ଯିବେ କିପରି ? ପାଖରେ ଗୋଟେ ଗାଁ' ଥିଲା, ସେ ଗାଁ' ଭିତରକୁ ଯାଇ ଗୋଟେ ପିଣ୍ଡାରେ ବସିଲେ । ପଦାଜାଗା, ଘର ଭିତରେ ନୁହେଁ, ଶୋଇ ପଡ଼ିଲେ କାଳେ କିଏ ମିଠାଇ ନେଇଯିବ, ତାକୁ ଧରି କରି ବସିଥା'ନ୍ତି । ଦିନକ ଯାକ ଖରା ଖାଇଛନ୍ତି, ପେଟରେ ଦାନା ନାହିଁ, ଏଥିରେ ପୁଣି ବାଟଚଲା । କେତେକାଳ ଚେତା ରହିବେ । କାହୁଁ କାହୁଁ ନିଦ ମାଡ଼ି ଆସିଲା । ଦିହେଁଯାକ ନିଘୋଡ଼ ନିଦରେ ଶୋଇଲେ । ଗାମୁଛା ମିଠାଇ ସେଠାଇଁ ପଡ଼ିଥାଏ । ମିଠାଇ ବାସନା ପାଇ ଗୋଟେ କଟାସ ଆସିଲା । ସେ ଗାମୁଛା ସୁଦ୍ଧା ଭିଡ଼ି ନେଇଗଲା । ରାତି ପାହିବାରୁ ଦିହିଙ୍କ ନିଦ ଭାଙ୍ଗିଲା । ଦେଖନ୍ତି ତ ମିଠାଇ ନାହିଁ କି ଗାମୁଛା ନାହିଁ । ଏହା ଦେଖି ଦିହେଁ ବହୁତ ବାଡ଼େଇ ହେଲେ । ଗାଁ' ଲୋକେ ଏ ଦିହେଁ ବିକଳ ହେବାର ଦେଖି ଅନେକ ରୁଣ୍ଡ ହେଲେ । ଲୋକେ ବିକଳ ହେବାର କାରଣ ପଚାରିବାରୁ ସୋମ, ଯମ ଦିହେଁ ସବୁକଥା କହିଲେ । ଲୋକେ ଶୁଣି ହସିଲେ । ଜଣେ ଭଦ୍ରଲୋକ ଦେଖିଲେ ଯେ ଦି'ଜଣ ଯାକ ନ ଖାଇ ନ ପିଇ ମଡ଼ାପରି ଦିଶୁଛନ୍ତି । ସେଥିରେ ପୁଣି ମିଠାଇ ଗୋଟେ ପାଇଁ ବିକଳ ହୋଇ ମରିଯିବେ । ସେଠୁଁ ସେ ଭଦ୍ରଲୋକ ସେ ଦୁହିଙ୍କୁ ବହୁତ ବୁଝାଇ ଆପଣା ଘରକୁ ନେଇ ଭଲକରି ପେଟେ ପେଟେ ଖାଇବାକୁ ଦେଲେ । ଖାଇ ସାରିବା ପରେ ଦୁହିଁଙ୍କ ଦେହରେ ଟିକିଏ ଟିକିଏ ବଳ ହେବାରୁ ଧୀରେ ଧୀରେ ଗାଁ'କୁ ଗଲେ ।

ଅତି କୃପଣ ହେଲେ ସମୟରେ ଲୋକର ପ୍ରାଣ ସଙ୍କଟ ପଡ଼େ, ସେ ମଧ୍ୟ ଲୋକହସା ହୁଏ ।

# ସୁନାମୂଷା

ଧନଦାସ ବୋଲି ଜଣେ ମହାଜନ ଥିଲେ । ବେପାର ବଣିଜ କରି ସେ କୋଟି କୋଟି ଟଙ୍କା ଜମା କରିଥିଲେ । ଧନଦାସ ମରିଯିବା ପରେ ତାଙ୍କ ପୁଅ ସୁଖଦାସ ବାପାଙ୍କ ସମ୍ପତ୍ତିର ମାଲିକ ହେଲେ । ସୁଖଦାସ ବେପାର ବଣିଜ ନ କରି କେବଳ ମୌଜ ମଜଲିସ୍ କରି ଦିନ କଟାଉଥା'ନ୍ତି । କଥାରେ ଅଛି – ବସି ଖାଇଲେ ନଈବାଲି ସରେ । ଏପରି କେତେଦିନ ଯିବାରେ ସୁଖଦାସଙ୍କର ସବୁ ସମ୍ପତ୍ତି ସରିଗଲା । ପଛକୁ ଧାର କରଜ କରି ଦିନାକେତେ ଚଳିଲେ । ଟଙ୍କା ପଇସା ଶୁଝି ନ ପାରିବାରୁ ଆଉ ଧାର କରଜ ମିଳିଲା ନାହିଁ । ପଛକୁ ସୁଖଦାସ ଗଣ୍ଡେ ଖାଇବାକୁ ପାଇଲେ ନାହିଁ । ଯାହାର ଗୋଡ଼ ତଳେ ଲାଗୁ ନ ଥିଲା, ସେ ପୁଣି ଗଣ୍ଡେ ଖାଇବା ପାଇଁ ଯା ପିଣ୍ଡା ତା' ପିଣ୍ଡା ହେଲା । ଏ କାହାର ଦୋଷ ? ନିଜର ଦୋଷ । ସୁଖଦାସ ଯେବେ ମଉଜ ମଜଲିସରେ ନ ମାତି ବେପାରରେ ଲାଗିଥା'ନ୍ତେ, ତେବେ ଏତେ ସରି କାହିଁକି ହୋଇଥା'ନ୍ତେ ? ନିତାନ୍ତ ଯହୁଁ ଖାଇବାକୁ ନ ମିଳିଲା, ତହୁଁ ମନ ଘର ଧଇଲା । ସେ ଭାବିଲେ ଟଙ୍କା କିଛି ମିଳିଲେ ବେପାର କରନ୍ତି । ଯାହାର ଏପରି ଆଚରଣ, ତାଙ୍କୁ ଟଙ୍କା ଦଉଚି କିଏ ? ଆଉ ଗୋଟେ ସହରରେ ଧନଦାସଙ୍କର ଜଣେ ସଙ୍ଗାତ ଥିଲେ । ତାଙ୍କର ଅକଳନ୍ତି ସମ୍ପତ୍ତି । ସେ ଲୋକଟି ମଧ୍ୟ ଦୟାଳୁ । ତାଙ୍କ ନାଁ ବନ୍ଧୁଦାସ । ଦିନେ ସୁଖଦାସ କିଛି ଟଙ୍କା ମାଗିବା ପାଇଁ ବନ୍ଧୁଦାସଙ୍କ ଘରକୁ ଗଲେ । ପୁଣି ଟଙ୍କା ମାଗିବାରୁ ବନ୍ଧୁଦାସେ କହିଲେ ତୁମକୁ ଏତେ ଟଙ୍କା ଦେଇଥିଲି; ସବୁ ବୁଡ଼ାଇଲ, ପୁଣି କି ବିଶ୍ୱାସରେ ଟଙ୍କାଗୁଡ଼ିଏ ଦେବି ? ଦାସଙ୍କ ଆଗରେ ଗୋଟେ ମଲା ମୂଷା ପଡ଼ିଥିଲା । ଦାସେ ସେ ମୂଷାକୁ ଦେଖାଇ ଦେଇ କହିଲେ, ଲୋକ ଏଇ ମଲା ମୂଷାଟାରେ ଲକ୍ଷ ଲକ୍ଷ ଟଙ୍କା କରିପାରେ । ସୁଖଦାସ ବନ୍ଧୁଦାସଙ୍କର ଏଇ କଥାରେ ମନେ ମନେ ପ୍ରତିଜ୍ଞା କରି ସେ ମଲା ମୂଷାଟାକୁ ଘେନି ଘରକୁ ବାହାରିଲେ । ଆସୁ ଆସୁ ବାଟରେ ଗୋଟେ ବଜାର ପଡ଼ିଲା । ସେ ବଜାରରେ ଜଣେ ଦୋକାନୀର ଗୋଟିଏ

ବିରାଡ଼ି ଥିଲା । ଦୋକାନୀ ବିରାଡ଼ିଟିକୁ ବହୁତ ଭଲ ପାଏ । ବିରାଡ଼ି ଖାଇବା ପାଇଁ ଦୋକାନୀ ସୁଖଦାସଙ୍କୁ ସେ ମୂଷାଟି ମାଗିଲା । ସୁଖଦାସେ କହିଲେ, ତୁମେ ଯେବେ ମୋତେ ଗଣ୍ଡେ ବୁଟଚୂନା ଦେବ, ତେବେ ମୁଁ ମୂଷାଟି ଦେବି । ଦୋକାନୀ ପୋଷେ ବୁଟଚୂନା ଦେଲା ।

ବହୁତ କାଠବାଲା ସେ ବଜାରକୁ କାଠ ବିକି ଆସନ୍ତି । ଲୋକେ ଯେଉଁ ବାଟରେ ଆସନ୍ତି, ସେ ବାଟରେ ଟୋପେ ପାଣି ପିଇବାକୁ ପାଆନ୍ତି ନାହିଁ । ଖରାରେ ଆଉଟ ପାଉଟ ହୋଇ ବହୁ ଦହଗଞ୍ଜ ସହି କାଠ ବୋଝ ଘେନି ଆସନ୍ତି । ସୁଖଦାସ ଏକଥା ଉଣ୍ଡି ସେ ଛତୁଆତକ, ଆଉ ମାଠିଏ ପାଣି ଧରି ଅଧାବାଟଠାଇଁ ଗୋଟେ ବରଗଛ ମୂଳେ ବସିଲା । ଲୋକେ ପାଣି ଦେଖି ସେ ଗଛମୂଳେ ବୋଝ ଓହ୍ଲାଇ ଦାସଙ୍କୁ ପାଣି ମାଗିବାରୁ ଦାସେ ଗଣ୍ଡିଏ ଗଣ୍ଡିଏ ବୁଟ ଚୂନା ଖାଇବାକୁ ଦେଇ ମୁନ୍ଦିଏ ଲେଖେଁ ପାଣି ପିଇବାକୁ ଦେଲେ । ଲୋକ ତାଙ୍କଠାଇଁ ସନ୍ତୁଷ୍ଟ ହୋଇ ଗଲାବେଳକୁ ପ୍ରତି ବୋଝରୁ ଖଣ୍ଡିଏ ଖଣ୍ଡିଏ କାଠ ଦେଇଗଲେ । ଦାସେ ସନ୍ଧ୍ୟା ବେଳକୁ ସେତକ କାଠ ବଜାରରେ ବିକି କିଛି ପଇସାର ଛତୁଆ କିଣି ନେଇ ତା' ଆରଦିନ ସେହିପରି ସେ ବରଗଛ ମୂଳରେ ବସିଲେ । ସେଦିନ ସେ ଲୋକଙ୍କୁ ଆରଦିନ ଠଉଁ ଟିକିଏ ବେଶି ବେଶି ଛତୁଆ ଦେଇ ପାଣି ପିଇବାକୁ ଦେଲେ । କାଠ ବୋଝିଆଙ୍କର ତାଙ୍କଠାଇଁ ମହାସନ୍ତୋଷ ହେଲା । ସେମାନେ ସେଦିନ ସବୁ ଗୋଛାରୁ ଦି' ଦି' ଖଣ୍ଡି କାଠ ଦେଇଗଲେ । ଦାସେ ପୁଣି ସେ କାଠତକ ବଜାରରେ ବିକି ଛତୁଆ କିଣି ତା' ଆରଦିନ ସେହିପରି ମାଠିଏ ପାଣି ଘେନି ସେ ଗଛମୂଳେ ବସିଲେ । ଆରଦିନ ପରି ମଧ୍ୟ ବୋଝିଆଙ୍କ ଠଉଁ ଯାହା କାଠ ପାଇବାର ପାଇଲେ, ପଇସା ଦେଇ ମଧ୍ୟ କିଛି କାଠ କିଣିଲେ । ଏ ଦିନ ଆରଦିନଠାରୁ ବେଶି କାଠ ହେଲା । ଦାସେ ଏହିପରି କିଛିଦିନ କାଠ ସଂଗ୍ରହ କରି ବଜାରରେ ବିକନ୍ତି, ପୁଣି କିଣନ୍ତି । ଯେତେବେଳେ ତାଙ୍କ ହାତରେ ବେଶି ପଇସା ହେଲା, ସେତେବେଳେ ଆଉ କାଠ ନ ବିକି ଜମାଇ ରଖିଲେ । ବାଟରୁ କାଠତକ ଦାସେ ରଖି ନେବାରୁ ବଜାରକୁ ବେଶି କାଠ ଆସିଲା ନାହିଁ । ସେଥିଯୋଗୁଁ କାଠ ମହର୍ଗ ହେଲା । ଯେତେବେଳେ ଚତୁର୍ମାସ୍ୟା ଝଡ଼ି ବର୍ଷା,

ସେତେବେଳେ ବଜାରରେ କାଠ ନାହିଁ । ଦାସେ ପର୍ବତ ପ୍ରମାଣେ କାଠ ସଞ୍ଚିକରି ରଖିଛନ୍ତି । ଲୋକେ କାଠ ବୋଲି ପିମ୍ପୁଡ଼ି ଧାଡ଼ିପରି ତାଙ୍କ ପାଖକୁ ଧାଇଁଲେ । ଦାସେ ମହର୍ଗ ଦରରେ କାଠତକ ସବୁ ବିକ୍ରି କରି ବହୁତ ପଇସା ଲାଭ କଲେ । ତା'ପରେ ସେ ଆଉ ଅନ୍ୟ ପ୍ରକାର ଦୋକାନ କଲେ । ସେଥିରେ ତାଙ୍କର ବେଶ୍ ଲାଭ ହେଲା । ଏହିପରି କ୍ରମେ ବେଶି ପଇସା ହେବାରୁ ସେ ବୋଇତରେ ବଣିଜ କଲେ । ପଛକୁ ସେ କରୋଡ଼ପତି ହେଲେ । ତହୁଁ ଦିନେ ଗୋଟିଏ ସୁନାମୂଷା ତିଆରି କରାଇ ସେଇଟି ନିଜେ ଧରି ବନ୍ଧୁଦାସଙ୍କ ଘରକୁ ଗଲେ । ସୁଖଦାସ ବନ୍ଧୁଦାସଙ୍କୁ କହିଲେ, ମୁଁ ଆପଣଙ୍କ ଋଣ ଶୁଝି ପାରିବି ନାହିଁ । ଆପଣଙ୍କ କଥା ଅନୁସାରେ ମୁଁ ମଲାମୂଷାଟିରେ ବେଭାର କରି ଆଜି ଲକ୍ଷପତି ହୋଇଅଛି । ମୁଁ ଖୁସି ହୋଇ ତାହା ବଦଳରେ ଆପଣଙ୍କୁ ଏ ସୁନାମୂଷାଟି ଭେଟୁଛି । ବନ୍ଧୁଦାସ ସୁଖଦାସଙ୍କ କଥା ଶୁଣି ଖୁସି ହୋଇ ତାଙ୍କୁ ବହୁତ କଲ୍ୟାଣ କଲେ । ସୁଖଦାସ ଘରକୁ ଫେରିଆସି ବହୁତ କର୍ମଚାରୀ ରଖି ବଣିଜ ଚଳାଇଲେ । ବହୁତ ଦାସଦାସୀ ରଖି ସୁଖରେ ରହିଲେ । ବହୁତ ଦାନ, ଖଇରାତ କରି ମଧ୍ୟ ଦେଶବିଦେଶରେ ନାମ କଲେ ।

ବାଣିଜ୍ୟ କଲେ ଅବଶ୍ୟ ଲକ୍ଷ୍ମୀ ମିଳେ ।

# ଧର୍ମର ଜୟ

ପୂର୍ବେ ଆକାଶପୁର ବୋଲି ଗୋଟିଏ ରାଜ୍ୟ ଥିଲା । ଧୂମକେତୁ ସିଂହ ନାମରେ ସେଥିରେ ଜଣେ ରାଜା ଥିଲେ । ଧୂମକେତୁ ପିଲାଦିନରୁ ଭାରି ଦୁଷ୍ଟ, ଆଉ ନିଦା ମୂର୍ଖ ଥିଲେ । ତାଙ୍କୁ ପାଠ ପଢ଼ାଇବା ପାଇଁ ବାପା ଖୁବ୍ ଲାଗିଲେ; ମାତ୍ର ସେ ଦୁଷ୍ଟ ପିଲାଙ୍କ ମେଳରେ ପଡ଼ି ପାଠ ନ ପଢ଼ି ପିଲାଦିନଟା କଟାଇ ଦେଲେ । ଯେ ପିଲାଦିନେ ବାପ ମାଆଙ୍କ କଥା ନ ମାନି ପାଠ ନ ପଢ଼େ, ସେ କ'ଣ ଆଉ ଭଲ ମଣିଷ ହୁଏ ? ପାଠ ନ ପଢ଼ି ଧୂମକେତୁ ରଜା ହେଲାବେଳକୁ ଗଣ୍ଡମୂର୍ଖ । ସେଥିକି ଚାହିଁ ପାତ୍ରମନ୍ତ୍ରୀ ମିଳିଥା'ନ୍ତି ମହାମୂର୍ଖ । ସେଠାକୁ କେଉଁ ପଣ୍ଡିତେ କାହିଁକି ଯିବେ ?

ସେ ରାଜ୍ୟରେ ଜ୍ଞାନାନନ୍ଦ ନାମରେ ଜଣେ ବଡ଼ ପଣ୍ଡିତ ଥିଲେ । ଜ୍ଞାନାନନ୍ଦ ସବୁଶାସ୍ତ୍ର ଜାଣନ୍ତି । ହେଲେ କ'ଣ ହେବ, ରାଜ୍ୟ ରାଜା ମୂର୍ଖ, ପ୍ରଜାମାନେ ମୂର୍ଖ, ଯାଙ୍କୁ ପଚାରୁଛି କିଏ ? ଏଣେ ରଜା ଘରକୁ ଯିବାର ନାହିଁ, କି ନିଜର ଜମିବାଡ଼ି, ଟଙ୍କା କଉଡ଼ି ବେଶିନାହିଁ । ତେଣୁ ପଣ୍ଡିତେ ଦୁଃଖେ ସୁଖେ ଶାଗ ପେଜ ଖାଇ ପାଠଶାସ୍ତ୍ର ଚର୍ଚ୍ଚା କରି ଦିନ କଟାଉଥା'ନ୍ତି । ଦିନେ ଦିନେ ମଧ୍ୟ ଉପାସ ରହିଯା'ନ୍ତି । ପଣ୍ଡିତେ ଜ୍ଞାନବଳରେ ସିନା ଯା ସବୁ ସହିଯା'ନ୍ତି, ତାଙ୍କ ସ୍ତ୍ରୀ ସହି ପାରନ୍ତି ନାହିଁ । ସ୍ତ୍ରୀ କେତେଥର ପଣ୍ଡିତଙ୍କୁ କହିଲେ, ତୁମେ ତ ରଜା ପାଖକୁ ଗଲ ନାହିଁ, ଆମ ଦୁଃଖ ଯିବ କିମିତି ? ଯେ ପାଠଶାଠ ନ ଜାଣନ୍ତି ସେସବୁ ରଜା ପାଖକୁ ଯାଇ ମହା ଆନନ୍ଦରେ ଘର କରୁଛନ୍ତି, ତୁମେ ଏତେ ପାଠଶାଠ ଜାଣି କି କାମରେ ଲାଗିଲା ? ପଣ୍ଡିତେ କହନ୍ତି, ରଜା ତ ମୂର୍ଖ, ତା' ପାଖକୁ ଯାଇ କ'ଣ ହେବ । ପଛକୁ ଅପମାନ ମିଳିବ ସିନା ? ଏହିପରି କେତେଦିନ ଗଲା ଉତ୍ତାରୁ ଦିନେ ପଣ୍ଡିତ ଆଉ ତାଙ୍କ ସ୍ତ୍ରୀ ଖାଇବାକୁ ନ ପାଇ ଠୋ ଠୋ ଉପବାସ

ରହିଗଲେ । ସେଦିନ ରାତିରେ ତାଙ୍କ ସ୍ତ୍ରୀ ଖାଇବାକୁ ନ ପାଇ ଠୋ ଠୋ ଉପବାସ ରହିଗଲେ । ସେଦିନ ରାତିରେ ତାଙ୍କ ସ୍ତ୍ରୀ ତାଙ୍କୁ କହୁଥା'ନ୍ତି, ତୁମେ ତ ରଜାଙ୍କ ପାଖ ମାଡ଼ିଲ ନାହିଁ, ରଜାଙ୍କୁ ପଦେ ହେଲେ କଥା ମୁହଁ ଫିଟାଇ କହିଲ ନାହିଁ, ଲୋକେ କହନ୍ତି ମୁଖ ଫିଟିଲେ ଦୁଃଖ ଯାଏ, ଆମ ଦୁଃଖ କିମିତି ଯିବ ? ପଣ୍ଡିତଙ୍କ ଘରେ ଏଇ କଥା ପଡ଼ିଥିବାବେଳେ ରଜା ତାଙ୍କ ଦୁଆରକବାଟ ଦେଇ ବୁଲି ବିଜେ କରିଥିଲେ । ପଣ୍ଡିତିଆଣୀ ତଥା ତାଙ୍କ କାନରେ ପଡ଼ିବାରୁ ଭାବିଲେ, କ'ଣ, ଆମକୁ କଥା କହିଲେ ଦୁଃଖ ଯିବ । ଆଚ୍ଛା କାଲି ଏ କଥାର ବନ୍ଦୋବସ୍ତ କରିବା । ରଜା ତହିଁ ଆରଦିନ ସକାଳୁ ପଣ୍ଡିତଙ୍କୁ ଡକାଇ ହୁକୁମ କଲେ, ଦେଖ ପଣ୍ଡିତେ, ତୁମେ ପ୍ରତିଦିନ ଆମ ନଅରକୁ ଆସି ଆମ କାନରେ ପଦେ କଥା କହି ଯାଉଥିବ । ଆମେ ଯାହା କରୁଥାଉ ପଛକେ ସେଥିକି ଡରିବ ନାହିଁ । ପଣ୍ଡିତେ ରଜାଙ୍କର ଏ ହୁକୁମ ଶୁଣି ତାଟକା ହେଲେ । ରଜା କାହିଁକି ଏପରି ହୁକୁମ କଲେ ଜାଣି ପାରିଲେ ନାହିଁ । ଶେଷକୁ ହଉ ଆଜ୍ଞା କହି ଘରକୁ ଫେରିଲେ । ପଣ୍ଡିତେ ଆସୁ ଆସୁ ବାଟରେ ବିଚାରିଲେ – ଏ ତ ବଡ଼ ବିପଦର କଥା, ମୁଁ ଏବେ ରଜାଙ୍କୁ ପ୍ରତିଦିନ ପଦଟିଏ କ'ଣ କହିବି । ଭାବି ଭାବି ଠିକ୍ କଲେ ଆଚ୍ଛା, "ଧର୍ମୋ ରକ୍ଷତି ଧାର୍ମିକମ୍" – ଧର୍ମ ଧାର୍ମିକକୁ ରକ୍ଷା କରେ ଏଇ କଥାଟି କହିବି । ତହିଁ ଆରଦିନ ଠାରୁ ପଣ୍ଡିତେ ପ୍ରତିଦିନ ରଜା ଘରକୁ ଯାଇ ରଜାଙ୍କ କାନପାଖରେ ମୁହଁ ଲଗାଇ "ଧର୍ମୋ ରକ୍ଷତି ଧାର୍ମିକମ୍" – ଧର୍ମ ଧାର୍ମିକକୁ ରକ୍ଷା କରେ ଏଇ କଥାଟି କହିବି । ତହିଁ ଆରଦିନ ଠାରୁ ପଣ୍ଡିତେ ପ୍ରତିଦିନ ରଜା ଘରକୁ ଯାଇ ରଜାଙ୍କ କାନପାଖରେ ମୁହଁ ଲଗାଇ 'ଧର୍ମୋ ରକ୍ଷତି ଧାର୍ମିକମ୍' ବୋଲି ତୁନି କରି କହି ଆସନ୍ତି । ଏହିପରି ପ୍ରତିଦିନ ହେବାରୁ ଲୋକେ ଭାବିଲେ ଏ ପଣ୍ଡିତ ଠଉଁ ବଳି ରଜାଙ୍କର ପ୍ରିୟଲୋକ ଆଉ କେହି ନାହିଁ । ରଜାଙ୍କ ମୁହଁରେ ମୁହଁ ଲଗାଇ କଥା କହିବା କ'ଣ ସହଜ କଥା । ଏଥିରୁ ସବୁ ପ୍ରଜା ବୁଝିଲେ ଯେ ଜ୍ଞାନାନନ୍ଦ ପଣ୍ଡିତ ରଜାଙ୍କର ଭାରି ବିଶ୍ୱାସୀ । ତେଣିକି ରଜାଙ୍କ ପାଖରେ ଯାହାର କାମ ପଡ଼ିଲା, ସେ ତାହା ତୁଟାଇବା ପାଇଁ ପଣ୍ଡିତଙ୍କ ପଛେ ପଛେ ଗୋଡ଼ାଇଲା । ପଣ୍ଡିତେ ଲୋକଙ୍କର ଏପରି ବିଶ୍ୱାସ ଦେଖି ଜଣ ଜଣ କରି କହିଲେ – ନାହିଁ ହେ

ମୁଁ ରଜାଙ୍କର ସେପରି ବିଶ୍ୱାସୀ ନୁହେଁ, କି ତୁମ କାମ ମୋ କଥାରେ ତୁଟି ପାରିବ ନାହିଁ, ବୃଥାରେ ମୋତେ କାହିଁକି ଆଶା କରୁଛ । ପଣ୍ଡିତେ ଯାହାକୁ ଯେତେ ବୁଝାଇଲେ ସୁଦ୍ଧା ନ ବୁଝେ । ରାତି ପାହିଲା ବେଳକୁ ପଣ୍ଡିତଙ୍କ ଦୁଆରେ ଶହ ଶହ ଲୋକ ଜମା ହୁଅନ୍ତି । ସେ କୁଆଡ଼େ ଗଲେ, ତାଙ୍କ ପଛେ ପଛେ ଶହ ଶହ ଲୋକ ଗୋଡ଼ାଉଥା'ନ୍ତି ।

ଖଣ୍ଡପାଳ ବୋଲି ରଜାଙ୍କର ଜଣେ ଅସଲ ସାଙ୍ଗ ଥିଲା । ସବୁ ମନ୍ଦ କାର୍ଯ୍ୟରେ ସେ ରଜାଙ୍କୁ ମନ୍ତ୍ରଣା ଦିଏ । ସେ ବିଚାରେ ଯେ ରାଜ୍ୟ ମଧ୍ୟରେ ମୋ ଠାରୁ ଆଉ କେହି ବଡ଼ ନାହିଁ, ମୁଁ ଯାହା କରିବି, ସେୟା ହବ । ତା' ମନରେ ଭାରି ଗର୍ବ । ସେ ଦେଖିଲା ଯେ ରାତିଦିନ ଜ୍ଞାନାନନ୍ଦ ପଛେ ପଛେ ଶହ ଶହ ଲୋକ ଅନୁସରିଛନ୍ତି । ତା' ଦେହରେ ଏ କଥା ଗଲା ନାହିଁ । ସେ ଭାବିଲା ଛନ୍ଦ କପଟ କରି ଏ ପଣ୍ଡିତଟାକୁ ମାରି ନ ଦେଲେ ଏ ପଣ୍ଡିତ ବଢ଼ିଆ ହୋଇଯିବ । ଏଇ କଥା ଭାବି ଗୋଟିଏ ଉପାୟ ପାଞ୍ଚିଲା । ରଜା ମହାରାଜା, ବଡ଼ଲୋକଙ୍କୁ କଥା କହିଲାବେଳେ କାଳେ ଛେପ ପଡ଼ିବ, କି ମୁହଁ ଗନ୍ଧାଇବ ଏଥିପାଇଁ ଲୋକେ ମୁହଁରେ ଲୁଗା ଦେଇ କଥା କହନ୍ତି । ଖଣ୍ଡପାଳ ଏଇ କଥାକୁ ଧରି ରଜାଙ୍କୁ ବୁଝାଇଲା, ମଣିମା ! ଯେଉଁ ପଣ୍ଡିତ ଛାମୁଙ୍କ ଶ୍ରୀମୁଖ ପାଖରେ ମୁହଁ ରଖି କଥା କହେ, ସେ କହୁଥିଲା ଛାମୁଙ୍କ କାନ ଏପରି ଦୁର୍ଗନ୍ଧ କରେ ଯେ ତାଙ୍କ ପାଖରୁ ଆସୁ ଆସୁ ବାଟ ଅଣ୍ଟେ ନାହିଁ । ମୁଁ ମୁହଁରେ ଲୁଗା ଦେଲେ କ'ଣ ହେବ, ଲୁଗା ଫୁଟାଇ ସେ ଗନ୍ଧ ନାକ ବାଟ ଦେଇ ପେଟ ଭିତରେ ପଶିଯାଏ । ରାମ, ରାମ, ମଣିଷ କାନ ପୁଣି ଏମିତି ଗନ୍ଧ କରେ ?

ରଜା ଖଣ୍ଡପାଳ କଥା ଶୁଣି ରାଗରେ ଗୋଟାକ ସାତଟା ହୋଇ କହିଲେ, କେମନ୍ତ, ଆମ କାନ ପୁଣି ଗନ୍ଧାଉଛି । ତାକୁ ଆମେ କାନ ପାଖରେ କଥା କହିବାକୁ ଅଧିକାର ଦେଲୁ, ସେ ପୁଣି ଆମକୁ ନିନ୍ଦା କଲା । ଆଚ୍ଛା ହେଉ ହେଉ, ସେ ପଣ୍ଡିତର କରାମତି କେତେ, ଦେଖିବା । ଖଣ୍ଡପାଳ ରଜାଙ୍କ ରାଗ ଦେଖି ମନେ ମନେ ଖୁସି ହୋଇ ଘରକୁ ଫେରିଲା । ରଜା ତ ମୂର୍ଖ, ସେ କଥା ସତ ମିଛ ନ ବୁଝି ପଣ୍ଡିତ କିମିତି ହାଣ ଖାଇବ, ଏ ବିଷୟରେ ଫାନ୍ଦ ଫାନ୍ଦିଲେ ।

ତହୁଁ ଆରଦିନ ପଣ୍ଡିତେ ଠିକଣା ସମୟରେ ରଜାଙ୍କ କାନରେ ପୂର୍ବପରି "ଧର୍ମୋ ରକ୍ଷତି ଧାର୍ମିକଂ" କହି ବିଦାୟ ହେଲାବେଳକୁ ରଜା ଆପଣା ବେକରୁ ଗୋଟିଏ ମଲ୍ଲୀମାଳ କାଢ଼ି ପଣ୍ଡିତଙ୍କ ବେକରେ ଲମ୍ବାଇ ଦେଲେ । ବେକରେ ସେ ମାଳ ସେହିପରି ପଡ଼ିଥାଏ, ପଣ୍ଡିତେ ଘରକୁ ବାହାରିଲେ । ତେଣେ ଖଣ୍ଡପାଳ ପଣ୍ଡିତଙ୍କୁ ଚାହିଁ ବସିଥାଏ । ସେ ବିଚାରିଥିଲା ପଣ୍ଡିତଙ୍କୁ ଭାରି ଦଣ୍ଡ ହେବବୋଲି । ଦେଖେତ ପଣ୍ଡିତେ ମାଳେ ମଲ୍ଲୀଫୁଲ ଲମ୍ବାଇ ଖୁସି ହୋଇ ଫେରୁଛନ୍ତି । ସେଥିରେ ତା' ମୁହଁ ଶୁଖିଗଲା । ତା'ପରେ ପଣ୍ଡିତଙ୍କ ପାଖକୁ ଯାଇ କହିଲା କିଏ ମିତ, ଆଜି ତ ତମଠାଇଁ ରଜାଙ୍କ ଭାରି ଅନୁଗ୍ରହ ? ପଣ୍ଡିତମାନେ ତ ବିନୟୀ ଲୋକ । ସେ ଯହୁଁ ଖଣ୍ଡପାଳଠାରୁ ଏହା ଶୁଣିଲେ, ତହୁଁ କହିଲେ ମିତ । ଏସବୁ ଅନୁଗ୍ରହ ତୁମ୍ଭରିମାନଙ୍କ ଯୋଗୁଁ ସିନା ? ଏ ମାଳ ତୁମେ ଘେନିବା ଭଲ । ଏହା କହି ଆପଣା ବେକରୁ ମାଳଟି କାଢ଼ି ଖଣ୍ଡପାଳ ବେକରେ ଲମ୍ବାଇ ଦେଇ ପଣ୍ଡିତେ ଘରକୁ ଚାଲିଗଲେ । ଖଣ୍ଡପାଳ ମଲ୍ଲୀମାଳ ଲମ୍ବାଇ ଦାଣ୍ଡରେ ଟହଲ ମାରୁଥାଏ ।

ତେଣେ ରଜା କଟୁଆଳକୁ ଡକାଇ ହୁକୁମ ଦେଲେ ଦେଖ୍ କଟୁଆଳ, ତୁ ବର୍ତ୍ତମାନ ଖଣ୍ଡା ନେଇ ଯିବୁ, ଦେଖିବୁ, ଯାହା ବେକରେ ମଲ୍ଲୀମାଳ ପଡ଼ିଛି, ତାକୁ କିଛି ନ କହି ତା' ମୁଣ୍ଡ କାଟିଆଣି ଆମ ପାଖରେ ଦାଖଲ କରିବୁ । କଟୁଆଳ ରଜାଙ୍କ ହୁକୁମମତେ ଯାଇ ଦାଣ୍ଡରେ ଦେଖେ ତ ଖଣ୍ଡପାଳ ମଲ୍ଲୀମାଳ ଲମ୍ବାଇ ଟହଲୁଚି । ତାକୁ କିଛି ନ କହି ଚଟ୍‌କରି ଏକା ଚୋଟକେ ତା' ମୁଣ୍ଡ କାଟି ସାଙ୍ଗେ ସାଙ୍ଗେ ରଜାଙ୍କ ଛାମୁରେ ଦାଖଲ କଲା । ରଜା ଦେଖନ୍ତି ତ ମୁଣ୍ଡଟି ଜ୍ଞାନାନନ୍ଦ ପଣ୍ଡିତର ନୁହେଁ, ନିଜର ସାଙ୍ଗ ଖଣ୍ଡପାଳର । ତହୁଁ ସେ କଟୁଆଳକୁ ଡାକି ପଚାରିଲେ, କିରେ ତୁ ଖଣ୍ଡପାଳ ମୁଣ୍ଡ କାହିଁକି ହାଣିଲୁ ? କଟୁଆଳ କହିଲା – ମଣିମା ! ଛାମୁଙ୍କ ହୁକୁମ ଅନୁସାରେ ମୁଁ କାମ କରିଛି । ଏଥିରେ ରଜା କାବା ହୋଇ ଜ୍ଞାନାନନ୍ଦ ପଣ୍ଡିତଙ୍କୁ ଡକାଇ ତଥ୍ୟ ବୁଝିଲେ । ଜ୍ଞାନାନନ୍ଦ ଯେପରି ଭାବରେ ମଲ୍ଲୀମାଳ ଖଣ୍ଡପାଳକୁ ଦେଇଥିଲେ, ସେ ସମସ୍ତ ରଜାଙ୍କ ଛାମୁରେ ଜଣାଇଲେ । ରଜା ସେଥିରେ ପଣ୍ଡିତଙ୍କର କିଛି ଦୋଷ ନ ପାଇ ପଚାରିଲେ, ଆଚ୍ଛା ତୁମକୁ

ଆମ କାନ ଗନ୍ଧ କରେ ବୋଲି ତୁମେ କାହାକୁ ଭଲା କହିଥିଲ ? ପଣ୍ଡିତେ ଏହା ଶୁଣି ତାଟକା ହୋଇ କହିଲେ, ରାମ ରାମ, ମୁଁ ଦିନେ ହେଲେ ଗନ୍ଧ ପାଇନାହିଁ, କି, ଭାବିନାହିଁ, କହିଲି କାହାକୁ ? ତା'ପରେ ରଜା ପଚାରିଲେ, ତେବେ କଥା କହିଲାବେଳେ ତୁମେ ମୁହଁରେ ଲୁଗା ଦିଅ କାହିଁକି ? ପଣ୍ଡିତେ କହିଲେ, ମଣିମା ! ଆପଣମାନେ ବଡ଼ଲୋକ କଥା କହୁ କହୁ କାଳେ ମୋ ମୁହଁ ଗନ୍ଧାଇବ, କି ଛେପ ପଡ଼ିବ, ସେଥିପାଇଁ ମୁଁ ମୁହଁରେ ଲୁଗା ଦେଇ କଥା କହେ । ଭଦ୍ରଲୋକମାନେ ଏହିପରି ରୀତିରେ କଥା କହନ୍ତି ।

ରଜା ଏହାଶୁଣି ଟିକିଏ ତୁନି ହୋଇ ରହି କହିଲେ, ପଣ୍ଡିତେ ତୁମେ ଯାହା କହ "ଧର୍ମୋ ରକ୍ଷତି ଧାର୍ମିକଂ", ସେ ଠିକ୍ ସତ । ଖଣ୍ଡପାଳ ତୁମ ନାମରେ ମିଛ କହି ନିଜେ ହାଣ ଖାଇ ମଲା । ତୁମେ ଧର୍ମରେ ଥିବାରୁ ତୁମର କିଛି ହେଲାନାହିଁ । ଏବେ ତୁମେ ପ୍ରତିଦିନ ରାଜ ଦରବାରକୁ ଆସି ସବୁ ବିଷୟରେ ପରାମର୍ଶ ଦିଅ । ତୁମରି କଥା ଅନୁସାରେ ରାଜ୍ୟ ଚଳାଇବାକୁ ହେବ ।

ସେହିଦିନଠାରୁ ପଣ୍ଡିତଙ୍କ କଥା ଅନୁସାରେ ରାଜ୍ୟ ଚଳିଲା । ମୂର୍ଖଯାକ ତଡ଼ା ଘଉଡ଼ା ଖାଇଲେ । ପ୍ରଜାମାନେ ସୁଖରେ ରହିଲେ । ଦେଶ ବିଦେଶରେ ରଜାଙ୍କ ନାମ ବିଖ୍ୟାତ ହେଲା । ପଣ୍ଡିତେ ଘରଦ୍ୱାର ଜମିବାଡ଼ି କରି ଦାସଦାସୀ ରଖି ସୁଖରେ ରହିଲେ ।

# ଅତି ଲୋଭୀ ରାଜା

ଗୋଟିଏ ଦେଶରେ ଜଣେ ରାଜା ଥିଲେ । ସେ ପୁଅମାନଙ୍କ ଖେଳିବାପାଇଁ କେତେଗୁଡ଼ିଏ ମାଙ୍କଡ଼ ରଖିଥିଲେ । ପୁଅମାନେ ମାଙ୍କଡ଼ମାନଙ୍କୁ ପ୍ରତିଦିନ ବହୁତ ଭଲ ଭଲ ଜିନିଷ ଖାଇବାକୁ ଦିଅନ୍ତି । ମାଙ୍କଡ଼ଙ୍କ ଭିତରୁ ବୁଢ଼ା ମାଙ୍କଡ଼ଟି ବହୁତ ନୀତି ଶାସ୍ତ୍ର ପଢ଼ିଥିଲା । ସେହି ଶାସ୍ତ୍ର ବଳରେ ସେ ସବୁକଥା ବୁଝି ବିଚାରି କରୁଥାଏ । ରଜାଙ୍କ ଛୋଟ ପୁଅମାନେ ଚଢ଼ିବା ପାଇଁ ନଅରରେ ଗୋଠେ ମେଣ୍ଢା ରଖା ହୋଇଥା'ନ୍ତି । ସେଥିଭିତରୁ ଗୋଟେ ମେଣ୍ଢା ଭାରି ଓଲିଆ । ସେ ସବୁବେଳେ ରଜାଙ୍କ ରୋଷେଇ ଘରେ ପଶି ଡାଲି, ପରିବା, ଚାଉଳ ଯାହାକିଛି ପାଏ ସବୁ ଖାଏ । ମେଣ୍ଢା ରୋଷେଇ ଘରେ ପଶିଲାବେଳେ କଂସା ହେଉ, ଲୋଟା ହେଉ, କାଠ ହେଉ, ପନିକି ହେଉ, ଯାହାକିଛି ହାବୁଡ଼େ ପଡ଼େ, ସୁଆରମାନେ ସେଥିରେ ତାକୁ ବାଡ଼େଇଥା'ନ୍ତି । ବୁଢ଼ା ମାଙ୍କଡ଼ ଏହା ଦେଖି ଦେଖି ଦିନେ ଭାବିଲା ଏ ମେଣ୍ଢା-ସୁଆର କଳିରେ ପଛକୁ ମୋର ବଂଶ ବୁଡ଼ିବ । କାହିଁକି ନା ଏ ମେଣ୍ଢା ଯେତେ ମାଡ଼ ଖାଇଲେ ସୁଦ୍ଧା ରୋଷଘର ଛାଡୁନାହିଁ । ଦିନେ ଯେବେ ସୁଆରମାନେ ମାରିବାକୁ ଆଉ କିଛି ନ ପାଇ ନିଆଁ ଖୁଣ୍ଟାରେ ମେଣ୍ଢାକୁ ମାରନ୍ତି, ତେବେ ଯା ଦେହରେ ଯେପରି ଗହଳ ରୋମ, ସେଥିରେ କି ଆଉ ସମ୍ଭଳା ପଡ଼ିବ ? ମେଣ୍ଢା ଦେହ ଯହୁଁ ହୁତୁହୁତୁ ଜଳିବ; ତହୁଁ ସେ ବିଚରା ଜୀବନ କଲବଲରେ ଦୌଡ଼ିଯାଇ ଘୋଡ଼ାଶାଳରେ ପଶିବ । ଘୋଡ଼ାଶାଳରେ ଛଣ କୁଟା ବହୁତ ଜମା ହୋଇଛି । ସେଥିରେ ଯହୁଁ ଗଡ଼େଇ ତଡ଼େଇ ହେବ, ତହୁଁ ଘୋଡ଼ାଶାଳରେ ନିଆଁ ଲାଗିବ । ତହୁଁ

ଘୋଡ଼ାଯାକ ପୋଡ଼ି ଘାଉଆ ହେବେ । ଘୋଡ଼ା ପୋଡ଼ି ହୋଇଗଲେ ତ ରଜା ନିଶ୍ଚେ ଔଷଧ କରିବେ । ଘୋଡ଼ାଙ୍କ ପୋଡ଼ା ଘାଆକୁ ତ ଔଷଧ ମାଙ୍କଡ଼ଙ୍କ ମେଦ । ବୈଦ୍ୟ କବିରାଜ ତ ଏଇ ଔଷଧ ବରାଦ କରିବେ । ସେତେବେଳେ ରଜା ମୋ ବଂଶଯାକ ମରାଇବେ । ଏକଥା ଯେବେ ନିଶ୍ଚେ ହେବ, ତେବେ ଆଗରୁ ସମସ୍ତେ ପଳାଇବା ଭଲ । ବୁଢ଼ା ଏଇକଥା ଠିକଣା କରି ଆଉସବୁ ମାଙ୍କଡ଼କୁ ଡାକି ଯାହା ଯାହା ଭାବିଥିଲା, ତାହା ସବୁ କହିଲା । ମାଙ୍କଡ଼ମାନେ ବୁଢ଼ା କଥା ଶୁଣି ତାକୁ ହସରେ ଉଡ଼ାଇ ଦେଇ କହିଲେ, ତୁମେ ବୁଢ଼ା ହେଲଣି, ତୁମ ମତିର ଠିକଣା ନାହିଁ । ଆମେ ତୁମରି କଥାରେ ପଡ଼ି ଭଲ ଭଲ ଖାଇବା ପିଇବା ଛାଡ଼ି କଷା, ଆମ୍ବିଳ, ପିତା ଫଳମୂଳ ଖାଇବାକୁ ବଣକୁ ଯିବୁ ? ଯା ହୋଇ ପାରିବ ନାହିଁ । ତୁମର ଯେବେ ଭୟ ହେଉଛି, ତେବେ ତୁମେ ଯାଅ, ଆମେ କେହି ଯିବୁନାହିଁ । ବୁଢ଼ା ଯାହାକୁ ଯେତେ ବୁଝେଇଲା, କେହି କିଛି ବୁଝିଲେ ନାହିଁ । ବୁଢ଼ା ଭାବିଲା ଯେ ଏମାନେ ତ କିଛି ବୁଝିଲେ ନାହିଁ । ଯେ ରହିଲେ, ମୁଁ କିଆଁ ଯାଙ୍କ ସାଙ୍ଗେ ରହିବି ? ଏଠାରେ ରହିଲେ ବଂଶ କୁଟୁମ୍ବଙ୍କ ମରଣ ଦେଖି ମହାଦୁଃଖ ଭୋଗିବି ସିନା । ଏହା ଭାବି ବୁଢ଼ା ବଣକୁ ଚାଲିଗଲା ।

ବୁଢ଼ା ଯେଉଁଦିନ ବଣକୁ ଗଲା, ଠିକ୍ ସେହିଦିନ ରାତିରେ ମେଣ୍ଢା ରୋଷଘରେ ପଶିବାରୁ ଜଣେ ସୁଆର ତାକୁ ଗୋଟେ ନିଆଁଖୁଣ୍ଟାରେ ଦୁଇ ତିନି ପାହାର ଲଗାଇଲା । ମେଣ୍ଢା ଦେହରେ ନିଆଁ ବାଜିବାରେ ରୁମଯାକ ହୁତୁହୁତୁ ହୋଇ ଜଳିଲା । ବିଚରା କଲବଲ ହୋଇ ରଡ଼ିରଡ଼ି ଦୌଡ଼ିକରି ଯାଇ ଘୋଡ଼ାଶାଳ ଛଣକୁଟାରେ ଗଡ଼ିଲା । ସେଥିରେ ଘୋଡ଼ାଶାଳରେ ନିଆଁ ଲାଗିଲା । ଘୋଡ଼ାସବୁ ବନ୍ଧା ହୋଇଥିଲେ । ସେ ଘରପୋଡ଼ିରେ କାହାର ଆଖି ଫୁଟିଗଲା, କାହାର ଦେହ ଅଧେ ପୋଡ଼ିଗଲା । ଏପରି ହୋଇ ଘୋଡ଼ାଯାକ ଦୌଡ଼ି ଛିଣ୍ଡାଇ ଏଆଡ଼େ ସେଆଡ଼େ ଦୌଡ଼ିଲେ । ରଜା ଏ କାଣ୍ଡ ଦେଖି ଭାରି ଦୁଃଖିତ ହେଲେ । ଘୋଡ଼ାସବୁ କିପରି ଭଲ ହେବେ, ରାତିଦିନ ରଜାଙ୍କର ଏଇ ଚିନ୍ତା ହେଲା । ବହୁତ ଅଶ୍ୱଚିକିତ୍ସକ ଡକାହେଲେ । ସେମାନେ ସମସ୍ତେ କହିଲେ, ଘୋଡ଼ାଙ୍କର ପୋଡ଼ାଘା'କୁ

ମାଙ୍କଡ଼ ମେଦ ପ୍ରଧାନ ଔଷଧ । ରଜା ଏ କଥା ଶୁଣି ତାଙ୍କ ନଅରରେ ଯେତକ ପୋଷାମାଙ୍କଡ଼ ଥିଲେ, ସେ ସମସ୍ତଙ୍କୁ ମାରିବାକୁ ହୁକୁମ ଦେଲେ । ରଜାଙ୍କ ହୁକୁମରେ ମେଦପାଇଁ ସବୁ ମାଙ୍କଡ଼ ମରିଗଲେ । ବୁଢ଼ା ମାଙ୍କଡ଼ ଏ ଖବର ପାଇ ଭାରି ଦୁଃଖିତ ହେଲା । ଏ ରଜା ମୋ ବଂଶଯାକ ମାଇଲା, ମୁଁ କିମିତି ଏହା ବଂଶଯାକ ମାରି ଶତ୍ରୁପଣ ଶୁଝାଇବି, ଏହାବୋଲି ମନେ ମନେ ଭାରି ରାଗ ରଖିଲା । ମାଙ୍କଡ଼ ବଣରେ ଥାଏ । ଦିନେ ତାକୁ ଶୋଷ ହେବାରୁ ସେ ପାଣି ଖୋଜିଲା । ପାଖରେ ଦେଖେ ତ ଗୋଟେ ପଦ୍ମ ପୋଖରୀ ଅଛି । ସେ ତହୁଁ ସେ ପୋଖରୀ ପାଖକୁ ଗଲା । ମାଙ୍କଡ଼ ତ ନୀତିଶାସ୍ତ୍ରରେ ପଣ୍ଡିତ, ସବୁକଥା ବୁଝି ବିଚାରି କରେ । ଯେତେବେଳେ ପୋଖରୀ ପାଖକୁ ଗଲା, ଦେଖିଲା ଯେ ମଣିଷ ହୁଅନ୍ତୁ ଅବା ଆଉ ଯେ ସବୁ ଜୀବ ହୁଅନ୍ତୁ, ସେ ସବୁ ପାଣି ପିଇବାକୁ ପୋଖରୀକୁ ଯାଇଛନ୍ତି, ତାଙ୍କର ଯିବା ପାଦଚିହ୍ନ ପଡ଼ିଚି, ଫେରିବା ପାଦଚିହ୍ନ ତ ନାହିଁ । ତେବେ ନିଶ୍ଚେ ପୋଖରୀ ଭିତରେ କୁମ୍ଭୀର ଅଛି । ଯେ ପାଣି ପିଇବାକୁ ଯାଉଚି ସେ ତାକୁ ଖାଉଚି । ମୁଁ ଆଉ ପାଣି ଭିତରକୁ କିମିତି ଯିବି ? ଏହା ବୋଲି ଗୋଟେ ପଦ୍ମନାଡ଼ ଗୋଟାଇ ପୋଖରୀ ଉପରେ ବସି ନାଡ଼ର ଗୋଟାପାଖ ପାଣିରେ ବୁଡ଼ାଇ ଆରପାଖ ମୁହଁରେ ଦେଇ ପାଣି ଶୋଷି ପିଇଲା । ଏହାଦେଖି ବେକରେ ଗୋଟିଏ ରତ୍ନମାଳା ପକାଇ ପୋଖରୀ ଭିତରୁ ଗୋଟେ ଅସୁର ବାହାରି ମାଙ୍କଡ଼କୁ କହିଲା, ଭାଇ ! ତୋତେ ଦେଖିଲି, ତୁ ଭାରି ଚାଲାକ୍ । ଯେତେ ଜୀବ ଏ ପୋଖରୀ କି ଆସିଥିଲେ, ମୁଁ ସମସ୍ତଙ୍କୁ ଖାଇଥିଲି; କିନ୍ତୁ ତୁ ଚାଲାକିରେ ମୋତେ ବର୍ଲିଗଲୁ । ତୋ ଉପରେ ମୁଁ ସନ୍ତୁଷ୍ଟ ହେଲି, କି ବର ମାଗୁଛୁ ମାଗ । ମାଙ୍କଡ଼ କହିଲା ତୁମେ କେତେ ଜୀବ ଖାଇପାର ? ଅସୁର କହିଲା ମୋତେ ହଜାର ହଜାର ଜୀବ ଦେଲେ ମୁଁ ଖାଇପାରେ । ତହୁଁ ମାଙ୍କଡ଼ କହିଲା ତୁମେ ଯଦି ତୁମର ଏଇ ରତ୍ନମାଳାଟି ମୋତେ ଦିଅନ୍ତ, ତେବେ ଜଣେ ରଜା ମୋର ଶତ୍ରୁ ଅଛି, ତାକୁ ମୁଁ ବଂଶ ସହିତ ଆଣି ଦିଅନ୍ତି । ଏହା ଶୁଣି ଅସୁର ଖୁସିହୋଇ ରତ୍ନମାଳାଟି ମାଙ୍କଡ଼କୁ ଦେଲା । ମାଙ୍କଡ଼ ସେ ମାଳାଟି ବେକରେ ପକାଇ ସେ ରଜାର ନଅର ଭିତରକୁ ଯାଇ ଏ ଗଛରୁ ସେ ଗଛ, ଏ ପକାରୁ ସେ

ପକା ଡେଇଁ ବୁଲୁଥାଏ । ଲୋକେ ମାଙ୍କଡ଼ ବେକରେ ବହୁମୂଲ୍ୟ ରତ୍ନମାଳା ଦେଖି ପଚାରିଲେ, କିରେ ! ତୁ ମାଳା କାହୁଁ ପାଇଲୁ ? ମାଙ୍କଡ଼କୁ ଯେ ଏକଥା ପଚାରିଲା, ସେ ତାକୁ କହିଲା ବନ ମଧ୍ୟରେ ଗୋଟିଏ ପୋଖରୀ ଅଛି, ରବିବାର ଦିନ ସୂର୍ଯ୍ୟୋଦୟ ହେଲାବେଳେ ଯେ ସେଥିରେ ସ୍ନାନ କରିବ, କୁବେର ତା' ବେକରେ ଏପରି ମାଳାଟିଏ ଲମ୍ବାଇ ଦେବେ । ଦିନେ ଦୈବାତ୍ ମୁଁ ସେହିପରି ସେ ପୋଖରୀରେ ସ୍ନାନ କରିବାରୁ କୁବେର ମୋତେ ଏ ମାଳାଟି ଦେଲେ । ଏକଥା ଲୋକେ ଶୁଣି ରଜାଙ୍କ ଆଗେ କହିଲେ । ରଜା ସେ ମାଙ୍କଡ଼କୁ ଡକାଇ ସମସ୍ତ ପଚାରି ବୁଝିନେଲେ । ମାଙ୍କଡ଼ ଦେଖିଲା ଯେ ରଜାଙ୍କର ମାଳରେ ଲୋଭ ହୋଇଛି । ତହୁଁ ସେ କହିଲା, ଆପଣ ଯେବେ ମାଳ ପାଇବାକୁ ଇଚ୍ଛା କରନ୍ତି, ତେବେ ମୋ ସାଙ୍ଗରେ ଚାଲନ୍ତୁ । ରବିବାର ଦିନ ସୂର୍ଯ୍ୟୋଦୟ ବେଳାରେ ସେ ପୋଖରୀରେ ସ୍ନାନ କଲେ ଏପରି ମାଳଟିଏ ପାଇବେ । ରଜା ମାଙ୍କଡ଼ ଉପରେ ଖୁସିହୋଇ କହିଲେ – ଯେବେ ଏପରି କଥା ତେବେ ଆମେ ଏକା କାହିଁକି ଯିବୁ, ଆମର ପୁଅ, ନାତି, ପୋଇଲି ପରିବାରୀ ସମସ୍ତେ ଏକାସାଙ୍ଗରେ ଗଲେ ସମସ୍ତେ ଗୋଟିଏ ଗୋଟିଏ ମାଳ ପାଇବେ । ତେବେ ଆମ ନଅରରେ ବହୁତ ରତ୍ନ ରହିବ । ମାଙ୍କଡ଼ କହିଲା, ଉତ୍ତମ କଥା, ଚାଲନ୍ତୁ । ତହୁଁ ରଜାରାଣୀ, ପୁଅପୁତୁରା, ପୋଇଲି ପରିବାରୀମାନଙ୍କୁ ସବାରିମାନଙ୍କରେ ବସାଇ ନିଜ ସବାରି ଭିତରେ ମାଙ୍କଡ଼କୁ କୋଡ଼ରେ ଘେନି ସେହି ପୋଖରୀ ପାଖକୁ ଗଲେ । ସମସ୍ତେ ପୋଖରୀ ପାଖରେ ପହଞ୍ଚିବାରୁ ମାଙ୍କଡ଼ ରଜାଙ୍କୁ କହିଲା, ମଣିମା ! ଏ ସମସ୍ତେ ଆଗ ସ୍ନାନ କରି ମାଳଘେନି ବାହାରିଲେ ଆପଣ ମୋ ସାଙ୍ଗରେ ସ୍ନାନ କରିବାକୁ ଯିବେ । ମୁଁ ଆପଣଙ୍କୁ ପୋଖରୀ ଭିତରେ ଥିବା ରତ୍ନଭଣ୍ଡାର ଦେଖାଇ ଦେବି । ରଜା କହିଲେ ଭଲ କଥା । ତହୁଁ ରଜାଙ୍କୁ ଛାଡ଼ି ରଜାଙ୍କର ଆଉ ସବୁଲୋକ ସ୍ନାନ କରିବାକୁ ଗଲେ । ସେ ସମସ୍ତେ ଏକ ସମୟରେ ପାଣିରେ ବୁଡ଼ିଲେ । ଅନେକ ସମୟ ଗଲା କେହି ବାହାରିଲେ ନାହିଁ । ତେଣୁ ରଜା ମାଙ୍କଡ଼କୁ ପଚାରିଲେ, କିଏ ଏ ସବୁ କେଉଁଆଡ଼େ ଗଲେ ? କାହିଁ ଏ ପର୍ଯ୍ୟନ୍ତ ତ ବାହାରିଲେ ନାହିଁ । ମାଙ୍କଡ଼ ରଜାଠାରୁ ଏହା ଶୁଣି ଗୋଟେ

ଗଛର ଡାଳକୁ ଯାଇ କହିଲା, ପ୍ରଭୋ ! ତୁମେ କ'ଣ ବାୟା ହେଲ ? ପୋଖରୀରୁ ଏପରି ମାଳ ମିଳିବା ତୁମ୍ଭକୁ ସମ୍ଭବ ଲାଗିଲା ? ଏବେ ତୁମେ କ'ଣ ଭାବିବ ତୁମ ପୁଅ ନାତି ପୋଇଲୀ ପରିବାରୀ ପାଣିରୁ ଫେରି ଆସିବେ ? ସେ ଆଶା ଛାଡ଼ । ପୋଖରୀ ଭିତରେ ଗୋଟିଏ ଅସୁର ଅଛି, ସେ ସମସ୍ତଙ୍କୁ ଖାଇସାରିଲାଣି । ତୁମ୍ଭଙ୍କୁ ମଧ ତାଙ୍କ ସାଙ୍ଗରେ ପଠାଇ ଦେଇଥା'ନ୍ତି; ମାତ୍ର ତୁମ୍ଭର ମୁଁ ବହୁଦିନ ଅନ୍ନ ଖାଇଛି, ତୁମ୍ଭେ ମୋତେ ନ ମାରି କେବଳ ମୋର ବଂଶ ମାରିଥିବାରୁ ମୁଁ ତୁମ୍ଭଙ୍କୁ ନ ମାରି ତୁମ୍ଭ ବଂଶଯାକ ମରାଇ ଶତ୍ରୁପଣ ସାଧିଲି । ଏବେ କପାଳ ଆଦରି ଘରକୁ ଯାଅ । ରଜା କାନ୍ଦି ବୋବାଇ ମୁଣ୍ଡ ବାଡ଼େଇ ଯେଉଁବାଟେ ଆସିଥିଲେ, ସେହିବାଟେ ଘରକୁ ଫେରିଲେ ।

ବହୁତ ଶାସ୍ତ୍ର ପଢ଼ିଲେ ଲୋକେ ମାଙ୍କଡ଼ପରି ବିପଦରୁ ରକ୍ଷା ପାଆନ୍ତି । ପୁଣି ଶତ୍ରୁପଣ ଶୁଝାଇ ନିଜର ପୁରୁଷପଣ ଦେଖାଇ ପାରନ୍ତି ।

# ମେଣ୍ଢା ଧୋଉ ଧୋଉ ନିର୍ବାଳ

ଥରେ ଗଙ୍ଗାରେ ମହା ମହା ବାରୁଣୀ ଯୋଗ ପଡ଼ିଲା । ଏ ଯୋଗରେ ଗଙ୍ଗାସ୍ନାନ କଲେ ଲୋକେ ସ୍ୱର୍ଗବାସ ପା'ନ୍ତି, ମୁକ୍ତି ପା'ନ୍ତି । ସେଥିପାଇଁ ଲକ୍ଷ ଲକ୍ଷ ଲୋକ ବାହାରିଲେ । କିଏ ଧାର କରଜ କରି, କିଏ ବା ବିକାବନ୍ଧା କରି ବାହାରିଲା । ଏପରି ଲକ୍ଷ ଲକ୍ଷ ଲୋକ ବାହାରିବାରୁ ପାର୍ବତୀ ମହାଦେବଙ୍କୁ ପଚାରିଲେ, ପ୍ରଭୋ ! ଏ ଯେ ଲକ୍ଷ ଲକ୍ଷ ଲୋକ ଯାଉଛନ୍ତି, ସମସ୍ତେ କ'ଣ ମୁକ୍ତି ପାଇବେ ? ମହାଦେବ କହିଲେ, ନା ଏଥିମଧ୍ୟରୁ ଜଣେ ମୁକ୍ତି ପାଇବ । ପାର୍ବତୀ କହିଲେ, ଏହା କିପରି ହେବ ? ଶାସ୍ତ୍ରରେ ତ ଲେଖାଅଛି – ଯେ ମହା ମହା ବାରୁଣୀ ଯୋଗରେ ଗଙ୍ଗାସ୍ନାନ କରିବ, ସେ ମୁକ୍ତି ପାଇବ । ଏ ସମସ୍ତେ ତ ସ୍ନାନ କରିବେ, ସମସ୍ତେ କାହିଁକି ମୁକ୍ତି ନ ପାଇବେ ? ମହାଦେବ କହିଲେ, କେବଳ ଗଙ୍ଗାରେ ଗାଧୋଇ ପଡ଼ିଲେ ହେବ ନାହିଁ । ଯେ ପରୋପକାରୀ, ସତ୍ୟବାଦୀ, ଧାର୍ମିକ, ସେଭଳି ଲୋକ ଗଙ୍ଗାସ୍ନାନ କଲେ ମୁକ୍ତି ପାଇବ । ପାର୍ବତୀ କହିଲେ, ଆଚ୍ଛା, ତେବେ ଯେଉଁ ଜଣଙ୍କ ମୁକ୍ତି ପାଇବ, ତାକୁ ମୋତେ ଦେଖାଇ ପାରିବେ ? ମହାଦେବ କହିଲେ, ହଁ ଦେଖାଇ ଦେବି । ଏହାପରେ ମହାଦେବ ଓ ପାର୍ବତୀ ବୃଦ୍ଧ ବ୍ରାହ୍ମଣ ଓ ବ୍ରାହ୍ମଣୀ ରୂପରେ ଗଙ୍ଗାକୂଳକୁ ଗଲେ । ମହାଦେବ ବାଟରୁ ଗୋଟିଏ ମେଣ୍ଢା କିଣି ନେଇଥିଲେ । ଲୋକେ ଗାଧୋଇବା ଆଗରୁ ମହାଦେବୀ ପାର୍ବତୀ ଗଙ୍ଗାକୂଳରେ ଗୋଟିଏ ଖୁଣ୍ଟ ପୋତି ସେଥିରେ ମେଣ୍ଢାଟିକୁ ବାନ୍ଧି ଦେଇ ଗଙ୍ଗାରେ ସ୍ନାନ କଲେ । ତା'ପରେ ମେଣ୍ଢା ପାଖକୁ ଆସି, ତା' ମୁଣ୍ଡରେ

ଟିକିଏ ଚନ୍ଦନ, ଗୋଟିଏ ଫୁଲଦେଇ ତା' ଚାରିପାଖରେ ଘେରାଏ ବୁଲି, ତା' ଦେହରୁ ଗୋଟିଏ ଗୋଟିଏ ରୋମ ଓପାଡ଼ି ଉପରକୁ ଆସି ଠାଏ ବସିଲେ । ମହାଦେବ ପାର୍ବତୀ ଯାହା ଯାହା କଲେ ବହୁତ ଲୋକେ ତାହା ଦେଖି ଭାବିଲେ ସ୍ନାନପରେ ଏ ମେଣ୍ଢା ଦେହର ଲୋମ ନ ଉପାଡ଼ିଲେ ବୋଧହୁଏ ଗଙ୍ଗାସ୍ନାନ ଫଳ ମିଳିବ ନାହିଁ । ଏହା ଭାବି ପ୍ରତ୍ୟେକ ସ୍ନାନ ସାରି ମେଣ୍ଢାକୁ ଫୁଲ ଚନ୍ଦନ ଦେଇ, ତା' ଦେହରୁ ଗୋଟିଏ ଗୋଟିଏ ରୋମ ଉପାଡ଼ିଲେ । ଲକ୍ଷ ଲକ୍ଷ ଲୋକ ଏ ଅନ୍ଧବିଶ୍ୱାସରେ ପଡ଼ି ମେଣ୍ଢା ଦେହରୁ ରୋମ ଓପାଡ଼ିଲେ । ଏହିପରି କରୁ କରୁ ମେଣ୍ଢାର ସବୁ ରୋମ ଉପୁଡ଼ିଗଲା । ମେଣ୍ଢା ନିର୍ବାଳ ହୋଇଗଲା । ପଛକୁ ଲୋକ ଧର୍ମ କରୁ କରୁ ତା' ଚମ, ମାଂସ, ଅନ୍ତପିତ୍ତ ପର୍ଯ୍ୟନ୍ତ ଦୁହିଁ ପକାଇଲେ । ଶେଷକୁ ମେଣ୍ଢା ମଲା । ମହାଦେବ ପାର୍ବତୀଙ୍କି କହିଲେ, ଦେଖିଲ ଲୋକଙ୍କର କିପରି ଅନ୍ଧବିଶ୍ୱାସ ? ହଉ ଚାଲ, ଆମ୍ଭେ ସବା ଆଗରେ ଯିବା । ଏହା ବୋଲି ମହାଦେବ ପାର୍ବତୀ କିଛି ଦୂର ଗଲେ । ମହାଦେବ କହିଲେ, ମୁଁ ମରି ଶୋଉଚି, ମୋ ଉପରେ ଖଣ୍ଡିଏ ଲୁଗା ଘୋଡ଼ାଇଦେଇ ତୁମ୍ଭେ କୋଡ଼ିକଚାଡ଼ି ହୋଇ କାନ୍ଦ । ଯେ କାହିଁକି କାନ୍ଦୁଚ ବୋଲି ପଚାରିବ, ତାଙ୍କୁ କହିବ, ଆମ୍ଭେ ଗୃହସ୍ଥ ଭାର୍ଯ୍ୟା ଦୁହେଁ ଗଙ୍ଗାସ୍ନାନ କରି ଆସିଥିଲୁ, ହଇଜା ରୋଗ ହେବାରୁ ସ୍ୱାମୀଙ୍କର କାଳ ହୋଇଗଲା । ମୋର କେହି ନାହିଁ, କି କିଛି ନାହିଁ, ମୁଁ କ'ଣ କରିବି ? ଏ ମୁର୍ଦ୍ଦାର ପୋଡ଼ା କିପରି ହେବ ? ମହାଦେବଙ୍କ କଥା ଅନୁସାରେ ପାର୍ବତୀ କାନ୍ଦୁଥା'ନ୍ତି । ଗଙ୍ଗାସ୍ନାନ ଫେରନ୍ତା ଯାତ୍ରୀ ସେହିବାଟେ ହଜାର ହଜାର ଚାଲିଲେ । ଯେ ଯାଉଥା'ନ୍ତି, ସେ ପାର୍ବତୀଙ୍କି କାନ୍ଦିବା କାରଣ ପଚାରନ୍ତି । ଯେଉଁକ୍ଷଣି ପାର୍ବତୀ କହନ୍ତି, ହଇଜାରେ ସ୍ୱାମୀଙ୍କର କାଳ ହୋଇଗଲା ମୁଁ କ'ଣ କରିବି ? ତହୁଁ ସେ ତୀର୍ଥ ଫେରନ୍ତା ଯାତ୍ରୀ ପାର୍ବତୀଙ୍କି ସାହାଯ୍ୟ କରିବେ କ'ଣ, ଭାଇରେ ! ଏଠାଇଁ ହଇଜା ଲାଗିଲାଣି; ଚାଲ କିମିତି ପଳାଇବା ବୋଲି କହି ଏକମୁହାଁ ହୋଇ ପଳାନ୍ତି । ଏହିପରି ଖେଦାକୁ ଖେଦା ଯାତ୍ରୀ ସେ ବାଟ ଦେଇ ଯାଆନ୍ତି । ଯହୁଁ ହଇଜା ନାଁ ଶୁଣନ୍ତି, ତହୁଁ ସେହିପରି ଏକମୁହାଁ ହୋଇ ପଳାନ୍ତି । ଶେଷକୁ ଜଣେ ଲୋକ ଏକାକୀ ଆସିଲା । ତା' ପାଖରେ

ଗୋଟିଏ ଲୋଟା ଓ ଖଣ୍ଡିଏ କମ୍ବଳ ଥାଏ । ସେ ଲୋକ ସ୍ତ୍ରୀ ଲୋକଟି କାନ୍ଦିବାର ଦେଖି ବ୍ୟାକୁଳ ହୋଇ ପଚାରିଲେ, କିଲୋ ଝିଅ ! ତୁ କାହିଁକି ଏପରି କାନ୍ଦୁଚୁ ? ସ୍ତ୍ରୀ ଲୋକଟି କହିଲା, ଆମେ ଗୃହସ୍ଥ ଭାର୍ଯ୍ୟା ଗଙ୍ଗାସ୍ନାନ କରି ଆସିଥିଲୁ; ହଇଜାରେ ଗୃହସ୍ଥଙ୍କର କାଳ ହୋଇଗଲା । ମୋର କେହି ଆଶାଭରସା ନାହିଁ, ମୁଁ କ'ଣ କରିବି, କିପରି ଚଳିବି ? ଆଉ ଯାହାହେଉ, ବର୍ତ୍ତମାନ କିପରି ମୁର୍ଦ୍ଦାର ଦାହ ହେବ ? ସେ ଭଦ୍ରଲୋକଟି ଏ କଥା ଶୁଣି ସେ ସ୍ତ୍ରୀ ଲୋକଟିକୁ ବୁଝାଇ କହିଲେ, ଯାହା ହେବାର ତାହା ହୋଇଗଲା, ତୋ ପାଇଁ ଭଗବାନ ଅଛନ୍ତି, ସେ ସବୁ ଚଳାଇବେ । ଗଙ୍ଗାକୂଳରେ ଗୃହସ୍ଥଙ୍କର କାଳ ହୋଇଚି । ସେ ନିଶ୍ଚୟ ସ୍ୱର୍ଗକୁ ଯିବେ । ଦିନେ ତ ପୁଣି ସମସ୍ତେ ଏହିପରି ଯିବା ? ଆଉ କାନ୍ଦ ନାହିଁ, ବର୍ତ୍ତମାନ କିପରି ଶବଦାହ ହେବ, ତହିଁର ବିଚାର କର । ସ୍ତ୍ରୀ ଲୋକଟି କହିଲା, କାଠ କିଣିବାକୁ ତ ମୋ ପାଖରେ ପଇସା ନାହିଁ, କି କୌଣସି ଜିନିଷ ନାହିଁ । କିମିତି ଶବ ଦାହ ହେବ ? ଭଦ୍ରଲୋକଟି କହିଲେ, ମୋ ପାଖରେ ମଧ୍ୟ ପଇସା ନାହିଁ । ତେବେ କ'ଣ କରିବା ? ଆଚ୍ଛା ତାହାହେଲେ ମୋର ଏ ଲୋଟା ଖଣ୍ଡି ବିକି କାଠ ଆଣିବା; ଦୁହେଁଯାକ ଶବକୁ ଗଙ୍ଗାକୂଳକୁ ନେଇ ସେଥିରେ ଦାହ କରିବା । ଏହା ବୋଲି ଭଦ୍ରଲୋକଟି କମ୍ବଳଟି ସେଠାରେ ରଖି ଯେତେବେଳେ ଲୋଟାଖଣ୍ଡି ବିକିବା ପାଇଁ ବଜାରକୁ ବାହାରିଲା, ସେତେବେଳେ ମହାଦେବ ନିଜ ରୂପ ଧରି ଉଠି ପାର୍ବତୀଙ୍କି କହିଲେ, ଏ ଲୋକଟି ମୁକ୍ତି ପାଇବ । ମହାଦେବଙ୍କ ସାକ୍ଷାତ ଦର୍ଶନ ପାଇବା ସହଜ କଥା ନୁହେଁ । ଯେ ଯେପରି ପୁଣ୍ୟ କାର୍ଯ୍ୟ କରିଥାଏ, ସେ ମହାଦେବଙ୍କର ଦର୍ଶନ ପାଏ । ସେ ସାଧୁଲୋକଟି ଜୀବନରେ ବହୁତ ପରୋପକାର କରିଛି, ତାହାର ମନ ଅତି ସରଳ ବୋଲି ସେ ମହାଦେବଙ୍କ ଦର୍ଶନ ପାଇଲା । ସେଥିପାଇଁ କଥା ଅଛି, ମନରେ ଯଦି ଦୃଢ଼ତା ନାହିଁ, ତେବେ ଲକ୍ଷେ ତୀର୍ଥ କରି କି ଫଳ ?

ଯେ ପରର ଉପକାର କରନ୍ତି, ଯାହାଙ୍କର ମନରେ ଛନ୍ଦକପଟ ନ ଥାଏ, ସେହି ଏକା ସ୍ୱର୍ଗକୁ ଯା'ନ୍ତି ।

# ତୃତୀୟ ଭାଗ

# ରାମଜନ୍ମ

ପିଲାମାନେ ! ନାନା ଜାଗାରେ ତୁମ୍ଭେମାନେ ରାମଲୀଳା ନାଟ ଦେଖିଥିବ । ସେହି ରାମ କିଏ ସେ, କିପରି ଓ କେଉଁଠାରେ ଜାତ ହୋଇଥିଲେ, ଆଜି ସେହି ଗଳ୍ପ କହିବା ।

ଆମ ଏହି ଓଡ଼ିଶାର ଉତ୍ତର ପଶ୍ଚିମରେ ହିମାଳୟ ପର୍ବତ ତଳେ ଅଯୋଧ୍ୟା ବୋଲି ଗୋଟିଏ ରାଜ୍ୟ ଅଛି । ପୂର୍ବକାଳରେ ତା'ର ନାଁ କୋଶଳ ଥିଲା । କୋଶଳ ରାଜ୍ୟରେ ସରଯୂ ବୋଲି ଗୋଟିଏ ନଈ ଅଛି । ନଈ ଥିବାରୁ ସେ ରାଜ୍ୟରେ ନାନା ଫସଲ ହୁଏ, ପ୍ରଜାମାନେ ଖାଇପିଇ ସୁଖରେ ଥାଆନ୍ତି । ଏକ ସମୟରେ ସେହି ଅଯୋଧ୍ୟାରେ ଦଶରଥ ବୋଲି ଜଣେ ରାଜା ଥିଲେ । ସେ ଭଲକରି ପ୍ରଜା ପାଳୁଥିଲେ । ପୃଥିବୀର ଚାରିଆଡ଼କୁ ଏପରିକି ଦଶଦିଗକୁ ରଥରେ ବସି ସେ ଲଢ଼େଇ କରିବାକୁ ଯାଉଥିଲେ । ଦଶରଥ ଶର ଲାଖ କରିବାରେ ବଡ଼ ସମର୍ଥ ଥିଲେ । ରାତି ଅନ୍ଧାରରେ ମଧ୍ୟ ଲାଖ କରିପାରୁ ଥିଲେ । ତାଙ୍କ ଧୃଷ୍ଟି, ବିଜୟ, ଅକୋପ, ଜୟନ୍ତ, ସୁମନ, ସୁରାଷ୍ଟ୍ର, ଧର୍ମପାକ ଓ ରାଷ୍ଟ୍ରବର୍ଦ୍ଧନ ବୋଲି ଆଠଜଣ ମନ୍ତ୍ରୀ ଆଉ କୌଶଲ୍ୟା, କୈକେୟୀ (କୈକୟୀ), ସୁମିତ୍ରା ବୋଲି ତିନି ରାଣୀ ଥିଲେ । ଦଶରଥ ଏଡ଼େ ସୁଖରେ ଥିଲେ ମଧ୍ୟ ଗୋଟିଏ ବୋଲି ପୁଅ ନ ଥିବାରୁ ମନେ ମନେ ଦୁଃଖ ଭୋଗୁଥିଲେ ।

ଦିନେ ରାଜା ଦଶରଥ ମନ୍ତ୍ରୀମାନଙ୍କୁ ଡାକି କହିଲେ, ପୁଅ ନ ଥିବାରୁ ମୋ ମନରେ ସବୁବେଳେ ଦୁଃଖ । କ'ଣ କଲେ ଆମର ମନୋବାଞ୍ଛା ପୂର୍ଣ୍ଣ ହେବ ? ମନ୍ତ୍ରୀ କହିଲେ, ଅଙ୍ଗରାଜ୍ୟ ରଜାଙ୍କ ଜୋଇଁ ଋଷ୍ୟଶୃଙ୍ଗ ପୁତ୍ରେଷ୍ଟି ଯଜ୍ଞ କଲେ ନିଶ୍ଚୟ ପୁଅ ହେବ । ଅଙ୍ଗରାଜ୍ୟର ରାଜା ଲୋମପାଦ ଦଶରଥଙ୍କର ବଡ଼ସାଙ୍ଗ ଥିଲେ । ତେଣେ ଦଶରଥ ଭାରି ଖୁସି ହୋଇ

ଅଙ୍ଗରାଜ୍ୟକୁ ଯାଇ ଋଷ୍ୟଶୃଙ୍ଗଙ୍କୁ ଆଣିଲେ । ସେ ଋଷିଙ୍କ ମୁଣ୍ଡରେ ଦୁଇଟା ଶିଙ୍ଗ ଥିବାରୁ ତାଙ୍କର ଏଭଳି ନାଁ ଥିଲା; ମାତ୍ର ସେ ଋଷି ତପସ୍ୟାରେ ବଡ଼ ଟାଣୁଆ ଥିଲେ ।

ଋଷ୍ୟଶୃଙ୍ଗ "ପୁତ୍ରେଷ୍ଟି" ଯଜ୍ଞ ଆରମ୍ଭ କଲେ । ସେଠାକୁ ରାଜା, ମହାରାଜା, ଯୋଗୀ, ଋଷି, ବ୍ରାହ୍ମଣ, ବୈଷ୍ଣବ ଆଉ ଗରିବ ଲୋକେ କେହି ନିମନ୍ତ୍ରଣ ପାଇ, କେହି ଅବା ଯଜ୍ଞ ଦେଖିବା ଇଚ୍ଛାରେ ଲକ୍ଷ ଲକ୍ଷ ଆସିଥିଲେ । ସମସ୍ତଙ୍କୁ ଭଲରୂପେ ଖାଇବା ପିଇବା ଚରଚା କରାଗଲା । ବ୍ରାହ୍ମଣ, ବୈଷ୍ଣବ ଆଉ ଗରିବମାନଙ୍କୁ ଖିଆପିଆ ଛଡ଼ା ଅନେକ ଧନରତ୍ନ ବଣ୍ଟାଗଲା । ସମସ୍ତେ ଭାରି ଖୁସି ହେଉଥା'ନ୍ତି । ଯଜ୍ଞ ଶେଷଦିନ ଯେତେବେଳେ ଅଗ୍ନିରେ ପୂର୍ଣ୍ଣାହୁତି ଦିଆଗଲା, ସେହି ସମୟରେ ସେହି ଅଗ୍ନି ମଧ୍ୟରୁ ଜଣେ ପୁରୁଷ ବାହାରିଲେ । ସେ ପୁରୁଷ ଦେଖିବାକୁ ବଡ଼ ଭୟାନକ, ତାଙ୍କ ଦେହ ପାହାଡ଼ ପରି ଉଚ୍ଚ, ବର୍ଣ୍ଣ କଳାହାଣ୍ଡିଆ ମେଘ ପରି କଳା, ଆଖି ଜଳନ୍ତା କୋଇଲା ନିଆଁ ପରି ଲାଲ, ଦାଢ଼ି ନିଶ ଦେଖିବାକୁ ସିଂହର କେଶର ଭଳି । ସେହି ଯଜ୍ଞପୁରୁଷଙ୍କ ହାତରେ ଗୋଟିଏ ସୁନାଥାଳି ଉପରେ ରୁପା ଢାଙ୍କୁଣି । ସେହି ଥାଳି ଭିତରେ କ୍ଷୀରୀପିଠା ଥିଲା । ତାକୁ ଯଜ୍ଞର ଚରୁ କୁହାଯାଏ । ଯଜ୍ଞପୁରୁଷ ଦଶରଥଙ୍କୁ କହିଲେ ଥାଳିରେ ଥିବା ଚରୁ ରାଣୀମାନଙ୍କୁ ଖାଇବାକୁ ଦେଲେ ତୁମର ପୁତ୍ର ଜନ୍ମିବ । ଏହା ବ୍ରହ୍ମା ପଠାଇ ଅଛନ୍ତି କହି, ସେହି ପୁରୁଷ ହଠାତ୍ ଉଭେଇଗଲେ ।

ଦଶରଥ ସେହି ଚରୁ କ୍ଷୀରୀପିଠା କୌଶଲ୍ୟା, କୈକେୟୀ ରାଣୀ ଦୁହିଁଙ୍କୁ ଦେଲେ । ସେ ଦୁହେଁ ସାନରାଣୀ ସୁମିତ୍ରାଙ୍କୁ ସ୍ନେହ କରି ଆପଣା ଭାଗରୁ କିଛି କିଛି କ୍ଷୀରୀ ଆଉ ପିଠା ଦେଲେ । ତିନିହେଁ ଖାଇଲେ । ଦଶମାସ ପରେ ତିନିଙ୍କଠାରୁ ଚାରୋଟି ପୁଅ ଜନ୍ମିଲେ । କୌଶଲ୍ୟାଙ୍କ ଠାରୁ ରାମ, କୈକେୟୀଙ୍କଠାରୁ ଭରତ, ସୁମିତ୍ରାଙ୍କଠାରୁ ଲକ୍ଷ୍ମଣ ଆଉ ଶତ୍ରୁଘ୍ନ ଜାତ ହେଲେ । ରାମ ଚାରି ଭାଇଙ୍କ ଭିତରେ ବଡ଼ ଥିଲେ । ଏହିପରି ରାମଙ୍କ ଜନ୍ମ ।

# ଭରତଙ୍କର ଭ୍ରାତୃଭକ୍ତି

ରାମ, ଲକ୍ଷ୍ମଣ, ଭରତ ଆଉ ଶତ୍ରୁଘ୍ନ ଚାରିଭାଇଯାକ ପରସ୍ପରକୁ ଭାରି ଭଲ ପାଆନ୍ତି । ରାମଙ୍କୁ ସ୍ୱଭାବରେ ଭଲ, ପାଠପଢ଼ାରେ ଭଲ ଏବଂ ଅସ୍ତ୍ରଶସ୍ତ୍ର ବିଦ୍ୟାରେ ଭଲ ଦେଖି ଅନ୍ୟ ତିନିଭାଇ ତାଙ୍କୁ ମାନ୍ୟ କରନ୍ତି । ଏହିପରି କିଛି ଦିନ ଗଲାପରେ ବିଶ୍ୱାମିତ୍ର ବୋଲି ଏକ ଋଷି ଆସିଲେ । ସେ ରାକ୍ଷସମାନଙ୍କ ଦାଉରୁ ଋଷିମାନେ କିପରି ବଞ୍ଚିବେ, ଏଇଥିପାଇଁ ରାମ, ଲକ୍ଷ୍ମଣ ଦି ଭାଇଙ୍କି ନେଇଗଲେ । ସେ ଦିହେଁ ଅନେକ ରାକ୍ଷସ ମାଇଲେ । ପରେ ମିଥିଳାର ରାଜା ଜନକଙ୍କ ରାଜଧାନୀରେ ପହଞ୍ଚିଲେ । ସେଠି ସ୍ୱୟମ୍ବର ସଭା ହେଉଥିଲା । ଜନକଙ୍କର ଗୋଟିଏ ଝିଅ ଥିଲା, ତାଙ୍କ ନାମ ସୀତା । ଜନକ ଏହି ପଣ କରିଥିଲେ ଯେ, ଗୋଟିଏ ବଡ଼ ଧନୁରେ ଯେ ଗୁଣ ଚଢ଼ାଇବ, ସେ ମୋ ଝିଅ ସୀତାକୁ ବିଭା ହେବ । ସେ ଧନୁ ନାଁ ଶିବଧନୁ । ଏକଥା ଶୁଣି ଅନେକ ଅନେକ ରଜା ଭାରତବର୍ଷର ଚାରିଆଡ଼ୁ ଆସିଥିଲେ । ଲଙ୍କାର ରଜା ରାବଣ ମଧ୍ୟ ଆସିଥିଲା । ଏଭଳି ସଭାର ନାମ ସ୍ୱୟମ୍ବର ସଭା । ଯେତେ ବଡ଼ ବଡ଼ ରଜା ଆସିଥିଲେ, ସମସ୍ତେ ହାରିଗଲେ । ଶେଷରେ ଅଳ୍ପ ବୟସରେ ବାଳକ ରାମ ଧନୁରେ ଗୁଣ ଦେବାମାତ୍ରେ ତାହା ଭାଙ୍ଗିଗଲା । ଦଶରଥ ମହାରଜାଙ୍କ ପାଖକୁ ସମ୍ବାଦ ଗଲା । ସେ ଭରତ ଆଉ ଶତ୍ରୁଘ୍ନଙ୍କୁ ସଙ୍ଗରେ ଘେନି ମିଥିଳାରେ ପହଞ୍ଚିଗଲେ । ଚାରି ଭାଇଯାକ ସେଠାରେ ବିଭା ହେଲେ । ଜନକଙ୍କର ଆଉ ଗୋଟିଏ ଝିଅ ଥିଲା, ତା' ନାଁ ଉର୍ମିଳା । ଜନକଙ୍କର ଭାଇ କୁଶଧ୍ୱଜଙ୍କର ମାଣ୍ଡବୀ ଆଉ ଶ୍ରୁତକୀର୍ତ୍ତି ବୋଲି ଦୁଇ ଝିଅ ଥିଲେ । ରାମ ସୀତାଙ୍କୁ, ଲକ୍ଷ୍ମଣ ଉର୍ମିଳାଙ୍କୁ, ଭରତ ମାଣ୍ଡବୀଙ୍କୁ ଆଉ ଶତ୍ରୁଘ୍ନ ଶ୍ରୁତକୀର୍ତ୍ତିଙ୍କୁ ବିଭା ହେଲେ । ବିଭାଘର ସରିବାରୁ ଜଉତୁକମାନ ଆଉ ପୁଅ ବୋହୂଙ୍କୁ ଘେନି ଦଶରଥ ଅଯୋଧ୍ୟାରେ ପହଞ୍ଚିଲେ ।

କିଛିଦିନ ପରେ ଦଶରଥ ମନ୍ତ୍ରୀମାନଙ୍କୁ ଡକାଇ କହିଲେ, ମୁଁ ତ ବୁଢ଼ା ହୋଇଗଲିଣି । ରାମ ରୂପରେ, ଗୁଣରେ ଉପଯୁକ୍ତ ପୁଅ । ତେବେ

ତାକୁ ଯୁବରାଜ କରି ତା' ହାତରେ ରାଜ୍ୟ ଶାସନ ଭାର ଦେଇ ମୁଁ ନିଶ୍ଚିନ୍ତ ହୋଇ ବସିବି । ଏହା ଶୁଣି ଘରେ ବାହାରେ ସମସ୍ତେ ଖୁସି ହେଲେ । ଅଭିଷେକର ଦିନ ଠିକ୍ ହେଲା । କୁଳପୁରୋହିତ ବଶିଷ୍ଠ ଅଭିଷେକର ସବୁ ଯୋଗାଡ଼ କଲେ । ସବୁ ତୀର୍ଥର ଜଳ ଆସି ରଖାଗଲା । ରାତି ପାହିଲେ ଅଭିଷେକ ।

ଏହି ସମୟରେ କୈକେୟୀଙ୍କୁ ଦୈବ ଛାଡ଼ିଲା । ସେ ତାଙ୍କର ମନ୍ଥରା ଦାସୀ କଥାରେ ପଡ଼ି ମହାବିପଦ ପହଞ୍ଚାଇଲେ । କୈକେୟୀ ବଡ଼ ସୁନ୍ଦରୀ, ଆଉ ବୁଦ୍ଧିମତୀ । ଏଇ ସମୟରେ ଦଶରଥ କୈକେୟୀଙ୍କୁ ଘେନି ଦେବତା ଆଉ ଅସୁରଙ୍କ ଯୁଦ୍ଧରେ ଦେବତାଙ୍କୁ ସାହାଯ୍ୟ କରିବେ ବୋଲି ଯାଇଥିଲେ । ଲଢ଼େଇ ବେଳେ ରଥର ଅନିକିଳୀ ଖସିଯିବାରୁ କୈକେୟୀ ଆଙ୍ଗୁଠି ଦେଇ ରଥଚକ ଜବତ କରିପାରିଥିଲେ; ନୋହିଲେ ରଥ ଭାଙ୍ଗିଯାଇ ଦଶରଥଙ୍କର ସର୍ବନାଶ ଘଟିଥାଆନ୍ତା । ଏଥିଯୋଗୁଁ କୈକେୟୀଙ୍କୁ ଦୁଇଟି ମନଇଚ୍ଛା ବର ମାଗିବାକୁ ଦଶରଥ କହିଥିଲେ । ମନ୍ଥରା ଦାସୀ ମନରେ ସେ କଥା ଥିଲା । ସେ ତ ସ୍ୱଭାବରେ ଦୁଷ୍ଟା । ବେଳ ଦେଖି କୈକେୟୀଙ୍କୁ ମତାଇଲା । କୈକେୟୀ ତା' କଥାରେ ପଡ଼ି ଦଶରଥ ମହାରାଜାଙ୍କୁ କହିଲେ, ମତେ ଯେଉଁ ଦୁଇଟି ବର ଦେବ ବୋଲି କହିଥିଲେ, ଆଜି ତାହା ଦିଅନ୍ତୁ –ମୋ ପୁଅ ଭରତ ରାଜା ହେଉ, ରାମ କାଲିଠାରୁ ଚଉଦବର୍ଷ ବଣକୁ ଯାଉ । ଏକଥା ଶୁଣି ଦଶରଥଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ସେ ତଳେ ପଡ଼ିଗଲେ, ଚେତା ବୁଡ଼ିଗଲା । କିଛି ସମୟ ପରେ ଚେତା ପାଇ କୈକେୟୀଙ୍କୁ ବହୁତ ଗାଳିଦେଇ ରାମଙ୍କୁ ଡକାଇଲେ । ରାମ ପିତାଙ୍କର ଅବସ୍ଥା ଦେଖି କୈକେୟୀଙ୍କଠାରୁ ସମୁଦାୟ ଘଟଣା ବୁଝିନେଲେ । ସେ ପିତାଙ୍କ ପାଦତଳେ ପଡ଼ି ବଣକୁ ଯିବାର ସତ୍ୟ କରି ପିତା ଆଉ କୈକେୟୀଙ୍କ ଠାରୁ ବିଦାୟ ନେଇ କୌଶଲ୍ୟାଙ୍କ ଆଗେ ସବୁ କଥା ଜଣାଇଲେ । ମାଆ କୌଶଲ୍ୟା ସେତେବେଳେ କଅଣ ହୋଇଥିବେ, ତାହା କହି ହେଉନାହିଁ । ଏହିପରି ମାଆଙ୍କଠାରୁ ପୁଣି ସୁମିତ୍ରାଙ୍କ ଠାରୁ ବିଦାୟ ଘେନି ରାମ ସୀତାଙ୍କ ପାଖରେ ପହଞ୍ଚିଲେ । ସୀତାଦେବୀ ଶୁଣି ସଙ୍ଗେ ସଙ୍ଗେ ବଣକୁ ବାହାରିଲେ, ମନା ମାନିଲେ ନାହିଁ । ଲକ୍ଷ୍ମଣ ସବୁବେଳେ ରାମଙ୍କ କଥା ମାନି ଛାଇ ପରି ଅନୁସରି ଥାଆନ୍ତି । ସେ ମଧ୍ୟ ରାମଙ୍କ

ସଙ୍ଗେ ବଣକୁ ବାହାରିଲେ । ରାମ, ସୀତା ଆଉ ଲକ୍ଷ୍ମଣ ବଣକୁ ଯିବା ପାଇଁ ବକଳ ଲୁଗା ପିନ୍ଧି ଯେତେବେଳେ ଅଯୋଧ୍ୟା ସହର ଦାଣ୍ଡକୁ ବାହାରିଲେ, ସେତେବେଳେ ଶ୍ରାବଣ ମାସର ବର୍ଷା ପରି ସମସ୍ତଙ୍କ ଆଖିରୁ ଲୁହ ବହିଗଲା । ସେ ତିନିହେଁ ସରଯୂ ପାରିହୋଇ ବଣ ଆଡ଼କୁ ଚାଲିଲେ ।

ରାଜା ଦଶରଥ ପୁତ୍ରବିଚ୍ଛେଦ ଭାଳି, ବୋହୂ ସୀତାଙ୍କ କଥା ମନେ ପକାଇ ଲକ୍ଷ୍ମଣଙ୍କ କଥା ବିଚାରି ରାମ ଯିବାର ଛ ଦିନରେ ମରିଗଲେ । ସେତେବେଳେ ଭରତ, ଶତ୍ରୁଘ୍ନ ମାମୁ ଘରେ ଥିଲେ । ଦଶରଥଙ୍କୁ ନ ପୋଡ଼ି ତେଲଭାଣ୍ଡରେ ରଖି କୁଳପୁରୋହିତ ବଶିଷ୍ଠ ଋଷି ଭରତଙ୍କୁ ଡକାଇଲେ । ଭରତ ଆସି ସବୁକଥା ଶୁଣି ଅତି ଦୁଃଖିତ ହେଲେ । ଭରତ ବାପାଙ୍କର ଶୁଦ୍ଧିକାର୍ଯ୍ୟ ସାରି ପୁଣି ରାମଙ୍କୁ ଫେରାଇ ଆଣିବା ପାଇଁ ବଶିଷ୍ଠ ଋଷି ଆଉ ମନ୍ତ୍ରୀମାନଙ୍କୁ ଘେନି ଚିତ୍ରକୂଟ ପର୍ବତରେ ପହଞ୍ଚିଲେ । ରାମ, ସୀତା, ଲକ୍ଷ୍ମଣ ସେଠି ରହିଥିଲେ । ରାମଙ୍କ ଗୋଡ଼ତଳେ ପଡ଼ି କାନ୍ଦି ବୋବେଇ କାକୁତି ମିନତି କରି ଭରତ ଯେତେ ବୁଝାଇଲେ, ରାମ ତାହା ଶୁଣିଲେ ନାହିଁ । ବାପାଙ୍କ ମରିଯିବା ଖବର ପାଇ ରାମ, ସୀତା, ଲକ୍ଷ୍ମଣ ବହୁତ କାନ୍ଦିଲେ । ସମସ୍ତେ ଗାଧୋଇ ସାରି ପିତୃଙ୍କ ନାଁରେ ଜଳ ଦେଲେ । ପରେ ବଶିଷ୍ଠ ମଧ୍ୟ ଫେରିଯିବା ପାଇଁ କହିଲେ; ମାତ୍ର ରାମ ମନା କଲେ । ପିତାଙ୍କ ସତ୍ୟ ନ ପାଳିଲେ ପିତା ନରକରେ ପଡ଼ିବେ, ଏ ହେତୁ ସେ ବାରମ୍ବାର ମନା କଲେ । ସବା ଶେଷରେ ନିଜର କଠୋଉ ଦୁଇଟି ଦେବା ପାଇଁ ଭରତ ମାଗିବାରୁ ତାହା ଦେଲେ । ଭରତ କଠୋଉ ଦୁଇଟି ନେଇ ରାଜଧାନୀରେ କିଛି ଦୂରରେ ନନ୍ଦିଗ୍ରାମରେ ରହିଲେ । ରାମଙ୍କ ଭଳି ବକଳ ଲୁଗା ପିନ୍ଧି, ଜଟା ବାନ୍ଧି, ଋଷିବେଶ ଧରି ସେହି କଠୋଉ ଦୁଇଟି ପୂଜା କରି ଫଳମୂଳ ଖାଇ ରାଜ୍ୟ ଚଳାଇଲେ । ଭରତ ଚଉଦବର୍ଷକାଳ ରାମ ବଣରୁ ଫେରିଯିବା ଯାଏ ଏହିପରି ବ୍ରତ ଧରିଥିଲେ । ବଡ଼ଭାଇଠାରେ କେଡ଼େ ଭକ୍ତି । କେଡ଼େ ସ୍ନେହ । ମନରେ ଭାବି ହେଉନାହିଁ । ଅଯୋଧ୍ୟା ପରି ରାଜ୍ୟରେ ରଜା ହୋଇଥିଲେ, କେତେ ସୁଖ ଭୋଗ କରିଥାଆନ୍ତେ । ତାହା ଛାଡ଼ି ଅଯୋଧ୍ୟା ରାଜଧାନୀରେ ନ ରହି ରାମଙ୍କ ଭଳି ଜଟା ବକଳ ଆଉ ଫଳମୂଳରେ ଦିନ କଟାଇବା ମହାତ୍ମାଙ୍କଠାରେ ଦେଖାଯାଏ ନାହିଁ । ଧନ୍ୟ ଭରତ । ତୁମ ଭ୍ରାତୃଭକ୍ତିକୁ ଧନ୍ୟ ଧନ୍ୟ ।

# ଅନ୍ଧମୁନି କଥା

ରାମ, ଲକ୍ଷ୍ମଣ, ସୀତା ତିନିହେଁ ବଣକୁ ଗଲେ । ଦଶରଥ ଥରକୁ ଥର ଏକଥା ଭାଳି ଭାଳି ଚେତା ବୁଡ଼ିଯାଇ ତଳେ ପଡ଼ିଯାଇଥିଲେ ଏବଂ କୌଶଲ୍ୟା ଓ ସୁମିତ୍ରା ରାଣୀ ଦୁହେଁ ଛିଞ୍ଚା ବିଞ୍ଚା କରି ତାଙ୍କୁ ଚେତା କରୁଥିଲେ । ଚେତା ଥିବାବେଳେ ଥରେ ଦଶରଥ ରାଣୀ ଦୁହିଁଙ୍କୁ କହିଲେ, "ମୋର ଯେତେବେଳେ ଟୋକା ବୟସ, ସେତେବେଳେ ମୁଁ ଜନ୍ତୁର ଶବ୍ଦ ଶୁଣି ଅନ୍ଧାର ରାତିରେ ଭଲ ଶିକାର କରି ପାରୁଥିଲି । ଦିନେ ସଞ୍ଜବେଳେ ଗଛ ଉଢ଼ାଳରେ ବସିଥିଲି; ସେଠି ଗୋଟିଏ ନଈଘାଟ ଥିଲା । ବିଚାରିଲି, ରାତିରେ ଜୀବଜନ୍ତୁ ପାଣି ପିଇବାକୁ ଆସିଲେ, ପାଣି ପିଇବା ଶବ୍ଦ ଶୁଣି ଶର ଲାଖ କରିବି । ସେହି ବଣର କିଛିଦୂରରେ ଭିତର ଜଙ୍ଗଲ ମଧ୍ୟରେ ରହି ଜଣେ ଋଷି ଆଉ ତାଙ୍କ ସ୍ତ୍ରୀ ବୁଢ଼ାବୁଢ଼ୀ ହୋଇଯିବାରୁ ତପସ୍ୟା କରୁଥିଲେ । ସେ ଦୁହେଁ ଅନ୍ଧ, ତାଙ୍କର ଗୋଟିଏ ମାତ୍ର ପୁଅ ପାଖରେ ଥିଲା । ସେହି ପିଲାଟି ସେହି ଅନ୍ଧ ଅନ୍ଧୁଣୀଙ୍କର ଦୁଃଖୀଶଙ୍ଖାଳି, ଗଣ୍ଠିଧନ, ଅନ୍ଧରଲଉଡ଼ି ଥିଲା । ସେହି ପିଲାଟି ଯୋଗେ ବୁଢ଼ାବୁଢ଼ୀ ଦୁହେଁ ଚଳବିଚଳ ହୋଇଥାଆନ୍ତି, ଦଣ୍ଡେ ପିଲାପଣିଆ କରି ଖେଳି ବସିଲେ ପୁଅ ଉପରେ ବିରକ୍ତ ହୁଅନ୍ତି । ସେଦିନ ଆଶ୍ରମରେ କିଛି ପାଣି ନ ଥିବାରୁ ପୁଅକୁ ପାଣି ପାଇଁ ପଠାଇଥିଲେ । ମୁଁ ତ ମନ୍ଦବୁଦ୍ଧି, ଲାଖବିଦ୍ୟାରେ ଧୁରନ୍ଧର ଥିବାରୁ ଭଲମନ୍ଦ, ଆଗପଛ ବିଚାର କିଛି ନ ଥିଲା । ମୁଁ କେତେ କେତେ ଜୀବଜନ୍ତୁ ଅକାରଣେ ମାରିଚି, କେତେ ଗର୍ଭିଣୀ ଜନ୍ତୁ ଶିକାର କରିଚି । ସେଦିନ କଥା ମୋ ମନରୁ ଯାଉନାହିଁ । ଋଷିପୁତ୍ର ସେହି ଅନ୍ଧରଲଉଡ଼ି, ଦରିଦ୍ରର ଧନ, ଯିମିତି ମାଠିଆଟି ପାଣିରେ ବୁଡ଼େଇଛନ୍ତି, ମୁଁ ହାତୀ ପାଣି ପିଇବା ମଣି ସେହି ଶବ୍ଦ ଲକ୍ଷ୍ୟ କରି ଶର ମାରିଲି । ସେହି ଦାଉଆବାଣ ବ୍ରାହ୍ମଣ ବାଳକର

ଛାତିରେ ଯେତେବେଳେ ଫୋଡ଼ି ହୋଇଗଲା, ତାଙ୍କ ହାତରୁ ମାଠିଆ ଖସିଗଲା; ବାଳକଟି ତଳେ ପଡ଼ିଗଲେ । ଅତି ଉଚ୍ଚରେ କାନ୍ଦି କାନ୍ଦି ବାଳକଟି କହିଥିଲେ "ଆହା କିଏ ନିର୍ଦ୍ଦୟ ଚଣ୍ଡାଳ ଏହା କଲା । କି କଲା । ସେ ଅନ୍ଧଅନ୍ଧୁଣୀ କ'ଣ କରିବେ ?" ମୁଁ ଏକଥା ଶୁଣି ଚମକି ପଡ଼ିଲି । ଯାଇ ଦେଖେ ତ ଋଷି ବାଳକ ଭୂଇଁରେ ପଡ଼ିଛନ୍ତି । ସେ ଶୀଘ୍ର ମୋ ଛାତିରୁ ବାଣ କାଢ଼ିନିଅ କହିବାରୁ ମୁଁ ପାପୀ କାଢ଼ିନେଲି । ଝରଣାପରି ରକତଧାର ସେହି ଋଷିବାଳକଙ୍କ ଛାତିରୁ ବହି ଯାଉଥାଏ । ସେହି ବାଳକ କହିଲେ, 'ଯାହା ତ ମୋ କପାଳରେ ଥିଲା ଘଟିଲା । ରାଜା ତୁମେ ଶୀଘ୍ର ପାଣି ନେଇ ମୋର ଅନ୍ଧ ପିତାମାତାଙ୍କୁ ଦେଇ ଏ ଖବର କହିବ; ନୋହିଲେ ସେମାନେ ଶୀଘ୍ର ପ୍ରାଣ ହରାଇବେ ।' ଏକଥା କହି ସେହି ସୁନ୍ଦର ବ୍ରାହ୍ମଣ ବାଳକ ଚକ୍ଷୁ ମୁଦିଲେ । ମୁଁ ପାଣି ଧରି ଆଶ୍ରମରେ ପହଞ୍ଚିଲି । ମୋ ଚାଲିବା ଶବ୍ଦ ବାରି ଅନ୍ଧମୁନି ପୁଅ ବୋଲି ବିଚାରି କହିଲେ, 'ବାପରେ ! ସବୁଦିନେ ତୋର ପିଲାପଣ ନ ଗଲା । ଖରାଦିନ, ଖରାତାପରେ ତୋ ମା'ର କଣ୍ଠ ଶୁଖିଯାଉଛି, ଏତେ ବିଳମ୍ବରେ ଆସିଲୁ ।' ଏକଥା ଶୁଣି ମୋ ପାଟିରୁ କଥା ବାହାରୁ ନ ଥାଏ, ମୁଁ ପାଣି ମାଠିଆ ତଳେ ରଖିଦେଇ ତୁନି ହୋଇ ଠିଆହୋଇଥାଏ । କଥା ନ କହିବାରୁ ପୁଣି ଅନ୍ଧମୁନି ପୁଅ ବିଚାରି କହିଲେ, 'ଆରେ ମୋର ଦୁଃଖୀ ଶଙ୍ଖାଳି, ଦରିଦ୍ରର ଧନ, ଅନ୍ଧର ଲଉଡ଼ି ! ଆଜି ରୁଷିଲୁ କିଆଁ ? କେତେ କେତେ ଗାଳି ତ ଦେଇଛି କେବେ ତ ରୁଷିନାହୁଁ; କଥା ନ କହି ତୁନି ହୋଇ ଠିଆ ହୋଇଚୁ କାହିଁକି ?' ମୁଁ କହିଲି, 'ମୁନିବର ! ମୁଁ ଆପଣଙ୍କର ପୁଅ ନୁହେଁ । ମୁଁ ଅଯୋଧ୍ୟାର ରାଜା ଦଶରଥ । ବଣକୁ ଶିକାର କରିବାକୁ ଆସି ନଈଘାଟରେ ଜୀବଜନ୍ତୁ ଅପେକ୍ଷାରେ ଲୁଚି ରହିଥିଲି । ଆପଣଙ୍କ ପୁଅ ଯେତେବେଳେ ମାଠିଆରେ ପାଣି ପୂରାଇଲେ, ହାତୀ ପାଣି ପିଉଚି ମଣି ବାଣ ଲାଖ କଲି । ମୁଁ ପାପୀ ଯାଇ ଦେଖେ ତ ଆପଣଙ୍କ ପୁଅ ଛାତିରେ ତାହା ପଶି ତାଙ୍କୁ ବଡ଼ କଷ୍ଟ ଦେଉଚି । ତାଙ୍କ ଆଜ୍ଞାରେ ଶର କାଢ଼ିବା ମାତ୍ରେ ସେ ପ୍ରାଣ ହରାଇଲେ । ମୋତେ ପାଣି ନେଇ ଆପଣଙ୍କୁ ଖବର ଦେବାପାଇଁ କହିଥିବାରୁ ମୁଁ ପାପୀ ଆସିଅଛି ।' ଏହାକହି ସାଷ୍ଟାଙ୍ଗ ପ୍ରଣାମ କରି କ୍ଷମା ମାଗିଲି । ମୋ କଥା ଶୁଣିବା ମାତ୍ରେ

ସେହି ଅନ୍ଧଅନ୍ଧୁଣୀ ବହୁତ ବାହୁନି ପୁଅର ଗୁଣ ଗୁଣି କାନ୍ଦିଲେ । ସେତେବେଳର ଦୁଃଖ କାନ୍ଦ ଅବା କ'ଣ କହିବି ? କେତେବେଳ ପରେ ସେହି ମୁନି ଚେତା ପାଇ କହିଲେ, 'ରାଜନ ! ଶୀଘ୍ର ଆମ ଦୁହିଁଙ୍କୁ ସେଠାକୁ ନିଅ, ବିଳମ୍ବ କର ନାହିଁ ।' ମୁଁ ଦୁହିଁଙ୍କୁ ଧରି ଧରି ନଇ ଘାଟକୁ ନେଲି । ପୁଅ ପାଖରେ ବସି ସେହି ବୁଢ଼ାବୁଢ଼ୀ ଅନ୍ଧଅନ୍ଧୁଣୀ କେତେ କାନ୍ଦିଲେ । ମୋତେ କହିଲେ, ରାଜନ ! ମୋତେ ଏ ଅବସ୍ଥାରେ ଏତେ କଷ୍ଟ ଦେଲ । ପୁତ୍ରଶୋକ ଦେଲ । ତୁମେ ଏହିପରି ପୁତ୍ରଶୋକରେ ଦିନେ ମରିବ । ହଉ ଯାହା ହେବାର ହେଲାଣି, କାଠ ଆଣି ନିଆଁ ଜାଳିଦିଅ, ପୁଅକୁ ଦାହ କରିବି । ନିଆଁ ଜଳିବାମାତ୍ରେ ପୁଅକୁ ଅଗ୍ନିରେ ଦେଇ ପରେ ସେହି ଅନ୍ଧଅନ୍ଧୁଣୀ ଦୁହେଁ ସେହି ଅଗ୍ନିରେ ପଡ଼ିଲେ । ଆହା ! ଗୋଟିଏ ଶରରେ ମୁଁ ତିନି ମହାପ୍ରାଣୀ ବଧ କରିଥିଲି । ଆଜି ସେହି ମୁନିଙ୍କର ଅଭିଶାପ ଭୋଗୁଅଛି ।"

କାଳେ କର୍ମ ବୃକ୍ଷ ଫଳେ ଶାସ୍ତ୍ରରେ ଏ ଲେଖା,<br>
ମୋହ କର୍ମଫଳ ଏତେ ଦିନେ ଦେଲା ଦେଖା ।

# ରାମରାଜ୍ୟରେ କୁକୁରର ବିଚାର

ରାମ ପିତୃସତ୍ୟ ପାଳିବା ପାଇଁ ଲକ୍ଷ୍ମଣ ଆଉ ସୀତାଙ୍କୁ ଘେନି ବଣକୁ ତ ଗଲେ, ବଣରେ ବହୁତ ଯୋଗୀ ଋଷିଙ୍କ ମଠ ଦେଖିଲେ; ଅନେକ ଅନେକ ଅସୁର ମାଇଲେ । ପଞ୍ଚବଟୀରେ ରାମ ଥିବାବେଳେ ଲଙ୍କାର ରାଜା ରାବଣର ଭଉଣୀ ଆସି ପହଞ୍ଚିଲା । ତା ନାଁ ସୂର୍ପଣଖା । ରାମ ଦେଖିବାକୁ ବଡ଼ ସୁନ୍ଦର । ତେଣୁ ବିଭାହେବାକୁ ସେ ମନ ବଳେଇଲା ଏବଂ ରାମ ମନା କରିବାରୁ ସୀତାଙ୍କୁ ଖାଇବ ବୋଲି ଭୟ ଦେଖାଇଲା । ଯା ଦେଖି ଲକ୍ଷ୍ମଣ ତା' ନାକ କାଟି ଛାଡ଼ିଦେଲେ । ସୂର୍ପଣଖା ଯାଇ ତା' ଭାଇ ରାବଣ ଆଗେ କାନ୍ଦିକରି କହିବାରୁ ରାବଣ ରାମ ଲକ୍ଷ୍ମଣ ନ ଥିବାବେଳେ ଆସି ସୀତାଙ୍କୁ ଚୋରାଇ ନେଲା ।

ରାମ, ଲକ୍ଷ୍ମଣ ବହୁତ ଖୋଜି ଖୋଜି ରାବଣ ସୀତାଙ୍କୁ ନେଇ ଲଙ୍କାରେ ରଖିଥିବାର ସନ୍ଧାନ ପାଇଲେ । ରାମ ରାବଣ ଯୁଦ୍ଧ ହେଲା । ଯୁଦ୍ଧରେ ରାବଣ ସବଂଶରେ ମଲା । କେବଳ ରାବଣର ଭାଇ ବିଭୀଷଣ ରାମଙ୍କ ପାଖରେ ଆଗରୁ ଶରଣ ପଶିଥିବାରୁ ବଞ୍ଚିଗଲା । ରାବଣ ମଲା ପରେ ବିଭୀଷଣକୁ ଲଙ୍କାର ରାଜା କରି ଲକ୍ଷ୍ମଣ ଆଉ ସୀତାଙ୍କୁ ଘେନି ରାମ ଅଯୋଧ୍ୟାକୁ ଫେରି ଆସିଲେ; ଅଯୋଧ୍ୟାରେ ରଜା ହେଲେ ।

ଦିନେ ଜଣେ ବ୍ରାହ୍ମଣ ଗାଧୋଇ କରି ହାତରେ ପାଣି ଢାଳ ଧରି ଅଯୋଧ୍ୟା ସହର ଦାଣ୍ଡରେ ଯାଉଥିଲେ । ବାଟରେ ଯାଉ ଯାଉ ଗୋଟେ କୁକୁର ତାଙ୍କ ଆଗରେ ପହଞ୍ଚିଯାଇ ତାଙ୍କୁ ଛୁଇଁଦେଲା । ବ୍ରାହ୍ମଣ ରାଗ ହୋଇ କୁକୁର ମୁଣ୍ଡରେ ପାଣିଢାଳକୁ ଛେଚିଦେଲେ । କୁକୁର ଭୋ ଭୋ ରଡ଼ି ଛାଡ଼ି ରାଜାଙ୍କ ସିଂହଦୁଆରେ ପହଞ୍ଚିଲା । ରାମ କୁକୁରକୁ ଡକାଇ ସମସ୍ତ ହାଲ ବୁଝିଲେ । ବ୍ରାହ୍ମଣକୁ ଡକରା ହେଲା । ବ୍ରାହ୍ମଣକୁ ପଚରା ଯିବାରେ ସେ

କହିଲେ, ମୁଁ ସ୍ନାନସାରି ମହାଦେବଙ୍କୁ ପାଣିଦେବାକୁ ଯାଉଥିଲି, ଏ କୁକୁରଟା ମୋତେ ଛୁଇଁଦେଲା । କୁକୁର ଛୁଇଁଲେ ଛୁଆଁ ହେବାକୁ ହୁଏ, ସେହି ହେତୁରୁ ମୁଁ କ୍ରୋଧରେ ପାଣି ଢାଳଟା ଯା ମୁଣ୍ଡରେ କଚାଡ଼ି ଦେଲି । କୁକୁରକୁ ପଚରାଗଲା, ତୁ କାହିଁକି ଛୁଇଁଲୁ ? କୁକୁର କହିଲା, ମୁଁ ପଶୁଜୀବ, ସବୁବେଳେ ସିଧା ସିଧା ଚାଲେ । ମୁଁ ଯେଉଁବାଟେ ଆସୁଥିଲି, ରାସ୍ତାର ଠିକ୍ ସେହି ସିଧାରେ ଏ ବ୍ରାହ୍ମଣ ଯାଉଥିଲେ । ଯେବେ ମତେ ଛୁଇଁଲେ ଏ ଛୁଆଁ ହେବେ, ଯାଙ୍କ ପାଣି ମାରା ହେବ, ତେବେ ଏ ଆଡ଼େଇ ଗଲେ ନାହିଁ କାହିଁକି ? ଏ କଥା ଶୁଣି ରାମ କହିଲେ, ବ୍ରାହ୍ମଣ ! ପ୍ରକୃତରେ ତୁମ୍ଭର ଦୋଷ, ସେ ତ ପଶୁଜୀବ; ତୁମ ଦେହ ମାରା, ପାଣି ମାରା କଥା ସେ କ'ଣ ଜାଣେ ? ତୁମର ଆଡ଼େଇ ହୋଇଯିବାର ଥିଲା ।

କୁକୁରକୁ ପଚରାଗଲା, ତେବେ ଏ ବ୍ରାହ୍ମଣଙ୍କୁ କି ଦଣ୍ଡ ଦିଆଯିବ, କହ । କୁକୁର କହିଲା, ପ୍ରଭୋ ! ଯାଙ୍କୁ ଶିବ ମନ୍ଦିରରେ ପରିଛା କରାଯାଉ । ରାମ କହିଲେ, ଶିବ ମନ୍ଦିରରେ ପରିଛା ହେଲେ ବ୍ରାହ୍ମଣ ତ ସୁଖରେ ରହିବ, ଦଣ୍ଡ ପାଇଲା କ'ଣ ? କୁକୁର କହିଲା, ମହାପ୍ରଭୋ ! ମୁଁ ପୂର୍ବ ଜନ୍ମରେ ଶିବମନ୍ଦିରରେ ରହିଥିଲି । ଶିବଙ୍କ ଭୋଗରେ ମୋ ମନଟି ଥାଏ । ମୁଁ ମଲାପରେ ସେହି ଦୋଷରୁ କୁକୁର ଜନ୍ମ ପାଇଅଛି । ଏ ବ୍ରାହ୍ମଣ ସେହିପରି ଭୋଗ-ଡାହାଣା ହୋଇ କୁକୁର ଜନ୍ମ ପାଇବେ, ମୋ ଭଳି ଘରଦ୍ୱାର ନ ପାଇ ଖରା, ବର୍ଷା, ଶୀତ, କାକର ସହିବେ; ଅଇଁଠା ଖାଇ ଖାଇ ଦିନ କାଟିବେ; ଯା ହାତ ତା' ହାତରେ ମାଡ଼ ଖାଇ ମରିବେ । ରାମ ଏକଥା ଶୁଣି ବ୍ରାହ୍ମଣଙ୍କୁ ଗୋଟିଏ ଶିବ ମନ୍ଦିରରେ ପରିଛା କରିଦେବା ପାଇଁ ଭାଇ ଲକ୍ଷ୍ମଣଙ୍କୁ ସଙ୍ଗେ ସଙ୍ଗେ ଆଦେଶ ଦେଲେ । କୁକୁର ଖୁସିହୋଇ ଚାଲିଗଲା ।

# ରାବଣଠାରୁ ନୀତିଶିକ୍ଷା

ଦିନେ ରାମଚନ୍ଦ୍ର ରାଜସଭାରେ ବସିଛନ୍ତି; ଅନେକ ଯୋଗୀ, ଋଷି, ବ୍ରାହ୍ମଣ, ପଣ୍ଡିତ ଆଉ ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ ତିନିଭାଇ ମଧ୍ୟ ସେହି ସଭାରେ ବସିଛନ୍ତି । କଥା ପଡ଼ିଲା, ରାବଣ ତ ବିଶ୍ରବା ଋଷିଙ୍କର ପୁଅ, ସେ ତ ଅନେକ ଯାଗ ଯଜ୍ଞ, ଜପ, ହୋମ, ଦେବପୂଜା କରିଥିଲା । ସେ କ'ଣ କେବଳ ଇନ୍ଦ୍ର, ଚନ୍ଦ୍ର, ବରୁଣ, କୁବେର, ଯମ ଏଇ ଦେବତାମାନଙ୍କୁ କଷ୍ଟ ଦେଇ ମଲା ? ସେ ତ ପୁଣି ଗୋଟେ ରାଜ୍ୟରେ ରଜା ହୋଇଥିଲା, ତା'ଠାରେ ରାଜନୀତି, ଧର୍ମନୀତି କ'ଣ କିଛି ନଥିଲା ? ରାମଚନ୍ଦ୍ର କହିଲେ, ରାବଣ ଯେତେବେଳେ ଋଷିପୁତ୍ର ଆଉ ରଜା, ଅବଶ୍ୟ ତା'ଠାରେ ରାଜନୀତି ଥିବାର କଥା । ଯେତେବେଳେ ରାବଣ ଦେହରେ ମୋ ଶର ବାଜିବାରୁ ସେ ତଳେ ପଡ଼ିଗଲା, ମୁଁ ପଚାରିଲି, ରାବଣ ! ତୁମେ ଜଣେ ରଜା, ରାଜନୀତି, ଧର୍ମନୀତି କ'ଣ ଜାଣ, ମୋତେ କହ । ସେ କହିଲା, ମୁଁ ଯେଡ଼େ ବୀର, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳରେ ମୋ ସମାନ ବୀର ନ ଥିଲେ । ମୁଁ ବଞ୍ଚିବା ବେଳେ ବିଚାରିଥିଲି, ସବୁଲୋକେ କିପରି ସ୍ୱର୍ଗକୁ ଯିବେ, ସେଥିପାଇଁ ଗୋଟେ ପାହାଚ କରିଦେବି । ମୁଁ ତାହା ଅବଶ୍ୟ କରିପାରିଥାଆନ୍ତି; କିନ୍ତୁ ତାହା ନ କରି କେବଳ ବହୁଲୋକଙ୍କ ସଙ୍ଗେ କଳହ କରି ଲଢ଼େଇରେ ମାତି ନିନ୍ଦା ଘେନି ନିଜ ବଂଶ ମରାଇ ଏବେ ନିଜେ ମଲି । ତେବେ ହେ ରାମଚନ୍ଦ୍ର ! ମୁଁ କହୁଅଛି, ଯେବେ ଭଲ କାର୍ଯ୍ୟ କରିବାକୁ ବିଚାରିବ, ତେବେ ତାହା ଆଗେ କରିବ, ମନ୍ଦ କାର୍ଯ୍ୟ କରିବାକୁ ହେଲେ ବିଳମ୍ବରେ କରିବ ।

# ଏକଲବ୍ୟ

ପିଲାମାନେ ଶୁଣିଅଛ, ଦ୍ରୋଣାଚାର୍ଯ୍ୟଙ୍କଠାରୁ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ, ସହଦେବ ଏହି ପାଣ୍ଡବ ପାଞ୍ଚଭାଇ, ଆଉ ମଧ୍ୟ ଦୁର୍ଯ୍ୟୋଧନ ତାଙ୍କ ଭାଇମାନଙ୍କ ସହ ଶର ଲାଖ କରିବା ବିଦ୍ୟା ଶିଖିଥିଲେ । ସବୁ ଶିଷ୍ୟ ଭିତରେ ଅର୍ଜୁନ ଭଲ ଲାଖବିନ୍ଧା ଜାଣିଥିଲେ ।

ସବୁ ଭାଇମାନେ ଦ୍ରୋଣଙ୍କ ପାଖେ ଖାଇ ପିଇ ଅସ୍ତ୍ରଶିକ୍ଷା କରୁଥିଲେ । ଦିନେ ଦ୍ରୋଣାଚାର୍ଯ୍ୟ ରୋଷେଇଆକୁ ଡାକି ଗୋପନରେ କହିଥିଲେ, "ତୁମେ ଅର୍ଜୁନଙ୍କୁ କେବେ ଅନ୍ଧାରରେ ଖାଇବାକୁ ଦେବ ନାହିଁ ।" ଏଇ ସମୟରେ ରାତିରେ ଅର୍ଜୁନ ଖାଉଥିବାବେଳେ ଦୈବାତ୍ ପବନ ଯୋଗେ ଦୀପ ଲିଭିଗଲା । ଅର୍ଜୁନ ସେହି ଅନ୍ଧାରରେ ସବୁ ଦିନର ଅଭ୍ୟାସ ଥିବାରୁ ଆଲୁଅର ଅପେକ୍ଷା ନ ରଖି ଖାଇବାକୁ ଲାଗିଲେ । ସେହି ଦିନ ତାଙ୍କ ମନରେ ଏହି ବିଚାର କଲେ ଯେ ଅନ୍ଧାରରେ ଶବ୍ଦ ମାରିବା ଅଭ୍ୟାସ କଲେ ନିଶ୍ଚୟ ଲାଖ କରି ପାରିବି । ତା' ଆର ଦିନଠାରୁ ଅର୍ଜୁନ ଅନ୍ଧାରରେ ଗୁରୁଙ୍କ ଅଜଣାରେ ଶର ମାରିବା ଅଭ୍ୟାସ କଲେ । ଏହିପରି କେତେଦିନ ଗଲାପରେ ଦିନେ ରାତିରେ ଶର ଲାଖ କରିବାର ଶବ୍ଦ ଶୁଣି ଦ୍ରୋଣାଚାର୍ଯ୍ୟ ଯାଇ ଦେଖନ୍ତି ତ ଅର୍ଜୁନ ଅନ୍ଧାରରେ ଲାଖ ଅଭ୍ୟାସ କରୁଛି । ଦ୍ରୋଣାଚାର୍ଯ୍ୟ ଭାରି ଖୁସି ହୋଇ କହିଲେ, ବାବୁ ଅର୍ଜୁନ ! ତୋ ସମାନ ଲାଖ ବିନ୍ଧିବାକୁ ମୋ ଶିଷ୍ୟ ଭିତରେ ଆଉ କେହି ନାହିଁ । ଅର୍ଜୁନ ଗୁରୁଙ୍କଠାରୁ ପ୍ରଶଂସା ଶୁଣି ମନେ ମନେ ବଡ଼ ଖୁସି ହେଲେ ।

ଆଚାର୍ଯ୍ୟ ଦ୍ରୋଣ ପାଣ୍ଡବ ପାଞ୍ଚଭାଇଙ୍କୁ, ଦୁର୍ଯ୍ୟୋଧନ ଆଉ ତାହାର ଭାଇମାନଙ୍କୁ ଶର ଲାଖକରି ଜାଣିବା ବିଦ୍ୟା ଶିଖାଇଲେ । ଦ୍ରୋଣଙ୍କର ପ୍ରଶଂସା ଚାରିଆଡ଼େ ବ୍ୟାପିଗଲା । ହଜାର ହଜାର ରଜା, ରଜାପୁଅ

ଦ୍ରୋଣଙ୍କଠାରୁ ଲାଖବିନ୍ଧା ବିଦ୍ୟା ଏବଂ ଯୁଦ୍ଧର ଅନ୍ୟାନ୍ୟ କୌଶଳ ଶିଖିବା ପାଇଁ ଆସିଲେ । ସେ କାଳରେ ହିରଣ୍ୟଧନୁ ବୋଲି ଜଣେ ଶବରରଜା ଥିଲେ । ତାଙ୍କ ପୁଅ ଏକଲବ୍ୟ ଧନୁଶର-ବିଦ୍ୟା ଶିଖିବା ପାଇଁ ଦ୍ରୋଣାଚାର୍ଯ୍ୟଙ୍କ ପାଖରେ ପହଞ୍ଚିଲେ । ସେ କାଳରେ ବ୍ରାହ୍ମଣମାନେ ନୀଚଜାତି ଶବରଙ୍କୁ ବିଦ୍ୟାଶିକ୍ଷା ଦେବାର ବିଧି ନ ଥିଲା । ତେଣୁ ଦ୍ରୋଣାଚାର୍ଯ୍ୟ ଏକଲବ୍ୟଙ୍କୁ ଅସ୍ତ୍ରବିଦ୍ୟା ଶିକ୍ଷା ନ ଦେଇ ଫେରାଇ ଦେଲେ; ମାତ୍ର ଏକଲବ୍ୟ ମନେ ମନେ ଦ୍ରୋଣଙ୍କୁ ଗୁରୁ ଭାବି ବଣକୁ ଫେରିଗଲେ । ବଣରେ ଦ୍ରୋଣଙ୍କ ଭଳି ରୂପଟିଏ ମାଟିରେ ଗଢ଼ିଲେ । ସେହି ମାଟିମୂର୍ତ୍ତିକୁ ଗୁରୁ ଜ୍ଞାନକରି ନିଜେ ନିଜେ ଶର ଲାଖ କରି ଜାଣିବା ବିଦ୍ୟା ଶିଖିବାକୁ ଲାଗିଲେ । ଗୁରୁଙ୍କଠାରେ ଏକଲବ୍ୟଙ୍କର ଭାରି ଭକ୍ତି ଥିଲା । ସେ ଶର ମାରି ଜାଣିବାରେ ଦିନକୁ ଦିନ ବଡ଼ ଦକ୍ଷ ହୋଇ ଉଠିଲେ ।

ଦିନେ ପାଣ୍ଡବ ପାଞ୍ଚଭାଇ, ଆଉ ମଧ୍ୟ ଦୁର୍ଯ୍ୟୋଧନଙ୍କ ଭାଇମାନେ ଶିକାର କରିବା ପାଇଁ ଗୁରୁଙ୍କ ଅନୁମତି ମାଗିଲେ । ଦ୍ରୋଣାଚାର୍ଯ୍ୟ ଅନୁମତି ଦେବାରୁ ସବୁ ଭାଇ ରଥରେ ଚଢ଼ି ବଣକୁ ଗଲେ । ସେ ସମୟରେ ଗୋଟିଏ ଲୋକ ଶିକାର କରିବା ପାଇଁ ଜାଲ, ଗୋଟିଏ କୁକୁର ନେଇ ରଥ ପଛେ ପଛେ ଗଲା । ବଣ ଭିତରେ ରଥରୁ ଓହ୍ଲାଇ ପାଣ୍ଡବ ଆଉ କୌରବମାନେ ଯେ ଯାହା କାମରେ ଲାଗିଲେ; କୁକୁରଟି ସେଠୁ ଯାଇଁ ସେହି ଏକଲବ୍ୟ ଶବର ପାଖରେ ପହଞ୍ଚିଲା । ଏକଲବ୍ୟ ତ ସବୁବେଳେ ଶରଲାଖ ବିଦ୍ୟା ଶିଖିବାରେ ଲାଗିଥିଲେ । ଏକେ ତ ଶବର ଜାତି, ଦେଖିବାକୁ କାଳିଆ, ସେଥିରେ ପୁଣି ଦେହ-ମୁଣ୍ଡ ନ ଭାବି ସବୁବେଳେ ଲାଖବିଦ୍ୟା ଶିଖିବାରେ ମାତିଥିବାରୁ ଲୁଗାପଟା ମଇଳା, ମୁଣ୍ଡରେ ମଧ୍ୟ ଜଟା ଥିଲା । କୁକୁର ଏଭଳି ରୂପ ଦେଖି ଭାରି ଚିତ୍କାର କଲା । ଏକଲବ୍ୟ ନିଜର ଲାଖବିନ୍ଧା-ବିଦ୍ୟାର ପରିଚୟ ଦେବାପାଇଁ ସାତୋଟି ଶର ସେହି କୁକୁରର ପାଟି ଭିତରେ ଏକାବେଳକେ ପ୍ରବେଶ କରାଇଦେଲେ । କୁକର ପାଟି ମେଲା ଥିଲାବେଳେ ସାତଟା ଶର ଏକ ସମୟରେ ଭର୍ତ୍ତି କରାଇଦେବା ସହଜ ବାଣୁଆର କାର୍ଯ୍ୟ ନୁହେଁ । କୁକୁର ପାଟିରେ ଶର ପଶିବାରୁ ସେ ହଠାତ୍ ଦୌଡ଼ି ଦୌଡ଼ି ଅର୍ଜୁନ ପ୍ରଭୃତି ଯେଉଁଠି ଥିଲେ, ସେଠାରେ

ପହଞ୍ଚିଗଲା । ଏମାନେ କୁକୁରକୁ ଦେଖି ତଟସ୍ଥ । କିରେ, ଏପରି କିଏ ଶର ମାରିଲାବାଲା ଅଛି, ଏକାବେଳକେ ସାତଟା ଶର କୁକୁର ପାଟିରେ ପ୍ରବେଶ କରାଇଦେଲା !!! ସମସ୍ତେ ମନେ ମନେ ଭାରି ଲଜ୍ଜିତ ହେଲେ, ଆଉ ମଧ ଶର ମାରିଥିବା ଲୋକର ଭାରି ପ୍ରଶଂସା କଲେ । ତହୁଁ ସେ ଲୋକକୁ ବଣ ଭିତରେ ଖୋଜି ଖୋଜି ପାଇଲେ । ଦେଖିଲେ, ଲୋକଟା ଦେଖିବାକୁ କାଳିଆ, ମଇଳା ଲୁଗା ପିନ୍ଧିଛି, ମୁଣ୍ଡରେ ଗୁଡ଼ାଏ ଜଟା, ମାତ୍ର ସବୁବେଳେ ଶରଲାଖ କରୁଛି । ତାକୁ ପରିଚୟ ମାଗିବାରୁ ସେ କହିଲା ମୁଁ ହିରଣ୍ୟଧନୁ ଶବର ରଜାର ପୁଅ, ମୋ ନାଁ ଏକଲବ୍ୟ । ଦ୍ରୋଣାଚାର୍ଯ୍ୟଙ୍କୁ ଗୁରୁ କରି ମୁଁ ସବୁବେଳେ ଏହି ଧନୁର୍ବିଦ୍ୟା ଶିଖୁଅଛି ।

ପାଣ୍ଡବ ଆଉ କୌରବମାନେ ରଥରେ ଚଢ଼ି ପୁଣି ଗୁରୁଗୃହକୁ ଫେରିଗଲେ । ବଣରେ ଘଟିଥିବା କଥା ଗୁରୁଙ୍କୁ କହିଲେ । ଅର୍ଜୁନ ଏକଲବ୍ୟ କଥା ମନେ ମନେ ଗୁଣି ହେଉଥା'ନ୍ତି । ଦିନେ ଗୁରୁଙ୍କୁ ଏକୁଟିଆ ଦେଖି କହିଲେ, ଆପଣ ମତେ କହିଥିଲେ, "ଅର୍ଜୁନ, ତୋ ସମାନ ଲାଖ ବିନ୍ଧିବାରେ ଯୋଗ୍ୟ ଶିଷ୍ୟ ଆଉ ଏ ପୃଥିବୀରେ ନାହିଁ ।" ତେବେ ଏକଲବ୍ୟ ଏକାଥରକେ ସାତଟି ଶର ବିନ୍ଧି କୁକୁର ପାଟିରେ ପ୍ରବେଶ କରାଇବା ଭଳି କାର୍ଯ୍ୟ ତ ମୋ ହାତରେ ହେବନାହିଁ । ଆପଣଙ୍କ ଶିଷ୍ୟ ଏକଲବ୍ୟ ଶବର ତାହା କରିପାରିଲା, ଏ କିପରି କଥା ? ସେ ଗୋଟେ ଶବର ପିଲା ହୋଇ ସମସ୍ତଙ୍କ ଠାରୁ ଏପରି ଭଲ ଲାଖବିନ୍ଧା କିପରି ଶିଖିଲା ? ଏକଥା ଶୁଣି ଆଚାର୍ଯ୍ୟ ଦ୍ରୋଣ ଭାରି ଆଶ୍ଚର୍ଯ୍ୟ । ଅର୍ଜୁନଙ୍କୁ ସଙ୍ଗରେ ଘେନି ବଣକୁ ଗଲେ । ସେଠାରେ ଏକଲବ୍ୟ ନିକଟରେ ପହଞ୍ଚିବା ମାତ୍ରେ ସେ ଚିହ୍ନିପାରି ଗୁରୁଙ୍କ ପଦଯୋଡ଼ିକ ଧରି ସାଷ୍ଟାଙ୍ଗ ଦଣ୍ଡବତ କଲା, ଆଉ ହାତ ଯୋଡ଼ି ଠିଆହେଲା । ଦ୍ରୋଣାଚାର୍ଯ୍ୟ କହିଲେ, ହେ ବୀର ଏକଲବ୍ୟ ! ତୁ ଯେବେ ମୋର ଶିଷ୍ୟ ହୋଇଥିବୁ, ତେବେ ମୁଁ ଯାହା ମାଗିବି ତାହା ଦେବୁ । ସେ କଥା ଶୁଣି ଏକଲବ୍ୟ ଭାରି ଖୁସିହୋଇ କହିଲେ, ଗୁରୁଦେବ ! କଅଣ ଦେବି, ଆଜ୍ଞା କୁହନ୍ତୁ । ହେ ବ୍ରହ୍ମନ୍ ! ଆପଣ ମୋର ଗୁରୁ, ଗୁରୁଙ୍କୁ ନ ଦେବା ପଦାର୍ଥ ମୋର କିଛି ନାହିଁ । ତହୁଁ ଗୁରୁ କହିଲେ, ତୁ ଯେବେ ଦେବାପାଇଁ କହିଲୁ, ତେବେ ତୋର ଡାହାଣ ହାତର ବୁଢ଼ା ଆଙ୍ଗୁଠିଟି କାଟି

ଦାନ କର । ଏକଲବ୍ୟ ସବୁବେଳେ ସତ୍ୟ ରକ୍ଷା କରୁଥିଲେ । ଆଚାର୍ଯ୍ୟ ଦ୍ରୋଣଗୁରୁଙ୍କ ଆଦେଶ ପାଇବା ମାତ୍ରେ ନିର୍ମଳ ମନରେ ପ୍ରତିଜ୍ଞା ରକ୍ଷାକରି ସେହି ଆଙ୍ଗୁଠିଟି କାଟି ଗୁରୁଙ୍କୁ ପ୍ରଦାନ କଲେ । ଏକଲବ୍ୟ ଗୁରୁଙ୍କଠାରେ କେବଳ ମନ ଦେଇଥିଲେ, ତାଙ୍କଠାରୁ ଦିନକ ପାଇଁ ବିଦ୍ୟା ଶିଖି ନାହାନ୍ତି, ତେବେ ମଧ୍ୟ କି ଗୁରୁଭକ୍ତି ! ନିଜର ବୁଢ଼ା ଆଙ୍ଗୁଠି, ଯାହା ଉପରେ ଶର ଲାଖ କରିବାରେ ଜୋର୍ ବେଶି ପଡ଼େ, ସେ ଆଙ୍ଗୁଠିଟି କଟିଯିବାରୁ ଏକଲବ୍ୟ ଆଉ ଆଗ ଭଳି ଶର ମାରିପାରିଲେ ନାହିଁ । ଏହା ଦେଖି ଅର୍ଜୁନ ଖୁସିହୋଇ ଗୁରୁଙ୍କ ସଙ୍ଗେ ଫେରି ଆସିଲେ ।

# ଆରୁଣି, ଉପମନ୍ୟୁ, ବେଦ

ପିଲାଏ ! ଅତି ପୁରୁଣା କାଳର ଗୁରୁ ଆଉ ଶିଷ୍ୟଙ୍କ କଥା ଆଜି ଶୁଣିବ । ଆମର ଏହି ଭାରତବର୍ଷର ଉତ୍ତର-ପଶ୍ଚିମ ଅଂଶରେ ତକ୍ଷଶିଳା ବୋଲି ଗୋଟିଏ ରାଜ୍ୟ ଥିଲା । ସେ ରାଜ୍ୟଟି ଆଜିକାଲି ପଞ୍ଜାବ ସଙ୍ଗେ ମିଶିଯାଇଅଛି । ସେହି ତକ୍ଷଶିଳାରେ ପାଞ୍ଚ କି ଛଅ ହଜାର ବର୍ଷ ଆଗେ "ଆୟୋଦ ଧୌମ୍ୟ" ବୋଲି ଜଣେ ଋଷି ଥିଲେ । ତାଙ୍କର ତିନିଗୋଟି ଶିଷ୍ୟ ତାଙ୍କ ଘରେ ରହି ପାଠ ପଢୁଥିଲେ । ତିନିଙ୍କ ନାମ ଆରୁଣି, ଉପମନ୍ୟୁ, ବେଦ ।

ସେ କାଳରେ ଗୁରୁମାନେ ଆଗେ ଶିଷ୍ୟଙ୍କ ମନ ପରୀକ୍ଷା କରି, ପରେ ଶିକ୍ଷା ଦେଉଥିଲେ । କେବେ କେବେ ଶିକ୍ଷାଦେବା ମଧ୍ୟରେ ଅବା ଶେଷରେ ଗୁରୁ ଶିଷ୍ୟର ନିଷ୍ଠାଭକ୍ତି ଦେଖିଲେ "ବିଦ୍ୟା ଫଳବତୀ ହେଉ", ଏହି ମଙ୍ଗଳ ବଚନ କହିବା ମାତ୍ରେ ଶିଷ୍ୟଠାରେ ପଢ଼ିଥିବା ବିଦ୍ୟାର ଭଲ ଫଳ ଦେଖାଯାଉଥିଲା ।

ଦିନେ ଗୁରୁ ଆରୁଣିକି ଡାକି କହିଲେ, ବତ୍ସ ଆରୁଣି ! ତୁମେ ଆମର ଫସଲ କିଆରିକୁ ଯାଇ ହିଡ଼ ବାନ୍ଧିଦିଅ, ନୋହିଲେ କିଆରିରୁ ପାଣି ଚାଲିଗଲେ ଫସଲର କ୍ଷତି ହେବ । ଆରୁଣି ଆଦେଶ ପାଇଲାମାତ୍ରେ କିଆରିରେ ପହଞ୍ଚିଲେ; ମାତ୍ର ବିନା କୋଡ଼ି କାଙ୍କରେ ହିଡ଼ ବନ୍ଦ କରିବା ଅସମ୍ଭବ । ଯେତେ କଷ୍ଟକରି ପାଣି ବନ୍ଦ କଲେ ସୁଦ୍ଧା ତାହା ବନ୍ଦ ହେଉ ନ ଥାଏ । ଶେଷରେ ଏକ ବୁଦ୍ଧି ପାଞ୍ଚିଲେ, ଯେଉଁ ଛିଦ୍ରବାଟେ ପାଣି ଚାଲିଯାଉଥିଲା, ଆରୁଣି ସେହିଠାରେ କାଦୁଅରେ ଶୋଇଲେ, ପାଣିଯିବା ବନ୍ଦ ହେଲା ।

ଋଷିଙ୍କ ମନେ ପଡ଼ିବାରୁ ସେ ଅନ୍ୟ ଶିଷ୍ୟ ଦୁହିଁଙ୍କୁ ପଚାରିଲେ, ଆରୁଣି କାହାନ୍ତି ? ଶିଷ୍ୟମାନେ କହିଲେ, ଆପଣଙ୍କ ଆଦେଶ ଘେନି ଆରୁଣି ଫସଲ କିଆରିର ପାଣିଛିଦ୍ର ବନ୍ଦ କରିବା ପାଇଁ ଯାଇଛନ୍ତି । ଏକଥା ଶୁଣି

ଋଷିବର ଶିଷ୍ୟ ଦୁହିଁଙ୍କୁ ଘେନି ଯେଉଁଠାକୁ ଆରୁଣି ଯାଇଥିଲେ, ସେହି କ୍ଷେତ୍ର ପାଖରେ ଠିଆହୋଇ ଡାକିଲେ, ହେ ଆରୁଣି ! ତୁମେ କେଉଁଠି ଅଛ ? ଆରୁଣି ଫସଲ କିଆରି ମଝିରେ ପାଣି ଭିତରେ ଥିଲେ, ତାଙ୍କ ଉପର ଦେଇ ପାଣି ସୁଅ ଚାଲିଯାଉଥିଲା । ଆରୁଣି ପାଣିରୁ ଉଠି ଗୁରୁଙ୍କ ନିକଟକୁ ଆସି ଦଣ୍ଡ ପ୍ରଣାମ କଲେ । ଗୁରୁ କହିଲେ, ତୁମେ କାଙ୍କ କୋଡ଼ିରେ ମାଟି ହାଣି ହିଡ଼ ନ ବନ୍ଧେଇ ଏପରି ପାଣିରେ ଶୋଇଥିଲ କାହିଁକି ? ଆରୁଣି କହିଲେ, ପୁଣି ଘରକୁ ଯାଇ କାଙ୍କ କୋଡ଼ି ଆଣି ହିଡ଼ ବନ୍ଧେଇବା ବେଳକୁ ଅନେକ ପାଣି କିଆରିରୁ ଚାଲି ଯାଇଥା'ନ୍ତା, ଆହୁରି ମଧ୍ୟ ଆପଣ ମୋତେ ପାଣି ବନ୍ଦ କରିବାକୁ କହି କାଙ୍କ କୋଡ଼ି ଦେଇନାହାନ୍ତି, ମୁଁ ଫେରିଯାଇଥିଲେ ଆପଣ ବିରକ୍ତ ହୋଇଥା'ନ୍ତେ, ଏହି ଭୟରେ ଫେରି ନ ଯାଇ ନିଜେ ପାଣି ଯିବା ବାଟରେ ଶୋଇ ପାଣି କିଆରିରେ ଅଟକାଇ ଥିଲି । ତହୁଁ ଉପାଧ୍ୟାୟ କହିଲେ, ପ୍ରିୟ ଆରୁଣି ତୁମକୁ ପାଣି ଭିତରୁ ଉଠିବାର ଦେଖି ତୁମ ନାମ ଆଜିଠାରୁ ଉଦ୍ଧାଳକ ଦେଲି । ତୁମର ସମଗ୍ର ବିଦ୍ୟା ଫଳବତୀ ହେଉ । ଏବେ ତୁମେ ଇଚ୍ଛାନୁସାରେ ଯେଉଁଠାକୁ ଇଚ୍ଛା ଯାଇପାର । ଆରୁଣି ଗୁରୁଙ୍କୁ ଦଣ୍ଡପ୍ରଣାମ କରି ଚାଲିଗଲେ ।

ଆଉଦିନେ ସେହି ଧୌମ୍ୟଋଷି ଉପମନ୍ୟୁ ଶିଷ୍ୟଙ୍କୁ ଆଦେଶ କଲେ, ଉପମନ୍ୟୁ ! ତୁମେ ଆମର ଗାଈମାନଙ୍କୁ ପ୍ରତିଦିନ ଚରାଇବାକୁ ନେବ । ସେହି ଅନୁସାରେ ଉପମନ୍ୟୁ ଦିନଯାକ ଗାଈ ଚରାଇ ସଞ୍ଜବେଳେ ଗାଈପଲ ଘେନି ଆସି ଗୁରୁଙ୍କୁ ନମସ୍କାର କରନ୍ତି । ଏପରି କେତେଦିନ ବିତିଗଲାରୁ ଦିନେ ଉପାଧ୍ୟାୟ ଧୌମ୍ୟ କହିଲେ, ପ୍ରିୟ ଉପମନ୍ୟୁ ତୁମେ ତ ଆମ ଗାଈ ଚରାଇବାକୁ ଯାଉଚ, ତେବେ ଏପରି ମୋଟା ଦିଶୁଛ କିପରି ? ଉପମନ୍ୟୁ କହିଲେ, ଗୁରୁଦେବ ! ମୁଁ ଭିକ ମାଗି ପେଟ ପୋଷେ । ଗୁରୁ କହିଲେ, ଆମ ବିନା ଆଦେଶରେ ତୁମେ ଏଣିକି ଏପରି କରିପାରିବ ନାହିଁ । ଯାହା ଭିକ୍ଷା କରି ଆଣିବ, ସେ ସବୁ ଆମ ଘରେ ଦେବ । ଉପମନ୍ୟୁ ପ୍ରତିଦିନ ପୂର୍ବପରି ଗାଈ ଚରାଇବାକୁ ଯାଆନ୍ତି, ଯାହା ଭିକ ଆଣନ୍ତି, ସେସବୁ ଗୁରୁଙ୍କ ପାଖରେ ଦିଅନ୍ତି । ଗୁରୁ ତାହା ଦେଖି ଭଲ କରୁଚ ବୋଲି କହନ୍ତି । ଏହିପରି କେତେଦିନ ଗାଈ ଚରାଇ ଭିକ ମାଗି ଗୁରୁଙ୍କ ପାଖେ ଦେଇ,

ସଞ୍ଜବେଳେ ଗୁରୁଙ୍କୁ ନମସ୍କାର କରୁଥିବାର ଗୁରୁ ଦେଖୁଥାଆନ୍ତି । ଏହିପରି କରୁ କରୁ ଦିନେ ନମସ୍କାର କରିବା ପରେ ଗୁରୁ ପଚାରିଲେ ଉପମନ୍ୟୁ ! ପୁଣି ତ ତୁମେ ପୂର୍ବପରି ମୋଟା ଦିଶୁଛ ? କ'ଣ କରି ପେଟ ପୋଷୁଛ ? ଉପମନ୍ୟୁ କହିଲେ, ଗୁରୁଦେବ ପ୍ରଥମେ ଯେଉଁ ଭିକ ମାଗିଥାଏ, ତାହା ତ ଆପଣଙ୍କ ପାଖରେ ଦିଏ, ତା'ପରେ ପୁଣି ଭିକମାଗି ଖାଏ । ଗୁରୁ କହିଲେ, ଗୁରୁକୁଳବାସୀ ଶିଷ୍ୟ ପକ୍ଷରେ ଏପରି ଦୁଇବାର ଭିକ୍ଷା କରିବା ଅନ୍ୟାୟ । ଏଥିରେ ଅନ୍ୟ ଭିକ୍ଷାଜୀବୀମାନଙ୍କର ବୃତ୍ତିରେ ବାଧା ଘଟିବ । ଏଥିରୁ ତୁମର ଲୋଭ ପ୍ରବଳ ଥିବାର ଜଣାପଡୁଛି । ଏକଥା ଶୁଣି ଉପମନ୍ୟୁ କହିଲେ, ଗୁରୁଦେବ ! ଆଉ ଏଣିକି ଏପରି କରିବି ନାହିଁ । ପୁଣି ତହିଁ ଆରଦିନଠାରୁ ସେ ଗାଇ ଚରାଇବାକୁ ଗଲେ; ସଞ୍ଜବେଳକୁ ଆସି ଗୁରୁଙ୍କୁ ନମସ୍କାର କଲେ ।

ଏମିତି କିଛିଦିନ କଟିଗଲା ପରେ ଗୁରୁ କହିଲେ, ଉପମନ୍ୟୁ ! ଆମେ ତ ତୁମର ଭିକ ମାଗିବା ବନ୍ଦ କରିଅଛୁଁ, ତେବେ ସୁଦ୍ଧା ତୁମ ଦେହ ପୂର୍ବପରି ମୋଟା ହୋଇଛି କିପରି ? ଉପମନ୍ୟୁ କହିଲେ, ଗୁରୁଦେବ ! ଗାଇଦୁଧ ପିଇ ପ୍ରାଣ ବଞ୍ଚାଏ । ଉପାଧ୍ୟାୟ କହିଲେ, ମୁଁ ତ ତୁମକୁ ଗାଇଦୁଧ ପିଇବାକୁ ଅନୁମତି ଦେଇନାହିଁ, ତୁମେ ପିଇଲ କିପରି ? ଏହା ତୁମ ପକ୍ଷେ ଉଚିତ ନୁହେଁ । ଉପମନ୍ୟୁ "ତଥାସ୍ତୁ" କହି ପୂର୍ବ ପରି ଗାଈ ଚରାଇବାକୁ ତହିଁ ଆରଦିନ ସକାଳୁ ଗଲେ । ସଞ୍ଜବେଳକୁ ଫେରି ଆସି ଗୁରୁଙ୍କ ପାଖେ ନମସ୍କାର କଲେ । ଗୁରୁ ଦେଖି କହିଲେ ଉପମନ୍ୟୁ ଭିକ ଆଉ ଦୁଧ ଉଭୟ ମନାକଲି, ତଥାପି ତୁମେ ପୂର୍ବଭଳି ମୋଟା ଦିଶୁଚ କିପରି ? ଉପମନ୍ୟୁ କହିଲେ, ଗୁରୁଦେବ ! ବାଛୁରି ସବୁ ମାଆଠାରୁ ଦୁଧ ପିଇବା ପରେ ତାଙ୍କ ମୁହଁରେ ଯେଉଁ ଫେଣ ଲାଗିଥାଏ, ମୁଁ ତାହା ଖାଇ ବଞ୍ଚେ । ଗୁରୁ କହିଲେ, ଏପରି କହିବା ଦ୍ୱାରା ତୁମେ ଘୋର ଅନ୍ୟାୟ କରିଅଛ ! ବାଛୁରିମାନେ ତାହା ଖାଇ ବଳୁଆ ହୁଅନ୍ତେ, ସେମାନେ ବର୍ତ୍ତମାନ କ୍ଷୀଣ ହୋଇଯିବେ, ଆଉ ଏଣିକି ଏପରି କରିବ ନାହିଁ । ଉପମନ୍ୟୁ ତଥାସ୍ତୁ କହି ତା' ଆରଦିନ ସକାଳୁ ଗାଈ ଘେନି ବଣକୁ ଗଲେ । ବଣରେ ଗାଈ ଚରେଇ ଭୋକରେ ପେଟ ଜଳିବାରୁ ଅରଖ ଗଛର ପତ୍ର ପେଟ ବିକଳରେ ଖାଇଲେ । ଅରଖ

ପତ୍ର ଭକ୍ଷଣରେ ତାଙ୍କର ଆଖି ଫୁଟିଗଲା । ସେ ଅନ୍ଧ ହୋଇ ବଣରେ ଥିବା ଗୋଟିଏ କୂପ ଭିତରେ ପଡ଼ିଗଲେ । ସୂର୍ଯ୍ୟ ଅସ୍ତ ଗଲେ, ତେବେ ସୁଦ୍ଧା ଉପମନ୍ୟୁ ଘରକୁ ଫେରିଲେ ନାହିଁ । ଏହା ଦେଖି ଧୌମ୍ୟ ଶିଷ୍ୟମାନଙ୍କୁ ସଙ୍ଗରେ ଘେନି ଉପମନ୍ୟୁଙ୍କୁ ଖୋଜିବା ନିମନ୍ତେ ବଣକୁ ଗଲେ । ବଣରେ ଡାକିଲେ, ହେ ପୁତ୍ର ଉପମନ୍ୟୁ ! କେଉଁଠି ଅଛ ? ଉପମନ୍ୟୁ କୂଅ ଭିତରେ ରହି ଗୁରୁଙ୍କ ସ୍ୱର ବାରି ବଡ଼ପାଟିରେ କହିଲେ, ଗୁରୁଦେବ ! ମୁଁ ପେଟଜ୍ୱାଳାରେ ଅରଖପତ୍ର ଖାଇ ଅନ୍ଧ ହୋଇ ଏହି କୂଅ ଭିତରେ ପଡ଼ିଛି । ଗୁରୁ କହିଲେ, ତୁମେ ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାର ଦୁହିଁଙ୍କୁ ସ୍ମରଣ କର, ସେ ତୁମକୁ ଚକ୍ଷୁ ଦେବେ । ଋଗ୍‌ବେଦରେ ଥିବା ବାକ୍ୟ ଅନୁସାରେ ଉପମନ୍ୟୁ ସ୍ତୁତି ପଢ଼ିଲେ । ତହୁଁ ଅଶ୍ୱିନୀକୁମାର ଦ୍ୱୟ ଆସି ଉପମନ୍ୟୁଙ୍କୁ ଗୋଟାଏ ପିଠା ଆଣି ଦେଲେ, କହିଲେ ହେ ଉପମନ୍ୟୁ ! ତୁମେ ଏ ପିଠା ଖାଇଲେ ଚକ୍ଷୁ ପାଇବ । ଉପମନ୍ୟୁ କହିଲେ, ଗୁରୁଙ୍କ ଅନୁମତି ନ ନେଇ କିପରି ଖାଇବି ? ସ୍ୱର୍ଗବୈଦ୍ୟ କହିଲେ, ଆମେ ଅନୁମତି ଦେଉଛୁ ଖାଅ, ତୁମ ଗୁରୁ କିଛି କହିବେ ନାହିଁ । ଉପମନ୍ୟୁ କହିଲେ, ମୁଁ ଆପଣମାନଙ୍କୁ ବହୁ ଅନୁନୟ ବିନୟ କରି କହୁଚି, ଗୁରୁଙ୍କୁ ନ ଜଣାଇ ଖାଇ ପାରିବି ନାହିଁ । ତହୁଁ ସ୍ୱର୍ଗବୈଦ୍ୟ ଉପମନ୍ୟୁଙ୍କର ଗୁରୁଭକ୍ତିରେ ଅତିଶୟ ସନ୍ତୁଷ୍ଟ ହୋଇ କହିଲେ, ଏହି ପିଠାଖାଇ ତୁମର ଆଖି ଫିଟିଯାଉ । ଏହା କହି ସେ କୁଆଡ଼େ ଚାଲିଗଲେ । ଗୁରୁ ପୁଣି ଉପମନ୍ୟୁ ପାଖରେ ପହଞ୍ଚି ପଚାରିବାରୁ ଉପମନ୍ୟୁ ସବୁକଥା କହିଲେ । ଗୁରୁ ଅନୁମତି ଦେବାରୁ ପିଠାଖାଇ ଚକ୍ଷୁଷ୍ମାନ ହେଲେ । ଗୁରୁ ଅତି ସନ୍ତୁଷ୍ଟ ହୋଇ କହିଲେ, ବତ୍ସ ଉପମନ୍ୟୁ ! ତୁମର ମଙ୍ଗଳ ହେଉ, ସମୁଦାୟ ବେଦ ଆଉ ଧର୍ମଶାସ୍ତ୍ରରେ ତୁମର ଭଲ ଜ୍ଞାନ ହେଉ ।

ଆମ ଦେଶର ପୂର୍ବକାଳର ଗୁରୁଙ୍କ ପରୀକ୍ଷା ଏହିପରି ଥିଲା । ଏ କାଳ ପରୀକ୍ଷା ଆଉ ଆଗକାଳ ପରୀକ୍ଷା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ।

# ଚତୁର୍ଥ ଭାଗ

# ଚାନ୍ଦୁ ରାୟଗୁରୁ

## ବୁଦ୍ଧି ପରୀକ୍ଷା

ଆମ ଦେଶର ନାମ ଭାରତବର୍ଷ । ଅତି ପୁରୁଣା କାଳରେ ଯୁଧିଷ୍ଠିର ଆଉ ତାଙ୍କ ଆଗପଛ ରଜାମାନେ ଇନ୍ଦ୍ରପସ୍ଥରେ ରାଜୁତି କରୁଥିଲେ । କେତେକାଳ ଏହିପରି ବିତିଗଲା । ପରେ ଦିଲ୍ଲୀ ସହରରେ ରାଜଧାନୀ ହେଲା । ଦିଲ୍ଲୀରେ ହିନ୍ଦୁ ରଜାଏ ରାଜୁତି କରିବା ଉତ୍ତାରୁ ପଠାଣମାନେ ଲଢ଼େଇରେ ଜିଣି ରାଜା ହେଲେ । ଦିଲ୍ଲୀର ଏହି ପଠାଣ ରଜାମାନଙ୍କୁ 'ବାଦଶାହ' କହନ୍ତି, ସାଧାରଣ କଥାରେ 'ପାତିସା' ମଧ୍ୟ କହିଥା'ନ୍ତି ।

ଆମର ଏହି ଓଡ଼ିଶାରେ ଅନେକ ରଜା ବାଦଶାହାଙ୍କ କଥା ମାନି ପ୍ରଜା ପାଳୁଥିଲେ । ବେଳେ ବେଳେ ବାଦଶାହ ଓଡ଼ିଶା ଗଜପତିଙ୍କ ବୁଦ୍ଧି ପରୀକ୍ଷା ପାଇଁ ନାନା କୌଶଳ କରୁଥିଲେ ।

ଥରେ ବାଦଶାହ ଆମର ଏହି ଓଡ଼ିଶା ରଜାଙ୍କ ପାଖକୁ ଚାରୋଟି ଜିନିଷ ପଠାଇଲେ । ପ୍ରଥମଟି ଖଣ୍ଡିଏ ରୋଳବାଡ଼ି । ବାଦଶାହ ପଚାରିଥିଲେ, ସେହି ରୋଳବାଡ଼ିର ଅଗ କିଏ, ମୂଳ କିଏ ? ଦ୍ୱିତୀୟଟି ହେଉଛି ଅଷ୍ଟବକ୍ର ପୋହଳା; ତହିଁରେ ସୂତା କିପରି ଗଳିବ ? ତୃତୀୟଟି ଜଣେ ପୁରୁଷବ୍ୟକ୍ତି । ସେ ଲୋକଟି ଓଡ଼ିଆ, ବଙ୍ଗଳା, ତେଲେଙ୍ଗା, ହିନ୍ଦି ଚାରି ଭାଷାରେ ଭଲ କଥା ସଫା କରି କହିପାରେ । ତା'ର ଲୁଗାପିନ୍ଧା, ଚାଲିଚଳଣ, ଖିଆପିଆ, ବେଶଭୂଷା କେତେବେଳେ ଓଡ଼ିଆଙ୍କ ପରି, କେବେ ବଙ୍ଗାଳିଙ୍କ ଭଳି କେବେ ଅବା ତେଲେଙ୍ଗାଙ୍କ ସମାନ, କେତେବେଳେ ମଧ୍ୟ ପଶ୍ଚିମା ଲୋକଙ୍କ ପରି ଦେଖାଯାଏ । ସେ ଲୋକର ନିଜ ମାତୃଭାଷା କଅଣ ? ଏ କଥା ଚିହ୍ନି ପାରିବା ତୃତୀୟ ପ୍ରଶ୍ନ । ବାକି ଜିନିଷଟି ଜଣେ

ସ୍ତ୍ରୀଲୋକ । ପ୍ରଶ୍ନ ଥିଲା, ସେ ଲୋକଟି ନୀଚ ସରଳ ସ୍ତ୍ରୀ କି ବଡ଼ ଲୋକ ଘରର ସ୍ତ୍ରୀ ।

ଓଡ଼ିଶା ରାଜା ଚାରୋଟି ପ୍ରଶ୍ନର ଉତ୍ତର କିପରି ଦେବେ ଏହି ଭାଳେଣିରେ ପଡ଼ିଲେ । ଉତ୍ତର ନ ଦେଲେ ବାଦଶାହ ରାଗିଗଲେ ସର୍ବନାଶ, ପୁଣି ଅପମାନ । ତହୁଁ ରାଜଗୁରୁଙ୍କୁ ଡକାହେଲା । ରାଜଗୁରୁମାନେ ଶ୍ରେଷ୍ଠ କୁଳୀନ ବ୍ରାହ୍ମଣ । ସେମାନେ ରାଜାଙ୍କୁ ମନ୍ତ୍ର ଦେଇ ଗୁରୁ ହୁଅନ୍ତି । ଆଉ ମଧ୍ୟ ରଜାଙ୍କ ପାଖେ ମନ୍ତ୍ରୀର କାର୍ଯ୍ୟ କରନ୍ତି । ରାଜଗୁରୁମାନେ ବୀରନରସିଂହପୁର, ବୀରହରେକୃଷ୍ଣପୁର, ବିଶ୍ୱନାଥପୁର, ଶ୍ରୀମୁକୁନ୍ଦପୁର (ଉଷୁନାବରପଦା) ପ୍ରଭୃତି ଶାସନରେ ବସବାସ କରି ପିଲାକୁଟୁମ୍ବ ରଖିଥା'ନ୍ତି । ମାତ୍ର ଏହି ଚାରି ଗାଁ'ରୁ ଚାରିଜଣ ରାଜଗୁରୁ ସବୁବେଳେ ପୁରୀ ସହରରେ ବସାକରି ରହିଥାଆନ୍ତି । ସେହି ରାଜଗୁରୁମାନେ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ସେବା ମଧ୍ୟ କରନ୍ତି । ଆଜି ଡକରା ଯାଇଥିବା ରାଜଗୁରୁଙ୍କର ନାମ ଚାନ୍ଦ ରାଜଗୁରୁ । ତାଙ୍କର ନିଜ ବସବାସ ବୀରନରସିଂହପୁର ଶାସନରେ । ରାଜା ତାଙ୍କୁ ଚାରୋଟିଯାକ ଜିନିଷ ଦେଖାଇ କହିଲେ, ରାଜଗୁରୁ । ଚଞ୍ଚଳ ଏହି ଚାରୋଟିର ଉତ୍ତର ଦେବାକୁ ହେବ ।

ରାଜଗୁରୁ ସାଙ୍ଗେ ସାଙ୍ଗେ ଗୋଟେ ପାଣିକୁଣ୍ଡ ମଗାଇଲେ । ସେଥିରେ କୁଣ୍ଡେ ପାଣି ଭର୍ତ୍ତି ହେଲା । ରୋଳବାଡ଼ିଟା ମଝିରୁ ଧରି ଧୀରେ ପାଣିରେ ଶୁଆଇ ଦେଲେ । ଯେଉଁ ପାଖକୁ ତା'ର ମୂଳ, ସେ ପାଖଟି ଆଗ ବୁଡ଼ିଗଲା । ତହୁଁ ସେ ପାଖରେ ଚିହ୍ନ ଦେଇ କହିଲେ, ମହାରାଜ ! ଏ ରୋଳବାଡ଼ିର ମୂଳ ଏହି ପାଖ । ରଜା ପଚାରିଲେ କିପରି ଜାଣିଲ ? ରାଜଗୁରୁ କହିଲେ, ଗଛର ମୂଳଆଡ଼େ ବେଶି ମଞ୍ଜ ଥାଏ । ଯେଉଁ ପାଖରେ ମଞ୍ଜ ବେଶି, ସେ ପାଖରେ ଓଜନ ବେଶି । ତାକୁ ପାଣିରେ ଶୁଆଇ ଦେଲେ, ସେ ପାଖ ଆଗ ପାଣିରେ ବୁଡ଼ିଯିବ । ତା'ପରେ ରାଜଗୁରୁ ଅଷ୍ଟବକ୍ର ପୋହଳାଟି ଧରି ତାହାର ଗୋଟିଏ ମୁହଁ ପାଖରେ ଟିକିଏ ଗୁଡ଼ ଲଗାଇ ଦେଇ ଖଣ୍ଡିଏ ସୂତାର ଗୋଟେ ପାଖରେ ପୁଣି ଟିକିଏ ଗୁଡ଼ ଲଗେଇଦେଇ କେତେଗୁଡ଼ିଏ ପିମ୍ପୁଡ଼ି ଆଣି ଗୁଡ଼ ଲାଗିଥିବା ପୋହଳା ପାଖେ ଛାଡ଼ିଦେଲେ । ଅଷ୍ଟବକ୍ର ପୋହଳାର ଯେଉଁ ଯେଉଁ ପାଖରେ ଗୁଡ଼ ନ ଥିଲା, ସେହି ଛିଦ୍ର ପାଖରେ ସୂତାଟି ରଖିଦେବାରୁ ପିମ୍ପୁଡ଼ିମାନେ ପୋହଳାର

ଆରପାଖ ଗୁଡ଼ ବାସନା ପାଇ ଭିତରେ ଭିତରେ ସୂତାଟି ଟାଣିନେଇ ଆରପାଖରେ ପହଞ୍ଚିଲେ । ତହୁଁ ରାଜଗୁରୁ ସୂତାଟି ପୋହଳାର ଦି'ପାଖେ ଗୁନ୍ଥାମାଳ ପରି ଧରି ରଜାଙ୍କୁ ଦେଲେ ।

ଦିନେ ରାଜଗୁରୁ ଗୋଟିଏ ମଲା ସାପ ଲୁଚେଇ କରି ଆଣି ଘରେ ରଖାଇଲେ । ଘରର ଯେଉଁ ସ୍ଥାନରେ ବାଦଶାହ ପଠାଇଥିବା ପୁରୁଷଟି ଶୁଏ, ତାରି ସିଧାରେ ଚାଳରେ ଗୋଟେ ଛିଦ୍ର କରାଇଲେ । ଏ କଥା ଅବଶ୍ୟ ସେ ପୁରୁଷ ଜାଣେ ନାହିଁ । ପୁରୁଷଟି ଦିନରେ ଖାଇପିଇ ଶୋଇଲା, ତାକୁ ଛାଇନିଦ ଧରି ଆସିଛି, ଏପରି ସମୟରେ ଚାଳ ଛିଦ୍ରବାଟେ ସେହି ମଲା ସାପଟାକୁ ପକାଇଦେଲେ । ପୁରୁଷଟା ହଠାତ୍ ଭୟରେ ଚମକିପଡ଼ି କହିଲା, 'ଆବ୍‌ବା ନାଇନା' (ମୋ ବାପରେ) । ଏ କଥା ଶୁଣି ରାଜଗୁରୁ ରଜାଙ୍କୁ ପୁରୁଷର ମାତୃଭାଷା କ'ଣ, ଏ କଥା ପରୀକ୍ଷା ପାଇଁ ଯେଉଁ କୌଶଳ କରିଥିଲେ, ତାହା କହିସାରି କହିଲେ, ଏ ଲୋକଟା ତେଲେଙ୍ଗା । କାହିଁକି ନା, ଲୋକେ ବିପଦରେ ପଡ଼ିଲେ, ନିଜ ମାତୃଭାଷାରେ ହଠାତ୍ କହି ପକାଏ । ସାପ ପଡ଼ିବାମାତ୍ରେ ସେ ତେଲୁଗୁ ଭାଷାରେ କହିଅଛି । ତେଣୁ ଏହାର ମାତୃଭାଷା ତେଲୁଗୁ ।

କିଛିଦିନ ଗଲା ପରେ ରାଜଗୁରୁ ଗୁଡ଼ିଏ ବଟାହଳଦୀ ମଗାଇଲେ । ସେ ସ୍ତ୍ରୀଲୋକଟିକୁ କହିଲେ, ରଜାଙ୍କ ବେଷ୍ଟପୋଖରୀକୁ ଯାଇ ଏ ହଳଦୀ ଲଗାଇ ଗାଧୋଇ ଆସ । ନିଜେ ସେଠାରୁ ଚାଲିଯାଇ ସେହି ପୋଖରୀର କିଛି ଦୂରରେ ଲୁଚି ରହିଲେ । ସ୍ତ୍ରୀଲୋକଟି ହଳଦୀ ଧରି ଆଗେ ଗୋଡ଼ରେ ଲଗେଇଲା । ତା' ଦେଖି ରାଜଗୁରୁ ରଜାଙ୍କୁ କହିଲେ, ଏ ସ୍ତ୍ରୀଟି ଉଚ୍ଚବଂଶର ନୁହେଁ । କାହିଁକି ନା ନୀଚ ଘର ସ୍ତ୍ରୀମାନେ ଆଗେ ଗୋଡ଼ରେ ହଳଦୀ ଲଗାନ୍ତି ।

ଏପରି ଚାରୋଟିଯାକ ପ୍ରଶ୍ନର ଉତ୍ତର ଦେଇ ସେହି ପରୀକ୍ଷା ଜିନିଷମାନ ବାଦଶାହଙ୍କ ପାଖକୁ ପଠାଇ ଦେଲେ । ରାଜା ଖୁସି ହୋଇ ତାଙ୍କୁ ରାୟଗୁରୁଙ୍କୁ ବହୁତ ପୁରସ୍କାର ଦେଲେ ।

ବୁଦ୍ଧିମାନ ବ୍ୟକ୍ତିକୁ ସବୁକାଳେ ସବୁଠାରେ ପୁରସ୍କାର ମିଳେ ।

# କାଞ୍ଚୀ ବିଜୟ

ଓଡ଼ିଶାର ଗଜପତି ରାଜାମାନଙ୍କ ଭିତରେ ପୁରୁଷୋତ୍ତମ ଦେବ ଜଣେ ଭଲ ରାଜା ଥିଲେ । ତାଙ୍କର ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କଠାରେ ଭାରି ଭକ୍ତି ଥିଲା । ଲଢ଼େଇ କରି ନିଜ ରାଜ୍ୟ ବଢ଼େଇବାରେ ସେ ବଡ଼ ସମର୍ଥ ଥିଲେ । ଓଡ଼ିଶାରେ ଦକ୍ଷିଣମୁଲକ ଗୋଦାବରୀ ନଈର ଆରପାଖେ କର୍ଣ୍ଣାଟ ରାଜ୍ୟକୁ ଥରେ ସେ ଲଢ଼େଇ କରିବାକୁ ଯାଇଥିଲେ । ଲଢ଼େଇର କାରଣ ଶୁଣ ।

କର୍ଣ୍ଣାଟର ସେକାଳର ରାଜଧାନୀ ନାଁ' କାଞ୍ଚୀ । କାଞ୍ଚୀ ରାଜାଙ୍କର ପଦ୍ମାବତୀ ବୋଲି ଗୋଟିଏ ବଡ଼ ସୁନ୍ଦରୀ ଝିଅ ଥିଲା । ଓଡ଼ିଶା ଗଜପତି ପୁରୁଷୋତ୍ତମ ଦେବ ଭାରତ ମଧ୍ୟରେ ଭଲ ଜାତୀୟା ରାଜା, ଦେଖିବାକୁ ବଡ଼ ସୁନ୍ଦର, ଲକ୍ଷେ ରଜାରେ ମଉଡ଼ମଣି, ସାକ୍ଷାତ୍ ଜଗନ୍ନାଥ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା ବୋଲି ଆମ ଦେଶର ଲୋକେ ମାନନ୍ତି । ଏହି ହେତୁରୁ ପଦ୍ମାବତୀକୁ ପୁରୁଷୋତ୍ତମ ଦେବଙ୍କ ସଙ୍ଗେ ବିଭାଦେବା ପାଇଁ କଥା ପଡ଼ିଲା । ଗୁଣ୍ଡିଚାଯାତ୍ରା ଦେଖିବା ଇଚ୍ଛାରେ କାଞ୍ଚୀରାଜା ପୁରୁଷୋତ୍ତମ କ୍ଷେତ୍ରକୁ ଆସିଲେ । ଆସି ଦେଖନ୍ତି ତ ପୁରୀର ମହାରାଜା ତିନି ରଥରେ ଛେରା ପହଁରା କରୁଛନ୍ତି । ଗୁଣ୍ଡିଚାଯାତ୍ରାର ପହିଲି ଦିନ ସକାଳୁ ମହାପ୍ରଭୁମାନେ ରଥରେ ବିଜେ ନ ହେଉଣୁ ଆଗେ ବାସନା ପାଣି ପକାଇ ରୁପା ପହଁରାରେ ରଥ ଉପରମାନ ଓଳାଇ ଦେବାର ନାମ ଛେରାପହଁରା । ଏ କାର୍ଯ୍ୟ ନିଜେ ଗଜପତି ରାଜା କରନ୍ତି । ତାଙ୍କ ଅଭାବରେ ତାଙ୍କ ପ୍ରତିନିଧି ମୁଦିରଥ ସେ କାମ ଚଳାଏ; ମାତ୍ର କାଞ୍ଚୀର ରାଜା ଆସିବା ବର୍ଷ ନିଜେ ରାଜା ସେ କାମ କରିଥିଲେ । ଏକଥା ଦେଖି କାଞ୍ଚୀରାଜା ନିଜ ରାଜଧାନୀକୁ ଫେରିଯାଇ ପ୍ରକାଶ କଲେ ଯେ, ପୁରୀ ମହାରାଜା ଗୁଣ୍ଡିଚାଯାତ୍ରାର ମହାପ୍ରଭୁଙ୍କ ରଥରେ ମେହେନ୍ତର ପରି ପହଁରା କାମ କରନ୍ତି । ଏଭଳି ଛୋଟକାମ କରିବା ରାଜାକୁ ମୋ ଝିଅ ବିଭା ହେବନାହିଁ । ଏ କଥାରେ ପୁରୁଷୋତ୍ତମ ଦେବ ଅପମାନିତ ହୋଇ ଲଢ଼େଇ କରିବାପାଇଁ କର୍ଣ୍ଣାଟ ଦେଶକୁ ଯାତ୍ରାକଲେ ।

କର୍ଣ୍ଣାଟ ଆମ ଓଡ଼ିଶାଠାରୁ ବହୁତ ଦୂର । ଏତେଦୂର ପାଇକ ସୈନ୍ୟମାନେ ଚାଲିଚାଲି କ୍ଳାନ୍ତ ହୋଇଥିଲେ । ଏଣୁ ପହିଲି ଲଢ଼େଇରେ ପୁରୁଷୋତ୍ତମ ଦେବ ହାରିଗଲେ । ପୁରୀ ଫେରିଆସି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କଠାରେ ଜଣାଇଲେ । ମହାପ୍ରଭୁ ସ୍ୱପ୍ନରେ କହିଲେ, "ମୁଁ ଆଉ ବଡ଼ ଠାକୁର, ଦୁହେଁ ମିଶି କାଲି ସକାଳୁ କର୍ଣ୍ଣାଟକୁ ଯିବୁ, ତୁ ଆମ ପଛରେ ସୈନ୍ୟସାମନ୍ତ ଘେନି ଯାତ୍ରା କରିବୁ ।"

ପୁରୁଷୋତ୍ତମ ଦେବ ସେଦିନ ରାତି ପାହିଲା ମାତ୍ରେ କାଞ୍ଚୀ ଯିବାକଥା ମନ୍ତ୍ରୀଙ୍କୁ କହିଲେ । ସେ ଅନୁସାରେ ସବୁ ଯୋଗାଡ଼ ହେବାରୁ ରାଜା ସୈନ୍ୟମାନଙ୍କୁ ଘେନି ଲଢ଼େଇକୁ ଗଲେ । ସେକାଳରେ ରେଳ ନଥିଲା, ସମୁଦ୍ର କୂଳେ କୂଳେ ଚିଲିକା ପାଖ ଦେଇ ଦକ୍ଷିଣକୁ ଯାଉଥିଲେ । ବାଟରେ ପୁରୁଷୋତ୍ତମ ଦେବଙ୍କୁ ମାଣିକ ବୋଲି ଗୋଟିଏ ଗଉଡୁଣୀ ହୀରା-ନୀଳା-ମଣି-ମାଣିକ୍ୟ ଖଞ୍ଜା ମୁଦିଟିଏ ଦେଇ କହିଲା, "ମହାରାଜ ! ଆଗରେ ଦୁଇଟି ଭାଇ, ଦେଖିବାକୁ ଅତି ସୁନ୍ଦର, ଦିହରୁ ଚାରିଆଡ଼କୁ କିରଣ ଫାଟି ପଡୁଥାଏ, ଗୋଟିଏ ଭାଇ ହଳଦିଆ ପାଟ, ଆଉ ଗୋଟିଏ ଭାଇ ନେଳିଆ ପାଟ ପିନ୍ଧିଛନ୍ତି, ମୋଠାରୁ ଦିହେଁଯାକ ଦହି ଖାଇ ଏହି ମୁଦି ବନ୍ଧା ଦେଇ କହିଲେ, "ଆମ ପଛରେ ସୈନ୍ୟ ଘେନି ପୁରୁଷୋତ୍ତମ ଦେବ ଆସୁଛନ୍ତି, ତାଙ୍କୁ ଯାକୁ ଦେଖାଇ ତୋ' ପଇସା ନେବୁ, ମୁଦି ତାଙ୍କୁ ଦେବୁ ।" ମୁଁ ଆପଣଙ୍କ ଅପେକ୍ଷାରେ ବସିଥିଲି । ଏବେ ମୁଦି ନେଇ ମୋ ଦହି ପଇସା ଦିଅନ୍ତୁ ।" ରାଜା ମହାପ୍ରଭୁଙ୍କ ହାତର ମୁଦି ଜାଣି ପାରି ଭାରି ଖୁସି ହେଲେ, ଦହିକିଣା ସ୍ଥାନର ନାମ ମାଣିକପାଟଣା ଦେଇ ସାଥି ସାଥି ସେଠାରେ ଗୋଟିଏ ଗାଁ' ବସାଇଲେ । ଆଜିଯାଏ ସେହି ମାଣିକପାଟଣା ଗାଁ' ଅଛି ।

ତହୁଁ ପୁରୁଷୋତ୍ତମ ଦେବ ଯାତ୍ରା କରି କାଞ୍ଚୀରେ ପହଞ୍ଚିଲେ । ଲଢ଼େଇରେ କର୍ଣ୍ଣାଟ ରାଜାଙ୍କୁ ଜିଣି ତାଙ୍କ ଝିଅ ପଦ୍ମାବତୀକୁ ଆଉ ତାଙ୍କ ଇଷ୍ଟଦେବତା ଗଣେଶଙ୍କୁ ଘେନି ପୁରୀ ଫେରିଆସିଲେ । କିଛିଦିନ ପରେ ପଦ୍ମାବତୀଙ୍କୁ ବିବାହ କରି ସୁଖରେ ପ୍ରଜାପାଳନ କରିଥିଲେ ।

# ଗଦାଧର ରାଜଗୁରୁ

**ବୀ**ର ହରେକୃଷ୍ଣପୁର ଗାଁ'ରେ ଗଦାଧର ରାଜଗୁରୁ ବୋଲି ଜଣେ ବଡ଼ ପଣ୍ଡିତ ଥିଲେ । ସେ ପୁରୀ ମହାରାଜାଙ୍କର ଜଣେ ପ୍ରଧାନ ରାଜଗୁରୁ । କାବ୍ୟରେ, ନାଟକରେ, ପୁରାଣରେ, ସ୍ମୃତିରେ ବହୁ ଶାସ୍ତ୍ରରେ ତାଙ୍କ ଭଲ ଜ୍ଞାନ ଥିଲା । ସ୍ୱଭାବ ମଧ୍ୟ ଅତି ଭଲ । ଲୋକେ ତାଙ୍କୁ ଭାରି ଭକ୍ତି କରନ୍ତି । ଖଣ୍ଡିଏ ସ୍ମୃତିଶାସ୍ତ୍ର ଲେଖିବା ପାଇଁ ତାଙ୍କୁ ଅନେକ ଲୋକ ଲଗାଇଲେ । ସେ କହନ୍ତି ଯେ, ଯେ ଇଚ୍ଛା ସେ ସ୍ମୃତି ଲେଖିଲେ ଲୋକେ ମାନିବେ ନାହିଁ । ଯେ ଲେଖିଲେ ସମସ୍ତେ ମାନି ଚଳିବେ, ସେ ଲେଖନ୍ତୁ, ମୁଁ ବଡ଼ ପଣ୍ଡିତ ନୁହେଁ, ମୋଠାରୁ ବହୁତ ବଡ଼ ପଣ୍ଡିତ ଅଛନ୍ତି, ମୁଁ କଅଣ ଲେଖିବି । ଏହା କହିଲେ ସୁଦ୍ଧା ଲୋକେ ତାଙ୍କୁ ସେହି ସ୍ମୃତି ଲେଖା କଥା ବାରମ୍ବାର କହନ୍ତି । କାହିଁକି ନା ସେ ପ୍ରକୃତରେ ଜଣେ ବଡ଼ ପଣ୍ଡିତ ।

ବହୁତ ଲୋକ ରାଜଗୁରୁଙ୍କୁ ଏପରି କହିବାରୁ ସେ ଦିନେ ଭାବିଲେ ମୁଁ କଅଣ ସ୍ମୃତି ଲେଖିଲେ ଲୋକେ ମାନିବେ । ଆଚ୍ଛା, ଆଗ ଏହାର ଗୋଟିଏ ପରୀକ୍ଷା କରିବା । ଦିନେ ରାଜଗୁରୁ ତାଙ୍କ ଗାଁ' ପୋଖରୀରେ ଗାଧୋଉଛନ୍ତି, ଯା ଭିତରେ ଆଉ କେତେ ବ୍ରାହ୍ମଣ ଗାଧୋଇବାକୁ ଆସିଲେ । ରାଜଗୁରୁ ପରୀକ୍ଷା କରିବା ପାଇଁ ଗାଧୁଆ ପାଧୁଆ ସାରି ସନ୍ଧ୍ୟା ତର୍ପଣ କରି ବସିଲେ । ଯେତେବେଳେ ସନ୍ଧ୍ୟା ତର୍ପଣ କରି ବସିଲେ, ଆଗ କଛାଟା ଫିଟେଇ ସନ୍ଧ୍ୟା ତର୍ପଣ କଲେ । କଛା ପିଟାଇ ସନ୍ଧ୍ୟା ତର୍ପଣ କରିବା ତ ଦୂରରେ କଥା, ଦୈବାତ୍ କଛା ଫିଟିଥିଲେ ଲୋକେ କଛା ମାରି ଦେବତା ଆଉ ପିତୃକାର୍ଯ୍ୟ କରନ୍ତି । କାହିଁକି ନା କଛା ଫିଟିଥିଲେ ଦେବତା ନା ପିତୃକାର୍ଯ୍ୟ କରିବାକୁ ଆମେ ହିନ୍ଦୁ ଶାସ୍ତ୍ରରେ ମନା । ସେତେବେଳେ

ଆଉ ଯେତେ ବ୍ରାହ୍ମଣ ଗାଧୋଉଥିଲେ, ସେ ସବୁ ବ୍ରାହ୍ମଣ ରାଜଗୁରୁ କଚ୍ଛା ଫିଟାଇ ସନ୍ଧ୍ୟା ତର୍ପଣ କରିବାର ଦେଖି ତାଟକା ହୋଇ ଯେ ତା' ମୁହଁକୁ, ସେ ଯା ମୁହଁକୁ ଚୁହାଁଚୁହିଁ ହେଲେ । ରାଜଗୁରୁଙ୍କୁ ଏକଥା ପଚାରିବାକୁ କାହାରି ସାହସ ପଟିଲା ନାହିଁ । ସମସ୍ତେ ମନେ ମନେ ଭାବିଲେ, ସେମିତି ବିଧି କ'ଣ ଅଛି ବୋଲି ରାଜଗୁରୁ ଏପରି କରିଛନ୍ତି ସିନା । ନ ହେଲେ ରାଜଗୁରୁଙ୍କ ଭଳିଆ ପଣ୍ଡିତ ଏହା କାହିଁକି କରନ୍ତେ ? ଏହି ବିଶ୍ୱାସରେ ଆଉ ସବୁ ବ୍ରାହ୍ମଣେ ଗାଧୁଆ ସାରି କଚ୍ଛାମାନ ଫିଟାଇ ସନ୍ଧ୍ୟା ତର୍ପଣ କରିବାକୁ ଧାଡ଼ି ହୋଇ ବସିଗଲେ । ଲୋକେ କଚ୍ଛା ଫିଟାଇ ଯେମିତି ସନ୍ଧ୍ୟା କରିବାକୁ ଆରମ୍ଭ କରିଛନ୍ତି, ସେମିତି ରାଜଗୁରୁ କହିଲେ, କିଏ ଆପଣମାନେ, କଚ୍ଛା ଫିଟାଇ କିପରି ସନ୍ଧ୍ୟା ତର୍ପଣ କରୁଛନ୍ତି ? ବ୍ରାହ୍ମଣମାନେ କହିଲେ, ଆପଣ କରିବାରୁ ଆମ୍ଭେମାନେ କଲୁ । ରାଜଗୁରୁ କହିଲେ, ମୁଁ ଯେଉଁଥିପାଇଁ କରୁଥିଲି, ତାହା ବୁଝିଲାଣି । କଚ୍ଛା ଫିଟା ଦେଖି ଦେବତା ପିତୃକାର୍ଯ୍ୟ କରିବା ଉଚିତ ନୁହେଁ । ଆପଣମାନେ କଦାପି ଏହା କରିବେ ନାହିଁ । ତା'ପରେ ବିଧି ଅନୁସାରେ ସନ୍ଧ୍ୟା ତର୍ପଣ କରି ଘରକୁ ଗଲେ । ରାଜଗୁରୁ ବୁଝିଲେ ଯେ, ଯେତେବେଳେ ଲୋକେ ପିଲାଦିନରୁ ଜଣାଶୁଣା କଥାରେ ବିଶ୍ୱାସ ନ କରି ମୋ କଥା କଲେ, ସେଥିରୁ ଜଣାଯାଉଛି ଯେ, ମୁଁ ସ୍ମୃତି ଲେଖିଲେ, ଲୋକେ ତାହା ମାନିବେ । ତାପରେ ରାଜଗୁରୁ ଖଣ୍ଡିଏ ବଡ଼ ସ୍ମୃତି ଲେଖିଲେ । ତାହାର ନାଁ "ଗଦାଧର ପଦ୍ଧତି" । ସେ ସ୍ମୃତି ଆଜିକାଲି ସମଗ୍ର ଓଡ଼ିଶାରେ ଚଳେ ।

ଏଥିରୁ ଜଣାଯାଉଛି, ପଣ୍ଡିତ ଲୋକ ନାନା କୌଶଳରେ ଲୋକଙ୍କ ମନ ବୁଝି ନିଅନ୍ତି । ଆଉ ମଧ୍ୟ ନିଜକୁ ଚିହ୍ନନ୍ତି ।

# ଆକବର ବାଦଶାହ

ଆଜିକି ୪୦୦ ବର୍ଷ ତଳେ ଆକବର ବୋଲି ଜଣେ ମୁସଲମାନ ଆମ ଭାରତବର୍ଷରେ ସମ୍ରାଟ ଥିଲେ । ମୁସଲମାନମାନେ ସେଖ୍, ସୟେଦ, ମୋଗଲ, ପଠାଣ, ଏହି ଚାରି ଭଳି ଅଛନ୍ତି । ତାଙ୍କ ଭିତରେ ଆକବର ମୋଗଲ ଜାତି ମୁସଲମାନ । ଏହି ଆକବରଙ୍କ ପିଲାଦିନ କଥା ଶୁଣିଲେ ତୁମ୍ଭେ ଆଶ୍ଚର୍ଯ୍ୟ ହେବ । ଯାଙ୍କ ବାପ ହୁମାୟୁନଙ୍କୁ ଜଣେ ପଠାଣ ଲଢ଼େଇରେ ହରାଇଦେଇ ଗାଦିରୁ ତଡ଼ିଦେଲା । ଶତ୍ରୁଭୟରେ ହୁମାୟୁନ ରାଜ୍ୟ ଛାଡ଼ି ଲୁଚିପଳାଇ ଯିବାବେଳେ ଆକବର ମାଆ-ପେଟରେ ଥିଲେ । ସେତେବେଳକୁ ମା'ଙ୍କର ପୂର୍ଣ୍ଣଦଶମାସ । ଦଶମାସର ପିଲା ପେଟରେ ଧରି ସମ୍ରାଟ ହୁମାୟୁନଙ୍କ ଭାରିଯା ଶତ୍ରୁଭୟରେ ହୁମାୟୁନଙ୍କ ସାଙ୍ଗେ ଅସ୍ତବ୍ୟସ୍ତ ହୋଇ ପ୍ରାଣ ବଞ୍ଚେଇବା ପାଇଁ ରାଜ୍ୟ ଛାଡ଼ି ପଳାଉଥା'ନ୍ତି । ବାଟରେ ଆମ ଦେଶର ସିନ୍ଧୁ ପ୍ରଦେଶରେ ଥିବା ଅମରକୋଟ ସହରରେ ଆକବର ଜନ୍ମହେଲେ । ଏଡ଼େ ବଡ଼ ଦେଶଟାର ସମ୍ରାଟଙ୍କ ପୁଅ; ଗୋଟେ ଛୋଟିଆ ରଜାର ଅବା ଜମିଦାରର, ନୋହିଲେ ଅବା ପ୍ରଜାପାଟକ ଘରେ ପୁଅଟିଏ ହେଲେ କେତେ ଉତ୍ସବ, କେଡ଼େ ଖୁସି ହେବାକୁ ହୁଅନ୍ତା !! ଶତ୍ରୁ ଭୟରେ ସେ କଥା କିଛିନାହିଁ, କେବଳ ଜୀବନ ବଞ୍ଚାଇବା ପାଇଁ ସେହିଦିନକର ପିଲାକୁ ଘେନି ପୁଣି ପଳେଇବାକୁ ଲାଗିଲେ । ଆମ ଦେଶ ପଶ୍ଚିମରେ କାବୁଲ ବୋଲି ଗୋଟିଏ ଦେଶ ଅଛି । ଯେଉଁ କାବୁଲମାନେ ଘୋଡ଼େଇହେବା ଲୁଗା ଆମ ଦେଶରେ ହୁମାୟୁନଙ୍କ ଭାଇ, କାମରାନ ରାଜା ଥିଲେ । ଏଇ କାବୁଲର ପଶ୍ଚିମରେ ପାରସ୍ୟ ବୋଲି ଗୋଟିଏ ଦେଶ ଅଛି ।

ହୁମାୟୁନ ସେହି ପାରସ୍ୟ ରାଜାଙ୍କ ପାଖେ ଆଶ୍ରା ନେଲେ । କିଛିକାଳ ସେଠାରେ ରହିଲେ । ତାଙ୍କରି ବଳରେ ନିଜ ଭାଇ ରାଜ୍ୟ କାବୁଲରେ ପହଞ୍ଚି ଭାଇ ସାଙ୍ଗେ ଲଢ଼େଇ କଲେ । ଲଢ଼େଇ କରିବାର ପହିଲିବେଳୁ କାମାରାନ୍ କହିଲେ, "ଦେଖ ହୁମାୟୁନ, ମୁଁ ନିଶ୍ଚେ ତୁମର ଏହି ପିଲା ପୁଅକୁ ଏହି ଜଳନ୍ତା ନିଆଁରେ ପକେଇ ପୋଡ଼ିଦେବି ।" ଲଢ଼େଇ ଲାଗିଲା, ହୁମାୟୁନ ଜିତିଲେ । ସେତେବେଳେ ଆକବରଙ୍କୁ ଚଉଦବର୍ଷ ବୟସ । ହୁମାୟୁନ କାବୁଲ ଜିଣି ପୁଣି ଆମ ଦେଶ ଭାରତକୁ ଆସିଲେ । ସେତେବେଳେ ତାଙ୍କ ଶତ୍ରୁର ନାତି ଜଣେ ରାଜା ଥିଲା । ଏହି ଚଉଦ ବରଷର ପୁଅ ଆକବର ଲଢ଼େଇରେ ଠିଆହୋଇ ଶତ୍ରୁକୁ ଜିଣିଲେ । ହୁମାୟୁନ ପୁଣି ଆମ ଦେଶର ସମ୍ରାଟ ହେଲେ । ବରଷକ ପରେ ସେ ମରିଗଲେ । ଆକବର ପନ୍ଦର ବର୍ଷ ବୟସରେ ରାଜଗାଦି ପାଇଲେ । ନିଜ ଭଲ ଗୁଣରେ ପ୍ରଜାଙ୍କ ମିଳାମିଶାରେ, ଭଲ ଭଲ ଲୋକଙ୍କୁ ଭଲ ପାଇବାରେ ସେ ସମଗ୍ର ଭାରତର ସମ୍ରାଟ ହେଲେ । ସେ ଭଲକରି ପ୍ରଜା ପାଳୁଥିଲେ । ହିନ୍ଦୁ-ମୁସଲମାନ ସମସ୍ତଙ୍କୁ ସମାନ ଆଖିରେ ଦେଖୁଥିଲେ । ସବୁ ଧର୍ମ ତାଙ୍କଠାରେ ସମାନ ଥିଲା ।

ଦିନେ ଗୋଟିଏ ବୁଢ଼ୀର ପୁଅ କୁଆଡ଼େ ପଳାଇଲା । ବୁଢ଼ୀ ବହୁତ ଖୋଜି ପୁଅକୁ ନ ପାଇ ବହୁତ କାନ୍ଦିଲା, ବହୁ ଦିନ ଉପାସ କଲା । ଦିନେ ଆକବର ସେହି ବୁଢ଼ୀ ଦୁଆରମୁହଁ ଦେଇ ଯାଉଥିଲେ । ବୁଢ଼ୀ ବାଦଶାହ ଯିବାର ଶୁଣି ଆକବରଙ୍କ ଆଗରେ ଠିଆହେଲା । ସମ୍ରାଟଙ୍କୁ ଓଗାଳି ବାଟ ଛାଡ଼ିଲା ନାହିଁ । ଆକବର ପଚାରିବାରୁ କହିଲା, 'ମୋ ପୁଅ ଛ ମାସ ହେଲା କୁଆଡ଼େ ପଳାଇଛି, ଖୋଜି ଆଣିଦିଅ । ତୁମେ ପରା ସାରା ପୃଥିବୀର ରଜା ।' ଆକବର ହସି ହସି କହିଲେ, ତୁମ ପୁଅ କୁଆଡ଼େ ଗଲା, ମୁଁ କାହୁଁ ଆଣିଦେବି ? ମୋ ରାଜ୍ୟ ତ ଛୋଟିଆ ନୁହେଁ, ତୁମର ଏହି ସହର ଭଳି ନୁହେଁ ଯେ ଲୋକ ପଠାଇ ଖୋଜାଇ ଦେବି ? ବୁଢ଼ୀ କହିଲା, ପ୍ରଜାଙ୍କ ଦୁଃଖ ଗୁହାରି ଶୁଣିବା ତୁମର କାମ । ଯେବେ ଏଡ଼େବଡ଼ ରାଜ୍ୟ, ଏତେ ବେଶି ପ୍ରଜା ବୋଲି ସମସ୍ତଙ୍କ ହାଲଚାଲ ବୁଝିପାରିବ ନାହିଁ, ତେବେ ଏଡ଼େ ବଡ଼ ରାଇଜର ରଜା ହୋଇଛ କାହିଁକି ? ଯେଡ଼େ ରାଜ୍ୟର ରଜା ହେଲେ

ସବୁ ପ୍ରଜାଙ୍କର ହାରିଗୁହାରି ଶୁଣିପାରିବ, ସେଡ଼ିକି ରାଜ୍ୟ ରଖି ବାକୀ ସବୁ ଅନ୍ୟକୁ ଦେଇ ଦେଉନାହଁ କାହିଁକି ? ଏକଥା ଶୁଣି ଆକବର ଟିକିଏ ହସିଲେ, ଖୁସିହୋଇ ବୁଢ଼ୀକି ଗୋଟେ କୋଠାଘରେ ରଖେଇ ଦେଇ ତା'ର ଖାଇବା ପିଇବାର ବନ୍ଦୋବସ୍ତ କରିଦେଲେ । ପୁଅକୁ ଖୋଜିବା ପାଇଁ ଲୋକ ନିଯୁକ୍ତ କରାଇଲେ । ବୁଢ଼ୀର ପୁଅ ଖୋଜାହୋଇ ଆସିବାରୁ ବୁଢ଼ୀ ଆନନ୍ଦରେ ବାଦଶାହ ଆକବରଙ୍କୁ ଆଶୀର୍ବାଦ କଲା । ଏଡ଼େ ବଡ଼ ରାଜ୍ୟର ସମ୍ରାଟ ଗୋଟିଏ ସାମାନ୍ୟ ବୁଢ଼ୀର କଥାରେ ବିରକ୍ତ ନ ହୋଇ ତା' କଥା ମାନି କାର୍ଯ୍ୟ କରିବା କେଡ଼େ ଭଲ ମନୁଷ୍ୟର କାର୍ଯ୍ୟ ବୁଝି ପାରୁଥିବ ।

# କବିବର
# ରାୟ ରାଧାନାଥ ରାୟବାହାଦୁର

ପିଲାମାନେ ! ଆଜି ଆମ ଏଇ ଓଡ଼ିଶାର ନାମଜାଦା ଲୋକଙ୍କ ବିଷୟରେ କିଛି କହୁଛି, ଶୁଣ ।

ରାଧାନାଥ ରାୟ ବୋଲି ଜଣେ ଏହି ଓଡ଼ିଶାବାସୀ ବଙ୍ଗାଳି ଆମ ଏହି ଓଡ଼ିଶା ମୁଲକର ବାଲେଶ୍ୱର ଜିଲ୍ଲା କେଦାରପୁର ଗାଁ'ରେ ଜନ୍ମିଥିଲେ । ତାଙ୍କ ବାପା ଆମ ଓଡ଼ିଶାର ଉତ୍ତର-ସୀମା ମେଦିନୀପୁର ଜିଲ୍ଲାରୁ ଆସିଥିଲେ । ରାଧାନାଥ ଗାଁ' ଚାଟଶାଳୀରେ ପିଲାଦିନ ପଢ଼ାସାରି ଇଂରେଜୀ ପଢ଼ିଲେ । ଇଂରେଜୀରେ ବହୁତ ପାଠ ପଢ଼ିବାପରେ ସ୍କୁଲ ମାଷ୍ଟର ଚାକିରି ପାଇଲେ । ସେ ବଡ଼ ବୁଦ୍ଧିମାନ ଥିଲେ । ତାଙ୍କର ଆଉରି ବହୁତ ପାଠ ପଢ଼ିବାକୁ ଇଚ୍ଛା ଥିଲା; ମାତ୍ର ରୋଗୀ ହେବାରୁ ଆଉ ପଢ଼ିପାରି ନ ଥିଲେ । ଶିକ୍ଷକ ଥିବାବେଳେ ରାଧାନାଥ ଓଡ଼ିଆ ସାହିତ୍ୟ, ଓଡ଼ିଆ ଭାଷା ଚର୍ଚ୍ଚା କରୁଥିଲେ । କି ଉପାୟରେ ଓଡ଼ିଆଭାଷାରେ ପୁସ୍ତକମାନ ଲେଖି ଓଡ଼ିଆ ସାହିତ୍ୟ ବଢ଼ାଇବେ, ସବୁବେଳେ ସେ ଏହି ଚିନ୍ତା କରୁଥିଲେ । ଶିକ୍ଷକ କାମରୁ ଉନ୍ନତି କରି ସ୍କୁଲମାନ ଦେଖିବା କାମରେ ରହିଲେ । ସେହି ସମୟରେ ସେ ଓଡ଼ିଶା ଆଉ ଭାରତବର୍ଷର ନାନାସ୍ଥାନ ବୁଲି ସେହିଗୁଡ଼ିକ ସମ୍ପର୍କରେ ଅନେକ ପୁରୁଣା ଏବଂ ନୂଆ ନୂଆ କଥା ଲେଖିଲେ । ସେଗୁଡ଼ିକ ଗୀତ କରି ଲୋକଙ୍କ ନିକଟରେ ଜଣାଇଲେ । ସେ ଗୋଟିଏ ପୁରୁଣା ଘଟଣା ଶୁଣି ସେହି କଥା ନେଇ ଏପରି ଗୀତବହି ଲେଖିଲେ ଯେ, ବଡ଼ ବଡ଼ ଲୋକେ ତାଙ୍କ ଲେଖାପଢ଼ି ଛପାଇଦେଲେ । ଇଂରେଜ ସରକାର ତାଙ୍କର ଅନେକ ବହି ପିଲାଙ୍କ ପଢ଼ାବହି ଭିତରେ ମଞ୍ଜୁର କରିଦେଲେ । ଆମ ଓଡ଼ିଶାର ଦକ୍ଷିଣ ଅଞ୍ଚଳରେ ଚିଲିକା ବୋଲି ଗୋଟିଏ ହ୍ରଦ ଅଛି ।

ସେହି ହ୍ରଦଟି ଦେଖି ରାଧାନାଥ ଏପରି ଗୀତ ବହି ଲେଖିଛନ୍ତି ଯେ, ତାକୁ ଯେତେଥର ପଢ଼ିବ, କୌଶଲ୍ୟାଗଙ୍ଗ ପୋଖରୀ ଦେଖି ସେ ଗୀତ ବହି ମଧ୍ୟ ଲେଖିଛନ୍ତି । ଆଜକୁ ଦେଢ଼ଶହ ବର୍ଷ ଭିତରେ ଓଡ଼ିଶାରେ ତାଙ୍କ ଭଳି କବି ଜନ୍ମି ନାହାନ୍ତି । ସେ ବଡ଼ କବି ଥିଲେ, ଗ୍ରନ୍ଥ ଲେଖୁଥିଲେ, ଶାସ୍ତ୍ରମାନ ଚର୍ଚ୍ଚା କରୁଥିଲେ ଏବଂ କେହି ସେହିଭଳି କାମ ଅଳ୍ପ କଲେ ମଧ୍ୟ କବିବର ରାଧାନାଥ ତାଙ୍କୁ ବଡ଼ ପ୍ରଶଂସା କରୁଥିଲେ । କେହି ସାମାନ୍ୟ ଲୋକ ଗୋଟିଏ ଗୀତ ଲେଖି ତାଙ୍କ ପାଖକୁ ନେଲେ, ସେ ତାହା ଦେଖି ଭାରି ଖୁସି ହେଉଥିଲେ; ପୁଣି ଲେଖିବା ପାଇଁ ଉତ୍ସାହ ଦେଉଥିଲେ । ସେ ଯେତେ ଯେତେ ଗୀତ ବହି ଲେଖିଛନ୍ତି, ତାହା ଛାପାଖାନାରେ ଛାପାଯାଇ ରାଧାନାଥ ଗ୍ରନ୍ଥାବଳୀ ବୋଲି ଗୋଟିଏ ବଡ଼ ବହି ହୋଇଅଛି । ସେ ସରକାରଙ୍କ ଅଧୀନରେ ସାତଶ ଟଙ୍କାର ବଡ଼ ଚାକିରି ପାଇଥିଲେ । ସେ ଅନେକ ସୁନ୍ଦର ସୁନ୍ଦର ବହି ଲେଖି କବି ବୋଲି ଚାରିଆଡ଼େ ନାଁ କରିଛନ୍ତି; ମାତ୍ର ସେ ଏପରି ବିଜୟୀ ଥିଲେ ଯେ, ସଡ଼କର ଠିକ୍ ମଝିରେ ନ ଯାଇ ଏକପାଖିଆ ଚାଲୁଥିଲେ । ସେ ସ୍କୁଲ ଛାତ୍ରମାନଙ୍କୁ ଦେଖିଲେ ବଡ଼ ଆଦର କରୁଥିଲେ । ପାଠ ପଢ଼ିବାପାଇଁ ଟଙ୍କା କଉଡ଼ି ସାହାଯ୍ୟ କରୁଥିଲେ । ସେଭଳି ଲୋକ ଆଜିକାଲି ଆମ ଓଡ଼ିଶାରେ ନାହାନ୍ତି । ରାଧାନାଥଙ୍କ ଗୁଣ ଆଉ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ସରକାର ବାହାଦୁର ତାଙ୍କୁ ରାୟ ବାହାଦୁର ଉପାଧି ଦେଇଥିଲେ ।

# ଭକ୍ତକବି ରାୟ ମଧୁସୂଦନ ରାଓ ବାହାଦୁର

ରାଧାନାଥ ରାୟଙ୍କ ନାମ ଆଉ ତାଙ୍କ କାର୍ଯ୍ୟ ଜାଣିଲ । ସେ ଓଡ଼ିଶା ଆଉ ଭାରତର ଅନେକ ସ୍ଥାନର ନଈ, ପର୍ବତ, ବନ, ଭଗ୍ନଦେଉଳ, ବଡ଼ ପୁଷ୍କରିଣୀ, ହ୍ରଦ, ସମୁଦ୍ର ପ୍ରଭୃତି ବିଷୟରେ ନାନା କବିତା ଲେଖିଅଛନ୍ତି; ମାତ୍ର ଆଜି ଯେଉଁ କବିଙ୍କ ନାମ ଜାଣିବା, ସେ ଈଶ୍ୱରଙ୍କର ଜଣେ ଭକ୍ତ । ତାଙ୍କର କବିତାଗୁଡ଼ିକ ଈଶ୍ୱରଭକ୍ତିରେ ପୂର୍ଣ୍ଣ ।

ମଧୁସୂଦନ ରାଓ ପୁରୀ ସହରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାପାଙ୍କ ନାଁ ଭାଗୀରଥି ରାଓ ଇଂରେଜ ସରକାରଙ୍କ ଅଧୀନରେ ବହୁଦିନ ଚାକିରି କରି ପେନସନ ପାଇଥିଲେ । ଏମାନେ ମରାଠା ଜାତୀୟ ବୋଲି ସାଧାରଣରେ ପରିଚିତ । ମଧୁସୂଦନ ରାଓ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ସେ ଅନ୍ୟ ଧର୍ମ ଗ୍ରହଣ କଲେ ସୁଦ୍ଧା ତାଙ୍କର ପିତାଙ୍କ ପ୍ରତି ଅଟଳ ଭକ୍ତି ଏବଂ ହିନ୍ଦୁ ଦେବଦେବୀଙ୍କ ପ୍ରତି ବିଶେଷ ଆଦର ଥିଲା ।

ମଧୁସୂଦନ ରାଓ ବାପାଙ୍କୁ କିପରି ଭକ୍ତି କରନ୍ତି, ତଳଲିଖିତ କାର୍ଯ୍ୟମାନଙ୍କରୁ ବୁଝିହେବ । ସେ କଟକ ଟ୍ରେନିଂ ସ୍କୁଲର ହେଡ଼ମାଷ୍ଟର ଥିଲାବେଳେ ମାସକୁ ଦୁଇଶହ / ତିନିଶହ ଟଙ୍କା ଦରମା ପାଉଥିଲେ । ଲୋକଙ୍କର ମଧ୍ୟ ତାଙ୍କ ପ୍ରତି ବିଶେଷ ଖାତିର ଥିଲା । ସେତେବେଳେ ସୁଦ୍ଧା ମଧୁବାବୁ ଯେତେଥର ବାପାଙ୍କୁ କଟକରୁ ବିଦାୟ ଦିଅନ୍ତି ସେତେବେଳେ ସେ କାଠଯୋଡ଼ି ପର୍ଯ୍ୟନ୍ତ ବଳେଇ ଆସି ନଈକୂଳର ଢିମା ପଥର ଉପରେ ପ୍ରଣାମ କରନ୍ତି । ଆଜିକାଲିର ଶିକ୍ଷିତ ଲୋକେ ଦାଣ୍ଡରେ ସାଧାରଣଙ୍କ ଆଗରେ ବାପ ମା'ଙ୍କୁ ଏପରି ଭକ୍ତି ଦେଖାଇବାକୁ ଲଜ୍ଜାଜନକ ମନେକରନ୍ତି ।

ଆଉ ଗୋଟିଏ ଦିନର ପିତୃଭକ୍ତି ଶୁଣ । ମଧୁସୂଦନ ରାଓ ଏହି ସମୟରେ ସମୁଦାୟ ଓଡ଼ିଶାର ଇନସ୍‌ପେକ୍ଟର ହୋଇଥିଲେ । ଥରେ ପୁରୀ ସହରକୁ ଆସିଥିଲେ । ପୁରୀ ସହରରେ ତାଙ୍କ ସାନଭାଇ ରଘୁନାଥ ରାଓ ପିତାଙ୍କ ସଙ୍ଗରେ ଥାଆନ୍ତି । ସେତେବେଳେ ମଧୁବାବୁଙ୍କୁ ୫୭।୫୮ ବର୍ଷ ବୟସ । ସବୁବେଳେ ଶୂଳରୋଗରେ ଛଟପଟ । ତହିଁରେ ପୁଣି ଓଡ଼ିଶା ପ୍ରଦେଶର ଇନସ୍‌ପେକ୍ଟର କାର୍ଯ୍ୟ । ଦିନେ ବାପା ଶୋଇଛନ୍ତି, ମଧୁବାବୁ ତାଙ୍କ ପାଦତଳେ ବସି ଗୋଡ଼ ଆଉଁସୁଛନ୍ତି । ବାପା କହିଲେ, ମଧୁ ! ତୁ ତ ଚିରରୋଗୀ, ତତେ ଏତେ କଷ୍ଟ ପାଇବାକୁ କିଏ କହିଲା ? ମଧୁବାବୁ କହିଲେ, ବାବା ! ମତେ ଏ କାର୍ଯ୍ୟ କରିବାକୁ ବଡ଼ ଭଲ ଲାଗୁଛି, ଆଉ ଏ ସୁଖ, ଏ ପୁଣ୍ୟ କାହୁଁ ପାଇବି ? ଧନ୍ୟ ପିତୃଭକ୍ତି !

ମଧୁସୂଦନ ରାଓ ଓଡ଼ିଆ ଭାଷାରେ ଗୋଟିଏ ଯୁଗ ପରିବର୍ତ୍ତନ କରିଥିଲେ । ଏଥିପୂର୍ବେ ଓଡ଼ିଶାରେ କେବଳ ପଦ୍ୟଲେଖା ଚାଲୁଥିଲା । ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାର ଏମାନେ ବହୁତ ଛାନ୍ଦ ବହି ଲେଖିଥିଲେ; ମାତ୍ର ଗଦ୍ୟବହି ଓଡ଼ିଆରେ ଅତି ଅଳ୍ପ ଥିଲା । ତେଣୁ ମଧୁସୂଦନ ରାଓ ଓଡ଼ିଆ ଭାଷାର ଜୀବନରକ୍ଷା ପାଇଁ ପ୍ରବନ୍ଧମାଳା ବୋଲି ଖଣ୍ଡିଏ ଗଦ୍ୟବହି ଲେଖିଲେ । ସେ ଛାନ୍ଦମାଳା, କବିତାବଳୀ, ସଙ୍ଗୀତମାଳା ପ୍ରଭୃତି ପଦ୍ୟବହି ମଧ୍ୟ ଲେଖିଅଛନ୍ତି । ସରକାର ବାହାଦୁର ତାହାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ତାଙ୍କୁ ରାୟ ବାହାଦୁର ପଦ ଦେଇଥିଲେ । ସାଧାରଣ ପିଲାଏ କିପରି ଶିକ୍ଷା ପାଇବେ, ସେଥିପାଇଁ ସେ ସବୁବେଳେ ଯତ୍ନ କରୁଥିଲେ । ସେଥିପାଇଁ ସେ ନାନା କଷ୍ଟ ସହି କଟକରେ ଟାଉନ ଭିକ୍‌ଟୋରିଆ ହାଇସ୍କୁଲ ନାମରେ ଗୋଟିଏ ସ୍କୁଲ ବସାଇଯାଇ ଅଛନ୍ତି । ଏହିପରି ତାଙ୍କର ଗୁଣ ଗାଇଲେ ସରିବ ନାହିଁ ।

# ବ୍ୟାସକବି ଫକୀରମୋହନ ସେନାପତି

ଫକୀରମୋହନ ସେନାପତିଙ୍କ ବାସସ୍ଥାନ ବାଲେଶ୍ୱର ସହରରେ ଅବସ୍ଥିତ । ଫକୀରମୋହନ ସେନାପତି ଅତ୍ୟନ୍ତ ଜ୍ଞାନୀ ଥିଲେ । ତାଙ୍କ ଜୀବନଟାଯାକର ଘଟଣା ଅଦ୍ଭୁତ ରକମର । ସେ ନଜେ ଖଣ୍ଡିଏ ନିଜର ଜୀବନୀ ଲେଖିଛନ୍ତି ।

ଫକୀରମୋହନ ସେନାପତି ଆମ ଓଡ଼ିଆ ଭାଷାରେ ବ୍ୟାସଙ୍କ ଭଳି ଜଣେ ବହୁ ଶାସ୍ତ୍ର ଲେଖକ । ବର୍ତ୍ତମାନ ସୁଦ୍ଧା ଏତେ ପ୍ରକାର ପୁରାଣ, କବିତା, ଉପନ୍ୟାସ କେହି ଓଡ଼ିଆରେ ଲେଖିନାହାନ୍ତି । ତାଙ୍କର ସମସ୍ତ ଜୀବନଟା ଓଡ଼ିଆ ଭାଷା ଚର୍ଚ୍ଚାରେ ଚାଲିଗଲା । ସେ 'ମାମୁ', 'ଲଛମା' ପ୍ରଭୃତି କେତେକ ଉପନ୍ୟାସ, 'ଅବସରବାସରେ', 'ବୌଦ୍ଧାବତାର' ପ୍ରଭୃତି କେତେକ କବିତା ପୁସ୍ତକ, ବେଦ, ମହାଭାରତ, ରାମାୟଣ, ଭଗବତ୍‌ଗୀତା ପ୍ରଭୃତିର ଅନୁବାଦମାନ ଲେଖିଅଛନ୍ତି ।

ସେ ବଡ଼ ପରୋପକାରୀ ଥିଲେ । ରାତି ଘଡ଼ିଏ ଦି'ଘଡ଼ି ଥାଉଁ ଉଠି ନିଜ ସାହିରେ ବୁଲି ଘର ଘର କରି ଡାକି ଉଠାନ୍ତି । ଖିଆପିଆ, ଦୁଃଖ ସୁଖ ଆଉ ଅନ୍ୟାନ୍ୟ ଘରକଥା ପଚାରନ୍ତି, ଯଦି ନିତାନ୍ତ କାହାର ଅଭାବ ବୁଝିଥା'ନ୍ତି, ଘରକୁ ଆସି ତା' ଘରକୁ ପଇସା, ଚାଉଳ ଯାହା ଆବଶ୍ୟକ ଥାଏ, ପଠାଇ ଦିଅନ୍ତି । ସେ ଗୁପ୍ତ ଭାବରେ ଦାନ କରୁଥିଲେ । ପରର ଉପକାର କଲେ, ତାହା ସେ ଦେଖାଇ ହେଉ ନ ଥିଲେ । ତାଙ୍କ ତୁଲ୍ୟ ଦୟାଳୁ, ପରୋପକାରୀ, ଗୁପ୍ତଦାତା ଓଡ଼ିଶାରେ ଅତି ଅଳ୍ପ ଅଛନ୍ତି ।

# କବି ଗଙ୍ଗାଧର ମେହେର

ଆଗରୁ ଯେଉଁ ରାଧାନାଥ ରାୟ ଏବଂ ମଧୁସୂଦନ ରାଓଙ୍କ କଥା ଜାଣିଲ, ସେମାନେ ଆଜିକାଲିର ଇଂରାଜୀ ପାଠ ଢେର ପଢ଼ିଥିଲେ; ସଂସ୍କୃତରେ କାବ୍ୟ, ନାଟକ, ଅଳଙ୍କାର ଶାସ୍ତ୍ରମାନ ମଧ୍ୟ ପଢ଼ିଥିଲେ; ମାତ୍ର ଯେଉଁ କବିଙ୍କ କଥା କହିବି, ସେ ଜାତିରେ ତନ୍ତୀ, ଦ୍ୱିତୀୟରେ ସେ ସାମାନ୍ୟ ଓଡ଼ିଆ ପାଠ ପଢ଼ିଥିଲେ । ତଥାପି ସେ ରାଧାନାଥଙ୍କ ଭଳି ଜଣେ ନାମଜାଦା କବି ହୋଇଥିଲେ ।

ଗଙ୍ଗାଧର ମେହେରଙ୍କ ଘର ସମ୍ବଲପୁର ଜିଲା ବରପାଲି ଗାଁ'ରେ । ସେ ଜାତିରେ ତନ୍ତୀ । ତନ୍ତୀମାନେ ଓଡ଼ିଶାରେ ଯେପରି ପାଠ ପଢ଼ନ୍ତି, ପିଲାଙ୍କୁ ପଢ଼ାନ୍ତି, ତା' ତ ସମସ୍ତେ ଜାଣନ୍ତି । ତନ୍ତୀମାନେ ପାଠ ପଢ଼ିବାକୁ ଭଲ ପାଆନ୍ତି ନାହିଁ, ପିଲାଙ୍କୁ ମଧ୍ୟ ପଢ଼ାନ୍ତି ନାହିଁ । ଗଙ୍ଗାଧର ପୂର୍ବ ସୁକୃତ ବଳରୁ ବହୁ କଷ୍ଟରେ ବଡ଼ ଦୁଃଖରେ ପେଟକୁ ଖାଇବାକୁ ନ ପାଇ ଚିରାକନା ପିନ୍ଧି ଗୁରୁସେବା କରି ମଧ୍ୟ ଭର୍ଣ୍ଣାକୁଲାର ଶେଷଯାଏ ପାଠ ପଢ଼ିଥିଲେ । କିଛି ଦିନ ପରେ ସେ ଜିଲାର ବେଞ୍ଚ ମାଜିଷ୍ଟ୍ରେଟମାନଙ୍କର ପେସ୍କାର ରହିବାପାଇଁ ସରକାର ଆଦେଶ କରିବାରୁ ସେଭଳି ଚାକିରି ଖଣ୍ଡିଏ ପାଇ ସେ ମଲା ପର୍ଯ୍ୟନ୍ତ ସେହି ଚାକିରିରେ ରହିଥିଲେ । ଏଇଥି ଭିତରେ ସେହି ଋଷି ପରି ଲୋକଟି ଏପରି ସୁନ୍ଦର ଗୀତବହିମାନ ଲେଖିଲେ ଯେ, ଯାହା ପଢ଼ିଲେ ଆମ୍ଭେମାନେ ଆଶ୍ଚର୍ଯ୍ୟ ହୋଇଯିବା । ତାଙ୍କର ଇନ୍ଦୁମତୀ, ତପସ୍ୱିନୀ, କୀଚକବଧ, ପ୍ରଣୟ-ବଲ୍ଲରୀ ଆଦି ବହିମାନ ଅତି ସୁନ୍ଦର । ସେ ମରିବା ଯାଏ ବହି ଲେଖୁଥିଲେ ।

